ପ୍ରକାଶିକା :

ଶ୍ରୀମତୀ ପ୍ରେମଲତା ଦାଶ
ଉଦୟଶ୍ରୀ, ମହତାବ୍‌ରୋଡ୍, କଟକ—୩

ପ୍ରଥମ ପ୍ରକାଶନ :

ଅଗଷ୍ଟ ପନ୍ଦର,
୧୯୭୪

ପ୍ରଚ୍ଛଦ :

ଅସିତ ମୁଖାର୍ଜ୍ଜୀ

ମୁଦ୍ରକ :

ଶ୍ରୀ ଭୂପ୍ରସନ୍ନ ପ୍ରେସ୍
କଟକ—୧

ମୂଲ୍ୟ :

ତିରିଶ ଟଙ୍କା ମାତ୍ର

Digitized by srujanika@gmail.com

ବୋଉ,

ତୁ ଟୋପା ଟୋପା ପାହାନ୍ତିଆ କାକର, ଝିପ୍‌ଝିପ୍ ବରଷା ଓ ଝଡ଼ପବନର ମର୍ମର ସଙ୍ଗେ ତାଳ ଦେଇ ପିଲାଦିନେ ଯୋଉସବୁ ଗୀତରେ ମୋ ଉପବନ ଗଢ଼ିଥିଲୁ, ସେଇସବୁ ଅନାବନା ଫୁଲର ଶେଷ ଅର୍ଘ୍ୟ ତୋ'ର ହାତରେ ଟେକ ଦେଲ ।

କୁଞ୍ଜ

Digitized by srujanika@gmail.com

# ସୂଚୀ ପତ୍ର



Digitized by srujanika@gmail.com

**ହଳିଆ ଗୀତ**—ପୃ ୨୨୫—୨୫୬ ।

**ବବଧ**—ପୃ ୨୫୭--୩୬୦ ।



Digitized by srujanika@gmail.com

---

(ଖ) ଅଲକେ ସଲକେ ଲୋକ
ମନେ ବହନ୍ତି ଗର୍ବିତ।
କଚୁ ବୃକ୍ଷ ମୂଳେ ଭେକ
ଦଣ୍ଡ ଛତ୍ର ଧରାସ୍ଥିତେ।

(ଗ) କୋମଲା ବଂଶ ସଂଯୁକ୍ତଂ
କ୍ଷୁଦ୍ର କଦଳୀ ମିଶ୍ରିତଂ
ହେଙ୍ଗୁ ପାଣି ସମାଯୁକ୍ତଂ
ଅନ୍ନଂ ମକମକାୟତେ।

କେତେକ ଶ୍ଳୋକ ଦାଁଦିଆ। ଓଡ଼ିଆ ଦାଁଦିଆ ପରି ଅକ୍ଳେଶରେ ଲୋକେ ଏହା ବ୍ୟବହାର କରିଥାନ୍ତି—

(କ) ବୃକ୍ଷାଗ୍ରବାସୀ ନୁହେ ପକ୍ଷିରାଜ
ଅମ୍ବୁ ବହନ୍ତି ନୁହେ ମେଘମାଳା
ତ୍ରିନେତ୍ରଧାରୀ ନୁହେ ଶୂଳପାଣି
ବଲ୍‌କଲଧାରୀ ନୁହେ ରାମଚନ୍ଦ୍ର—ନଡ଼ିଆ

'ନ ଚ' ସ୍ଥାନରେ 'ନୁହେ' ବ୍ୟବହାର କରା ହୋଇଛି।

(ଖ) ପର୍ବତ ଅଗ୍ରେ ରଥ ଯାନ୍ତେ
ଭୂମେ ବାହାନ୍ତି ମେଦିନୀ
ଚଲନ୍ତି ପବନ ବେଗେଣ
ପାଦମେକଂ ନ ଗମନ୍ତି।—କୁମ୍ଭାର ଚକ

(ଗ) ଏକ ଶୃଙ୍ଗ ନଚେତ୍‌ ଗଣ୍ଡା
କୃଷ୍ଣବର୍ଣ୍ଣ ନଚେତ୍‌ ମୃଗଂ
କାଷ୍ଠତେ ଶୁଷ୍କ ମାଂସାନି
ଭୋଜନେନ ହରାମିଷ।—ବାଇଗଣ,

'ବାଲଞ୍ଚ ବାଲା କଦଳୀଞ୍ଚ ଗୋପା', 'ପଞ୍ଚାନି ସପ୍ତାନି କୁଣ୍ଡଳାନି ବାର୍ତ୍ତା', 'ଆପକାର୍ଯଂ ତାତପର୍ଯଂ ପରକାର୍ଯଂ ଅଧାବଧା' ପ୍ରଭୃତି ସଂସ୍କୃତ ପରି ଆଭାସୁଥିବା ପଦମାନ ଲୋକଙ୍କ ମଧ୍ୟରେ ପ୍ରଚଳିତ।

Digitized by srujanika@gmail.com

## ତୁଳନାତ୍ମକ ଆଲୋଚନା

ଭାରତୀୟ ସଂସ୍କୃତି ଯେ ଗୋଟିଏ, ବିଭିନ୍ନ ପ୍ରାଦେଶିକ ସଂସ୍କୃତିକୁ ତୁଳନାତ୍ମକ ଭାବେ ଆଲୋଚନା କଲେ ବୁଝାଯାଏ । ଓଡ଼ିଆ ଲକ୍ଷ୍ମୀ ଜଣାଣ ଗୀତରେ ଅଛି—

ଗୁହାଳକୁ ଦେବୁ ମୋର ଲକ୍ଷଣର ଗାଈ
ଦୁଆରକୁ ଦେବୁ ଗଙ୍ଗା ଯମୁନା ଡୋଳମରାଇ
କୋଳକୁ ଦେବୁ ମୋର ନନ୍ଦର ବଳା
ସ୍ୱାମ୍ୟ ହୋଇଥିବେ ଗୁଆ ପୋହଳା ।

ବଙ୍ଗଳାରେ ସେହିପରି ଅଛି—

କୋଦାଳକାଟା ଧାନ ପାବୋ
ଗୋହାଲ ଆଲୋ ଗରୁ ପାବୋ
ସେଞ୍ଜ ଆଲୋ ଝି ପାବୋ
ଆଙ୍ଗ୍ ମାପା ସିନ୍ଦୂର ପାବୋ ।

କିମ୍ବା

ଆମରା ପୂଜା କରି ପିଠାଲିର ଚରୁନ
ଆମା ଗୋ ହୟ ଯେନ ସୋନାର ଚରୁନ ।
ଆମରା ପୂଜା କରି ପିଠାଲିର କୁଟୁଇ
ଆମା ଗୋ ହୟ ଯେନ ସୋନାର କୁଟୁଇ,
ଆମରା ପୂଜା କରି ପିଠାଲିର ପାଲ୍‌କି
ଆମା ଗୋ ହୟ ଯେନ ସୋନାର ପାଲ୍‌କି ।

ଭାଉଜ ଏକ ନଷ୍ଠୁର ଚରିତ୍ର ଭାବେ ଓଡ଼ିଆ ଲୋକଗୀତରେ ଚର୍ଚ୍ଚିତ—

ଭାଉଜ ଡାହାଣୀ ବୋଲେ ଦୂର ଦେଶେ ଯାଉ
ଭାଉଜ ଲୁହଇ ସେହୁ ପରଘର ଝିଅ
ଟିକିଏ କାନ୍ଦଇଁ ଟିକେ ପୋଛିଦିଏ ଲୁହ ।

ମୈଥିଲୀ କାନ୍ଦଣା ଗୀତରେ ସେହିପରି ଅଛି—

ଭଇୟା ନରବୁଧିଆକେ ଆଁଗୀ ଠୋପି ଭଜଲ
ଭଉଜାକେ ହୃଦୟ କଠୋର ହେ
ଅମା କହଥି ଏତହିଁ ଭଏ ରହ
ଭଉଜା କହଥି ଦୂର ଜାଓ ହେ ।

Digitized by srujanika@gmail.com

ଓଡ଼ିଆ ଚଉତିଶାକୁ ମୈଥିଳୀରେ କହନ୍ତି—'ଖୋଧାପାଦନି'। ଚଉତି-ଶା ମିଥିଳା ପରି ଓଡ଼ିଶାରେ ଏକ ଧର୍ମ ସଂସ୍କାର । ଓଡ଼ିଶାର ଦ୍ୱିତୀୟା ଓଷା ମିଥିଳାରେ 'ଜିତସ୍ଥା ବ୍ରତ କଥା'। ଆମ ଲୋକଗଳ୍ପର ପକ୍ଷୀରାଜ ଘୋଡ଼ା ମିଥିଳାର 'ହଂସରାଜ ଘୋଡ଼ା'। ଆମର 'ଉଡ଼ନ୍ତା ଖଟ' ମିଥିଳାର 'ଉଦନଖଟୋଲ'। ବିଭିନ୍ନ ପ୍ରାଦେଶିକ ଲୋକସଂସ୍କୃତିର ସାମ୍ୟ ଦେଖାଇବାର ଅବକାଶ ଏଠି ନାହିଁ। କେବଳ ବଙ୍ଗଳା ଓ ଓଡ଼ିଆ ସାପଖେଳା ଗୀତର ତୁଳନା ଦେଇ ନିରସ୍ତ ହେଲି।

## ଓଡ଼ିଆ ଓ ବଙ୍ଗଳା 'ପଦ୍ମତୋଳା'

ଓଡ଼ିଶା ବିଶେଷତଃ ପଟିଆ ଗାଆଁର ସାପୁଆ କେଳା ଭାରତର ଗ୍ରାମେ ଗ୍ରାମେ ବୁଲି ସାପଖେଳ ଦେଖାଇଥାନ୍ତି, ଦାଣ୍ଡୀ ବୃତ୍ତରେ ଉଚ୍ଚ ସ୍ୱରରେ 'କଂସର ଘରଣୀ ପଦ୍ମାବତୀ ରାଣୀ ସେ କରେ ଧନ୍ୱନ୍ତରି ଓଷା, ଲକ୍ଷେ ସ୍ୱର ପଦ୍ମ......' ଇତ୍ୟାଦି ଗାଇଥାନ୍ତି। 'ପଦ୍ମତୋଳା' ଯେ କୌଣସି ବ୍ୟକ୍ତିର ପଦ୍ମଫୁଲ ତୋଳା ନୁହେଁ, ଏହା କାଳିନ୍ଦୀରୁ ଶ୍ରୀକୃଷ୍ଣଙ୍କ ସୁବର୍ଣ୍ଣ ପଦ୍ମତୋଳା ଓ କାଳୀୟ ଦଂଶନ କାହାଣୀ ଓ ପ୍ରତୀକାତ୍ମକଭାବେ ଯେ କୌଣସି ଓଡ଼ିଆ ସାପଖେଳା ସଙ୍ଗୀତକୁ ବୁଝା-ଯାଏ। କିନ୍ତୁ ବଙ୍ଗାଳୀ ସାପୁଆ ସାପ ଖେଳାଇବାବେଳେ ରଚିତ ଶ୍ୟାମା ସଙ୍ଗୀତ ବୋଲିଥାଏ—

"କେ ଜାନେ ତୋମାର ଅନ୍ତ ତୁମି ଅନନ୍ତ ରୂପିଣୀ
ମାୟାତେ ଭୁଲିତେ ପାରେ ତ୍ରିଜଗତେ ମନମୋହିନୀ
ପୌଷେ ବା ଲକ୍ଷ୍ମୀ ବରଦେ, ମାଘେ ଭବାନୀ ଶାରଦେ
ଆଶ୍ୱିନେ ମାସେତେ ହଇଲେ ତୁମି ଗଣେଶ ଜନନୀ
ଚଇତେ ହଲ ବାସନ୍ତୀ, ବୈଶାଖେ ପାଷଣ୍ଡ ଚଣ୍ଡୀ
ଜ୍ୟେଷ୍ଠେ ହଲ ମଙ୍ଗଲ ଚଣ୍ଡୀ ଆଷାଢ଼େ ରଥବାହିନୀ
ଶ୍ରାବଣେତେ ଝୁଲନ ଝୁଲେ
ଭାଦ୍ରବେତେ ଜନମ ନିଲେ
କବି ରମାନନ୍ଦ ବଲେ ରକ୍ଷାକର ମା ତାରିଣୀ"

(ବଙ୍ଗାଳୀ 'ସାପୁଡ଼େ'ଠାରୁ ସଂଗୃହୀତ)

ଓଡ଼ିଆ ପଦ୍ମତୋଳା ଅନୁକରଣରେ କେତେକ ବଙ୍ଗଳା ସାପୁଆ ଗୀତ ରଚିତ ହୋଇଅଛି। ବିଷୟବସ୍ତୁ ଅବଶ୍ୟ ଭିନ୍ନ। ମନସା, ଶୀତଳା ଓ ଶିବ ପ୍ରଭୃତି ଦେବଦେବୀଙ୍କ ସ୍ମରଣା କରିବା ସଙ୍ଗେ ସଙ୍ଗେ ଏଥିରେ ପରୀକ୍ଷିତ ଦଂଶନ,

Digitized by srujanika@gmail.com

ଜନ୍ମେଜୟଙ୍କ ସର୍ପସଜ୍ଞ, ତକ୍ଷକ ଓ ଆସ୍ତିକ ଋଷିଙ୍କ କଥା ଉଲ୍ଲିଖିତ ହୋଇଅଛୁ । କିନ୍ତୁ ଓଡ଼ିଆ ପଦ୍ୟ ତୋଳାର ରୂପ ଓ ଛନ୍ଦ ଅନୁକରଣ କରାଯାଇଛୁ—

ମନସା ଦେବୀ ଗୋ
ଶୀତଳା ଦେବୀ
ତୋମାର ଚରଣେ ଖେଲ୍ଲି କରି
ଭକ୍ତ କି ଥାକେ ଉପବାସେ ?
ଶିବେର ଗାଜନା ଗାଏ
ଶୀତଲ୍ ଖାଏ ପାଣ୍ଡାର ବଳି କି ଗୋବିନ୍ଦ ହରେ ।
ରାଜା ପରୀକ୍ଷିତ ଛିଲ
ତାକେ ଯେ ସର୍ପ ଦଂଶିଲ
ତାଦେର ନାମେ ଛିଲ୍ ପୁତ୍ର କି ଜନ୍ମେଜୟ
ସାପେର ବଂଶକେ କରିଲ କ୍ଷୟ କି ଗୋବିନ୍ଦ ହରେ ।
ସାପ ପାଲ୍‌ସ୍ଥାନା ଗେଲ୍
ଇନ୍ଦ୍ରେର ଆସନେ ଢ଼ କଲ
ଆସନ କାଂପିତେ ଲଗିଲ
ଇନ୍ଦ୍ର ବୋଲ୍‌ଇ ତକ୍ଷରାଜ
ତୁମି ଯାଅ ଆସ୍ତିକେର କାଛେ
ଆସ୍ତିକ ତୋମାର ଗୁରୁ
ତୋମାକେ ରାଖିବେ ମହାମେରୁ କି ଗୋବିନ୍ଦ ହରେ ।
(‘ସାପୁଡ଼େ’ଠାରୁ ସଂଗୃହୀତ)

## ପ୍ରଥମ ଓଡ଼ିଆ ଲୋକସଂସ୍କୃତିବିତ୍

ଜନ ବୀମ୍‌ସ୍ ଓଡ଼ିଶାର ପ୍ରଥମ ଲୋକ ସଂସ୍କୃତିବିତ୍ ; ଲୋକ ସୃତି ସଂଗ୍ରହ ଓ ଆଲୋଚନାରେ ସେ ଅଗ୍ରଣୀ । ବାଲେଶ୍ୱରରେ କଲେକ୍‌ଟର ଥିଲାବେଳେ (୧୮୬୯-୭୩) ସେ ଫକୀରମୋହନଙ୍କ ସାହାଯ୍ୟରେ ଲୋକଗୀତ ସଂଗ୍ରହ କରିଥିଲେ । ଫକୀରମୋହନ ତାହା ପରୋକ୍ଷଭାବରେ ଉଲ୍ଲେଖ କରିଛନ୍ତି । “ସାପ ମନ୍ତ୍ର, ଡାହାଣୀ ମନ୍ତ୍ର ଏହି ସମସ୍ତ ବିଷୟରେ କଥୋପକଥନ ହୋଇଥାଏ ।” ବସ୍ତୁତଃ ବୀମ୍‌ସ୍ ଡାହାଣୀ ଛଡ଼େଇବା ମନ୍ତ୍ର ଓ ସାପମନ୍ତ୍ର ବା ପଦ୍ୟତୋଳା ସଂଗ୍ରହ କରି Folklore of Orissa ନାମରେ * ଗୋଟିଏ ପ୍ରବନ୍ଧ ଲେଖିଥିଲେ । କପିଳେଶ୍ୱର ନନ୍ଦ ବା

---

* Indian antiquary, Vol I 1872, June and July.

Digitized by srujanika@gmail.com

ଗୋପାଳ ଚନ୍ଦ୍ର ପ୍ରହରାଜ ତାଙ୍କର ଉତ୍ତର ସୂଷ୍ଟ । ତାଙ୍କ ଆଲୋଚନା ଧାରା ଓ ସଂଗ୍ରହର ସଂକ୍ଷିପ୍ତ ସୂଚନା ଦିଆଗଲା ।

ଯୁଗ ଯୁଗ ଧରି ସ୍ୱତନ୍ତ୍ର ରହିବା ଫଳରେ ଓଡ଼ିଶାର କୃଷକ ଋଜୁବିଶ୍ୱାସୀ ହୋଇଛନ୍ତି, ମନରେ ବିଚିତ୍ର ଭ୍ରାନ୍ତଧାରଣାସବୁ ପୋଷଣ କରିଛନ୍ତି । ଓଡ଼ିଆ ସ୍ତ୍ରୀଲୋକମାନେ ଅନ୍ତାନ୍ତର ଅଦ୍ଭୁତ ପରମ୍ପରା ପ୍ରତି ଅଧିକ ବିଶ୍ୱସ୍ତ ।

ଓଡ଼ିଶାର ଡାହାଣୀ ନିଜ ଶରୀର ତ୍ୟାଗ କରି ଅଦୃଶ୍ୟଭାବରେ ଭ୍ରମଣ କରନ୍ତି । ପାନ ଫୁଲଟିଏ କାନରେ ଲଗାଇଲେ ଡାହାଣୀ ଦେଖାଯାଏ । ପାନଗଛର ଫୁଲ ନାହିଁ । ସେହିପରି ଡାହାଣୀକୁ ଦେଖିବା ମଧ୍ୟ ସମ୍ଭବପର ନୁହେଁ । ମଙ୍ଗଳବାର ଓ ଶନିବାର ଦିନ ଡାହାଣୀର ପ୍ରଭାବ ବଢ଼େ । ପୋଖରୀ କୂଳରେ ବର ବା ଓସ୍ତ ଗଛ ମୂଳରେ ସନ୍ଧ୍ୟା ବା ସକାଳେ ଆଣ୍ଠୁ ମାଡ଼ି ବସିଲେ ଡାହାଣୀ ଆସି ଶରୀରରେ ପଶେ; ଜ୍ୱର ହୁଏ ବା ଡାହାଣୀ ଗ୍ରସ୍ତ ବ୍ୟକ୍ତି ଧନସମ୍ପତ୍ତି ହରାଏ ।

ଡାହାଣୀ ଲାଗିବା ଗୋଟିଏ ଦୃଶ୍ୟ; ଗୁଣିଆ ମନ୍ତ୍ର ବୋଲେ, ଧୂଳି ପକାଏ, ଡାହାଣୀର ନାମ କଣ ବୋଲି ପଚାରେ । ତା'ପରେ ସେ ଡାହାଣୀ ଲାଗିଥିବା ଲୋକର ଘରକୁ ଯାଏ, ତାକୁ ମାଡ଼ ଚଢ଼ାଏ; ମାଡ଼ ଭୟରେ ଡାହାଣୀ ଗୁଡ଼ ପଳାଇଯାଏ । ଡାହାଣୀ ଛଡ଼ାଇବା ବେଳ ବ୍ୟତୀତ ଅନ୍ୟ ସମୟରେ ଡାହାଣୀ ମନ୍ତ୍ର ବୋଲିବା ମନା; ବହୁ ଅନିଷ୍ଟ ଘଟେ ବୋଲି ଲୋକବିଶ୍ୱାସ ପ୍ରଚଳିତ ।

ଡାହାଣୀ ମନ୍ତ୍ର—କେଉଞ୍ଝୁଣୀର ନାମ ଭଜ, ତା ପୁଅ ନାମ ମହାବୀର
ହାତେ ଯେନି କାତି, ଚୂଲେ ନଶାଭଗେ ଗତି
ମୋ ଜାଲ ପଇଲା ଅଶୀ ଯୋଜନ ଘୋଟି
ମୋ ଦେହକୁ ପେଲା ପଶୁ ମହାଦେବଙ୍କ ତ୍ରିଶୂଳ ଶକ୍ତି ।

ଅଇଲା ଗୁଣିଆ ବସିଲା ମାଡ଼ି
ସ୍ୱର୍ଗରୁ ଦୃଇ ଆଙ୍ଗୁଳ ଗୁଡ଼ି
କି ଗୁହ୍ମଁ ଲୋ କୁମ୍ଭାରୁଣୀ ପେଟୀ ?
ଲକ୍ଷେ ଶିବ ହୋଇଲେ ଉଭା
ମୋତେ ଉହାଡ଼ୁ ନବଦ୍ୱାର ଘାଟି
ଆଲୋ ଦାଉଆଣୀ ରକ୍ତଖାଇ
ଚଢ଼ଙ୍ଗବଜ ମୋର ଭାଇ
ଦେବୀ ପରସ୍ତୁଣୀ ମୋର ମାଇ (ମାଆ)

Digitized by srujanika@gmail.com

ଲହ ଲହ ଜଭ ଭୟଙ୍କର ମୂର୍ତ୍ତି
ହର ପାର୍ବତୀ
ଯେଣିକି ପେଶିବୁ ତେଣିକି ଯିବୁ ।

ଅମୁକେଇ ଅଙ୍ଗରେ ଭୂତ ଥାଉ
ଡାଖୁଆଣୀ ଥାଉ, ଚଢୁକୁଣୀ ଥାଉ
ଘର ଦୃଷ୍ଟି, ବାହାର ଦୃଷ୍ଟି, ପିତାମାତା ଦୃଷ୍ଟି
ହାଟୁଆ ବାଟୁଆ ଦୃଷ୍ଟି,
ସିଆନ୍ ଘରେ ଯେ କିଛି ଥାଉ
ଛାଡ଼, ଛାଡ଼
ଛାଡ଼ ଛାଡ଼ ବୋଲି କାହାର ଆଜ୍ଞା ?
ବୀର ଚୂଡ଼ଙ୍ଗର କୋଟି କୋଟି ଆଜ୍ଞା ।"

ଦେହ ବନ୍ଧେଇବା ମନ୍ତ୍ର—

ବଜ୍ର କଲେଣି ବଜ୍ରଦ୍ୱାର, ଚଉକଣ ଚଉଦ୍ୱାର
ଡାହାଣେ ଡାହାଣ ଚଣ୍ଡୀ, ବାମେ କ୍ଷେତ୍ରପାଳ
ଆଗେ ନରସିଂହ, ପଛେ ଅଷ୍ଟବେତାଳ
ଉପରେ ମହାମୁଦ୍ରା ବଜ୍ରକପାଟ
କୋଟିଏ ଅଇଲେ ଗୋଟିଏ ନ ଛାଡ଼ିବୁ
ନ ଛାଡ଼ିବୁ ବୋଲି କାହାର ଆଜ୍ଞା ?
କାଉଁରୀ କାମଚଣ୍ଡୀଙ୍କର କୋଟି କୋଟି ଆଜ୍ଞା ।"

ସାପ ଝଡ଼ାଇବା ମନ୍ତ୍ର—

କଟୋଉ ଥୋଇଲେ କୃଷ୍ଣ କଦମ୍ବର ମୂଳେ
ପାଦ ବଢ଼ାଇଲେ ଯମୁନାର ଜଳେ
ଯମୁନାର ଜଳେ ଥିଲା ଅଣ ମୁଢ଼ ନାଗ
ସଙ୍କଟ ବିକଟ କାଳୀ
ମାଇଲେକ ତୋଳି ବିଷଗୋଳା ଦ୍ୱାଦଶ ଅଙ୍ଗୁଳି
କେତେକ ଗାରଡ଼ ଝରିଲା ଗୁନିବାର
ତେବେ ଶୋଇଲେ ପ୍ରଭୁ ଚକ୍ରଧର
ଦେବତାମାନେ ବିଚାର ଆରମ୍ଭିଲେ
କାହିଁ ଅଛ ଗରୁଡ଼ ଆସ ହେ! ବୋଇଲେ

Digitized by srujanika@gmail.com

ରମ୍ୟକ ଦ୍ୱୀପରେ ଗରୁଡ଼ ଚରୁଥିଲା
ଖାଇବାର ଆହାର ତାକୁ ଲାଗିଲାକ ପିତା
ତାହାର ଚଉଦ କହିବ ଜଗଜିତା ।
ମୁଁ ତତେ ବୋଲଇଁ ହୋ ଖଗ ପକ୍ଷୀବର
ଧମାଇ ପଶିବୁ ହେମଗିରି ପର୍ବତର
ପରବତେ ଥିଲା ଅମୃତ କୁଣ୍ଡଗୋଟି

× × × ×

ଗରୁଡ଼ ଡେଣା ବିସ୍ତାରିଲା
ଦେଲା ଅମୃତ ଉଠିଲେ ଭଗବାନ ।

କେତେକ ଲୋକବିଶ୍ୱାସ ଷାମ୍ସ୍ ଲିପିବଦ୍ଧ କରିଛନ୍ତି । ଘରୁ ବାହାରିଲା ବେଳେ ପଛରୁ ଡାକିଲେ କାର୍ଯ୍ୟ ସିଦ୍ଧ ହୁଏ ନାହିଁ ; କିନ୍ତୁ ମାଆର ଡାକ ଅନିଷ୍ଟକାରୀ ନୁହେଁ । ଯମା ମାଠିଆ ଦେଖି ବାହାରିବା ପ୍ରତିକୂଳ ଲକ୍ଷଣ । ଦୁଆର ବନ୍ଧରେ ମୁଣ୍ଡ ବାଜିଲେ ଅପଗତ ନ କରି ମୁହୂର୍ତ୍ତେ ଛିଡ଼ା ହୋଇଯିବା ଆବଶ୍ୟକ । ବିଞ୍ଚଣା ବୁଲାଇବାବେଳେ ଦେହରେ ବାଜିଲେ ତିନଥର ଛେପ ପକାଇବା ଆବଶ୍ୟକ । ନୋହିଲେ ବର୍ଷକ ମଧ୍ୟରେ ମୃତ୍ୟୁ କବଳରେ ପଡ଼ିବାକୁ ହୁଏ । ଓଳେଇଲା ବେଳେ ଦେହରେ ଗ୍ରୁଞ୍ଚୁଣୀ ବାଜିଲେ ଅଗ ଛିଣ୍ଡାଇ ଛେପ ପକାଇ ଫିଙ୍ଗି ଦେବାକୁ ହେବ । ଛିଙ୍କିଲେ ବୟସ୍କମାନେ ପୁରୁଷକୁ 'ଭଗବାନ୍ ରକ୍ଷା କରନ୍ତୁ', ସ୍ତ୍ରୀକୁ 'ଅଜ୍ରାମର ହ' କଲ୍ୟାଣ କରନ୍ତି ।

ସଂଗ୍ରହ ବା ଆଲୋଚନା କାହିଁରେ ଷାମ୍ସ୍ଙ୍କ ବ୍ୟାପକ ଦୃଷ୍ଟିର ପରିଚୟ ମିଳେ ନାହିଁ । ତଥାପି ଏ ଦିଗରେ ପୂର୍ବସୂରିତ୍ୱ ଓ ସାଂସ୍କୃତିକ ଦୂରଦୃଷ୍ଟି ଅବଶ୍ୟ ଉଲ୍ଲେଖ୍ୟ ।

## ଝିଲା, ଝଡ଼ା, ଫୁଙ୍କା

ଭୂତ ବା ଡାହାଣୀ ଲାଗିଲେ ଗୁଣିଆ ତାକୁ ଦେହ ଝଡ଼ାଇବା, ଭୂତ ଭୟଭୀତ ବ୍ୟକ୍ତିକୁ କାଟପାଣି ପେଇବା, ଭୂତ ଭୟରୁ ଜାତ ରୋଗ ଫୁଙ୍କି ଝାଡ଼ିଝୁଡ଼ି ନେବା, ବଣଜଙ୍ଗଲ ଅନ୍ଧାର ପଥରେ ଏକୁଟିଆ ଯାଯାରେ ଦେହର ବିଭିନ୍ନ ପ୍ରତ୍ୟଙ୍ଗକୁ ବିଭିନ୍ନ ଦେବତାଙ୍କୁ ସମର୍ପଣ କରି ନିର୍ଭୀକ ହୋଇ ଚାଲିବା, ସେ କାଳର ଏକ ରୀତି ଥିଲା । ମନ୍ତ୍ରବଳରେ ଅସାଧ୍ୟ ସାଧିତ ହୋଇପାରେ ବୋଲି

Digitized by srujanika@gmail.com

ଲୋକବିଶ୍ୱାସ ପ୍ରଚଳିତ ଥିଲା । ଗୁଣିଆଦ୍ୱାରା ଦେହ ବନ୍ଧାଇ ନେଇଥିଲେ ଭୂତ, ପ୍ରେତ, ବ୍ରହ୍ମରାକ୍ଷସ, ଡାହାଣୀ ଚିରୁକୁଣୀ କୌଣସି ଅନିଷ୍ଟ ସାଧନ କରି ନ ପାରନ୍ତି । ଏଣି ଏଣି ମନ୍ତ୍ର ଗୀତ ଓଡ଼ିଶାରେ ପ୍ରଚଳିତ ଅଛି । ସେସବୁ ସଂଗୃହୀତ ହେବା ଦରକାର ।

ପଲ୍ଲୀଗୀତିସଞ୍ଚୟନ, ୧ମ ଭାଗର ଗୋଟିଏ ଗୀତରେ କେଶକୁ କାଳିକା, କପାଳକୁ ବ୍ରହ୍ମା, ଆଖିକୁ ଚନ୍ଦ୍ର, ନାକକୁ ଗରୁଡ଼, ଦାନ୍ତକୁ ଦନ୍ତମଣିକ, ଜିଭକୁ ଜିହ୍ୱାବଳୀ, କଣ୍ଠକୁ ସରସ୍ୱତୀ, ବାହୁକୁ ଦୁର୍ଯ୍ୟୋଧନ, ଗ୍ରୀବକୁ ବିଭୀଷଣ, ଜଙ୍ଘକୁ, ଜଙ୍ଘଲୋଚନ, ଆଣ୍ଠୁକୁ ଚକ୍ରପାଣି, ପାଦକୁ ବାସୁକୀ ରକ୍ଷା କରିବା ଲାଗି କହିଲେଇ କଥା ହୋଇଅଛି—'ଯେଣେ ଯିବୁ ତେଣେ ଯା, ନରସିଂହ ଜଗିଥା' ।

ଏସବୁ ତନ୍ତ୍ରଯୁଗର ସାହିତ୍ୟ, ଲୋକସଂସ୍କୃତିକୁ ବିଶେଷଭାବେ ପ୍ରଭାବିତ କରିଛି । ସଂସ୍କୃତରେ ଏହାର ରୂପ ବହୁ । ତଳେ ଗୋଟିଏ ମାତ୍ର ଦୃଷ୍ଟାନ୍ତ ଦେଲି, ଏହା କ୍ରମେ ସ୍ତୁତିଗୀତର ଅନ୍ତର୍ଗତ ହୋଇଅଛି ।

"ଗଙ୍ଗାଧରଃ ଶିରଃ ପାତୁ ଭାଲଂ ଅର୍ଦ୍ଧେନ୍ଦୁଶେଖରଃ
ନୟନେ ମଦନଧ୍ୱଂସୀ କର୍ଣ୍ଣୌ ସର୍ପ ବିଭୂଷଣଃ
ଘ୍ରାଣଂ ପାତୁ ପୁରାରାତି ମୁଖଂ ପାତୁ ଜଗତ୍ପତିଃ
ଜିହ୍ୱାଂ ବାଗୀଶ୍ୱରଃ ପାତୁ କନ୍ଧରାଂ ଶିତିକନ୍ଧରଃ
ଶ୍ରୀକଣ୍ଠଃ ପାତୁ ମେ କଣ୍ଠଂ ସ୍କନ୍ଧଂ ବିଶ୍ୱଧୁରନ୍ଧରଃ
ଭୁଜୌ ଭୂଭାରସଂହର୍ତ୍ତା କରୌ ପାତୁ ପିନାକଧୃକ୍
ହୃଦୟଂ ଶଙ୍କରଃ ପାତୁ ଜଠରଂ ଗିରିଜାପତିଃ
ନାଭିଂ ମୃତ୍ୟୁଞ୍ଜୟଃ ପାତୁ କଟୀଂ ବ୍ୟାଘ୍ରାଜିନାମ୍ବରଃ
ସକ୍ଥିନୀ ପାତୁ ଦୀନାର୍ତ୍ତି ଶରଣାଗତ ବତ୍ସଳଃ
ଉରୂ ମହେଶ୍ୱରଃ ପାତୁ ଜାନୁନୀ ଜଗଦୀଶ୍ୱରଃ ।
ଜଙ୍ଘେ ପାତୁ ଜଗତ୍କର୍ତ୍ତା ଗୁଲ୍‌ଫୌ ପାତୁ ଗଣାଧିପଃ
ଚରଣୌ କରୁଣାସିନ୍ଧୁଃ ସର୍ବାଙ୍ଗାନି ସଦାଶିବଃ ।"

## ବଡ଼ବଡ଼ିଆ ଡାକ

ହିନ୍ଦୁ ପରିବାରରେ ଯେ ମୃତ, ବିଚ୍ଛିନ୍ନ, ସେ ବିସ୍ମୃତ ନୁହେଁ । ମୋ ପରିବାରର ଯେ ପହିଲି ସ୍ରଷ୍ଟା ଓ ତା'ପରେ ଆଉ ଯେ ଯେତେ ଆସିଛନ୍ତି, ମୁଁ ସେମାନଙ୍କ ନାମଧାମ ଜାଣେ ନାହିଁ । ତଥାପି ସେମାନେ ମୋର ସମ୍ମାନୀୟ, ପୂଜ୍ୟ,

Digitized by srujanika@gmail.com

ବର୍ଷକେ ଥରେ ପଡ଼େ ଦିନେ ବା ମୁହୂର୍ତ୍ତେ । ମାତୃକୁଳର ତିନି ପୁରୁଷ, ପିତୃକୁଳର ତିନି ପୁରୁଷଙ୍କୁ ଆମେ ଶ୍ରାଦ୍ଧ, ହୋମ, ଉପନୟନ ବା ବିବାହାଦି ଅନୁଷ୍ଠାନରେ ସ୍ମରଣ କରୁ; କିନ୍ତୁ ପର୍ବଶ୍ରାଦ୍ଧ ଦିନ ଆମେ ଘିଅ ବଳିତା ବା କାଉଁରିଆ କାଠି ଜାଳି ଆବାହନ କରୁ, ଆଦରୁ ଅଦ୍ୟାବଧି ଗତ ବଂଶର ସମସ୍ତ ସମ୍ମାନିତ ଆତ୍ମାଙ୍କୁ । ସମସ୍ତେ ଏକାଠି ହେଲେ ହୋଇଯାନ୍ତି ଗୋଟିଏ ଗାଆଁ । ସେମାନଙ୍କୁ ସମ୍ଭାଳିବାକୁ କ୍ଷୁଦ୍ର ଗୃହ ଅସମର୍ଥ । ମାନସିକଭାବରେ ସେମାନଙ୍କ ସହିତ ମିଳନ ହୁଏ ମାତ୍ର । ପରିବାରର ଉନ୍ନତି ଓ ଅବିଚ୍ଛିନ୍ନତା ଲାଗି ପିତୃପୁରୁଷଙ୍କ ଆଶୀର୍ବାଦ ଏକାନ୍ତ କାମ୍ୟ । କାର୍ତ୍ତିକ ଦୀପାବଳୀ ଅମାବାସ୍ୟା ଦିନ ପ୍ରାୟ ପ୍ରତ୍ୟେକ ଓଡ଼ିଆ ଘରେ ଶ୍ରାଦ୍ଧ ହୁଏ । ଓଡ଼ିଆ ପିତୃଗଣଙ୍କୁ ଏଇ ଭାବେ ଡାକେ—

"ଆହେ ବଡ଼ବଡ଼ୁଆ,
ଅନ୍ଧାରେ ଆସ, ଆଲୁଏ ଯାଅ
ବାଇଶି ପାହାଚରେ ମହାପ୍ରସାଦ ପାଅ ।"

"ସୁରଲୋକଂ ପରିତ୍ୟଜ୍ୟ ଆଗଚ୍ଛ ତ୍ୱଂ ମହାଳୟମ୍
ଉଜ୍ଜ୍ୱଳଂ ଜ୍ୟୋତିଷାଂ ମାର୍ଗଂ ଯତୋଽସି ପରମାଂ ଗତିମ୍ ।"

ଲିପାପୋଛା ହୋଇଥିବା ଅଗଣାରେ ମୁରୁଜରେ ଏକ ମହାଳୟ ଅଙ୍କିତ ହୁଏ. ଏହାର ବହୁ କୋଠରୀ; ଏହା ମଧ୍ୟକୁ ଅତୀତ ବଂଶର ସମ୍ମାନିତ ଦେବଦେବୀ, ଋଷିମୁନି ଓ ପିତୃପୁରୁଷମାନଙ୍କୁ ଆବାହନ କରାଯାଏ; ଆସନ, ଫୁଲଚନ୍ଦନାଦି ଅର୍ପିତ ହୁଏ । ପୂର୍ବରେ ଦଶୋଟି କୋଠରୀରେ ଦଶ ବିଶ୍ୱଦେବା, ପଶ୍ଚିମରେ କର୍ତ୍ତା, ଉତ୍ତରରେ ସାତୋଟି ପ୍ରକୋଷ୍ଠରେ ସନକାଦି ଋଷି, ଦକ୍ଷିଣରେ ବାରୋଟି ପ୍ରକୋଷ୍ଠରେ ପିତୃଲୋକେ । କ୍ରତୁ, ଦକ୍ଷ, ବସୁ, କାଳ, ସତ୍ୟ, କାମ, ଧୁରି, ରୋଚକ, ପୁରୁରବା, ମାର୍ଦ୍ଦବ, ବିଶ୍ୱଦେବା, ସନକ, ସନନ୍ଦ, ସନାତନ, କପିଳ, ଆସୁରି, ବଡ ପ୍ରଭୃତି ଋଷି, ପିତୃପୁରୁଷଙ୍କୁ ଗନ୍ଧପୁଷ୍ପାଦି ଅର୍ଘ୍ୟ ଅର୍ପିତ ହେବା ପରେ ନାରିକେଳ ଖଣ୍ଡ, କଦଳୀ, ବେତକନ୍ଦା, ଶନ୍ତାବସ୍ତ୍ରୀ, କାକୁଡ଼ି, ନାରଙ୍ଗ, ଆଖୁ, ଅଦା, ତାଳଗଜା ଓ ଅନ୍ୟାନ୍ୟ ଭୋଗ ପଣସପତ୍ର ଦନାରେ ବଢ଼ାଯାଏ । ଗ୍ରାମ ଦେବତା, ଗ୍ରାମଦେବତୀ, ଇଷ୍ଟଦେବତା, ଗୃହଦେବତାଙ୍କ ଲାଗି ସ୍ୱତନ୍ତ୍ରଭାବେ ଭୋଗ ବଢ଼ାଯାଏ । ଭୋଗ ଉପରେ ଆଳତି କାଠି ଜଳାଯାଏ, ଶ୍ରାଦ୍ଧ ମନ୍ତ୍ର ପୁରୋହିତେ ବୋଲନ୍ତି । ଶ୍ରାଦ୍ଧ ପରେ ଋଷିମୁନି ଓ ପିତୃଲୋକଙ୍କୁ ନିମ୍ନ ମନ୍ତ୍ରରେ ବିଦାୟ ଦିଆଯାଏ—

'ଇନ୍ଦ୍ରାଦି ଦେବତା ସର୍ବା ପିତରଶ୍ଚ ମହର୍ଷୟଃ
ସର୍ବେତେ ପଥି ଗଚ୍ଛନ୍ତୁ ଅନସ୍ମାକ୍ମାଲୟା ସହ ।

Digitized by srujanika@gmail.com

ପିତୃଲୋକାଂ ପରିତ୍ୟଜ୍ୟ ଆଗତା ଯେ ମହାଲୟେ
ଉଜ୍ଜ୍ୱଲେ ଜ୍ୟୋତିଷାଂ ମାର୍ଗେ ସାବଧାନା ବ୍ରଜନ୍ତୁ ତେ ।

ଦେବତା, ଋଷି ଓ ପିତୃଲୋକଙ୍କ ବିସର୍ଜନ ପରେ ଚତୁର୍ଦ୍ଦିଗ ଆଲୋକ ଉଜ୍ଜ୍ୱଳ କରାଯାଏ, ପ୍ରାଚୀନ ପ୍ରଦୀପ ବା ଆଧୁନିକ ବିଦ୍ୟୁତ୍‌ବତୀରେ । ବଙ୍ଗଳାରେ ଏହି ଉତ୍ସବକୁ ଦୀପାନ୍ୱିତା କହନ୍ତି ।

ତଳେ ପଲ୍ଲୀ ପ୍ରଚଳିତ କେତୋଟି ମୂକନୃତ୍ୟ ବା ଧର୍ମାନୁଷ୍ଠାନର ସୂଚନା ଦିଆଗଲା । ପଲ୍ଲୀସଂସ୍କୃତିର ସୀମାସରହଦ୍, ଗମ୍ଭୀରତା ଓ ମାଧୁର୍ଯ୍ୟର ପରିଚୟ ସେସବୁରୁ ମିଳିଥାଏ । ]

**ନାଗା**

ନାଗାର ବେଶ ବିସ୍ମୟକର । ମୁଣ୍ଡରେ ଝୋଟର ତିନିସର ପାଗ, ପାଗ ଉପରେ ଦୀର୍ଘ ଚୂଳ; ଚୂଳର ଅଗ୍ରଭାଗରେ ରଙ୍ଗୀନ୍ ସୋଲ ଫୁଲ କିମ୍ବା ମୟୂର ଚନ୍ଦ୍ରିକା । ପାଗକୁ ଘୋଡ଼ାଇ ମଣ୍ଡିତ ହୁଏ ନାନା ଅଳଙ୍କାର—ଚନ୍ଦ୍ରହାର, ଗୋଠ, ପାଉଜି, ବେଙ୍ଗପାଟିଆ ମାଳ, ବାଘନଖୀ । ଏସବୁ ଧନୀସର ସ୍ତ୍ରୀମାନଙ୍କଠାରୁ ମଗା-ହୋଇ ଆସେ ।

ନାଗା ମୁହଁର ଗାଲମୁଣ୍ଡି ଓ ଦୀର୍ଘ ଜଣ ଭୀତିପ୍ରଦ । ନାଗା ବାରଠାଣିରେ ପାହୁଲ ପକାଇଲା ବେଳେ ଜଣ ମୋଡ଼େ । ଆଖି ତାର କ୍ରୂର ଓ ଭୟଙ୍କର ହୋଇ ଉଠେ । ତାର କପାଳରେ ସିନ୍ଦୂର କଲି । ପିନ୍ଧା ପାଟ କାଛ, କାନ୍ଧରେ ପରତାଲି (ପାଚୁଡ଼ା ବା ଚାଦର), ଡାହାଣ ପାଦରେ ଘାଗୁଡ଼ି, ଜଙ୍ଘରେ ଘଣ୍ଟି, ପିଠିପଟେ ଗଣ୍ଡାଚମର ଢାଲ, ତୂଣୀର, କଟିରେ ତରବାରି, କଟାରି, ବାଙ୍କଛୁରି ।

ତା'ର ଦେହସାରା ଗମରଜ ବୋଳା, ଗୁଡିରୁ ଅଣ୍ଟାଯାଏ ବାଘଛାଲରେ ଆବୃତ; ପୃଷ୍ଠପଟେ ବିପୁଳ ଧେନୁକ (ଧନୁ) ଏକ ପ୍ରଭା ପରି ଦିଶେ । ଧେନୁକରେ ଶର-ସବୁ ଖଞ୍ଜା, ଶରମୂନରେ ରଙ୍ଗୀନ କନାର ପତାକାସବୁ ।

ହାତରେ ଗଣ୍ଡିଆ (ଦେଶୀ ବନ୍ଧୁକ) । ନାଗାନୃତ୍ୟ ବେଳେ ବନ୍ଧୁକ ଫୁଟାଇ ଦର୍ଶକମାନଙ୍କୁ ଚମକାଇ ଦିଏ ।

Digitized by srujanika@gmail.com

ହାତାରେ (ମଣିବନ୍ଧ) ଦର୍ପଣ, ବାହାରେ ଏଗ୍ର (ଚିଲିକା ହ୍ରଦରେ ସୁଲଭ) ପକ୍ଷୀର ଲାଲ୍ ପର । ନାଗା ତାରୁଣ୍ୟ ଓ ପୌରୁଷର ଏକ ପ୍ରଚଣ୍ଡ ରୂପ, ଦୈହିକ ଶକ୍ତି ଓ ଉନ୍ମାଦନାର ଏକ ବିସ୍ଫୋରଣ । ତାର ବୀର ପାହୁଲ ଓ ଦୁର୍ଦ୍ଧର୍ଷ ଗତି ବୀରତ୍ୱପୂର୍ଣ୍ଣ ପରମ୍ପରା ଦୀର୍ଘ ରଣ ଅଭ୍ୟାସ ଓ କୌଶଳର ସୁପରିଚୟ ଦିଏ ।

ନାଗାର ନୃତ୍ୟ ସହିତ ଦାଦାମା, ଦୁନ୍ଦୁଭି ବାଜେ ନାହିଁ, ବାଜେ ଦେଶୀୟ ଯୋଡ଼ିନାଗରା, ଡେମ୍ପ ନାଗରା ; ତା'ର ସ୍ୱର—

ଧେକ୍ ଧାଡ଼ାକ୍ ଦାଧାଡ଼ା
ତେକ୍ ତାଡ଼ାକ୍ ତାତାଡ଼ା
ଧେକ୍ ଧାଡ଼ାକ୍.........।"

କୋଣ କୋଣ ଦୂରବର୍ତ୍ତୀ ସ୍ଥାନ ଏଇ ବାଜାର ସ୍ୱରରେ ଉଚ୍ଛୁଳି ଉଠେ । ବାଜା ବାଜିଲେ ନାଗାର ପାଦ ଉଠେ, ମନ ଉନ୍ମାଦିତ ହୁଏ । ଓଜନଦାର ବେଶ, ପ୍ରଚଣ୍ଡ ଗ୍ରୀଷ୍ମ, ରୌଦ୍ରକୁ ଭ୍ରୂକ୍ଷେପ ନ କରି ସେ ନୃତ୍ୟରେ ଉନ୍ମତ୍ତ ହୋଇଉଠେ ।

ନାଗା ଯେ ଉତ୍କଳର ଗୌରବୋଜ୍ଜ୍ୱଳ ଦିନର ପ୍ରଚଣ୍ଡ ପାଇକ ବୀର, ଏଥିରେ ତିଳାର୍ଦ୍ଧ ସନ୍ଦେହ ରହେ ନାହିଁ ।

ଜଗନ୍ନାଥ କେବଳ ମୈତ୍ରୀର ଦେବତା ନୁହନ୍ତି, ସେ ମହାବୀର, କାଞ୍ଚି ଯୁଦ୍ଧରେ ତାଙ୍କର ବୀରର ଭୂମିକା ପ୍ରତ୍ୟକ୍ଷ । ଭକ୍ତର ମାନରକ୍ଷା ଲାଗି ପ୍ରୟୋଜନ ବେଳେ ଅସ୍ତ୍ର ଧାରଣ କରନ୍ତି । ତେଣୁ ତାଙ୍କ ନାଗା ବେଶ ବା ପାଇକ ବେଶ କାଞ୍ଚି ଯୁଦ୍ଧଯାତ୍ରାର ଏକ ସ୍ମାରକ । ଅବଶ୍ୟ ଜଗନ୍ନାଥ ଓ ବଡ଼ ଠାକୁରଙ୍କ ନାଗା ବେଶ ପ୍ରତିବର୍ଷ ହୁଏ ନାହିଁ । ଯେଉଁ ବର୍ଷ ଛ' ଦିନ ପଞ୍ଚକ ପଡ଼େ, ସେହି ବର୍ଷ ନାଗା ବା ନାଗାର୍ଜ୍ଜୁନ ବେଶରେ ଠାକୁରମାନଙ୍କୁ ସଜ୍ଜିତ କରାଯାଏ । ନାଗା ଧର୍ମ ଏକ ତାନ୍ତ୍ରିକ ଧର୍ମ । ଏଇ ଯାଯାବର ସନ୍ନ୍ୟାସୀଙ୍କ ତନ୍ତ୍ରଧର୍ମ କେବେ ଜଗନ୍ନାଥ ମନ୍ଦିରରେ ପ୍ରବେଶ କଲା, ତାହା ଅନୁସନ୍ଧେୟ ।

ଯାତ୍ରାର ପୂର୍ବଦିନ ଦକ୍ଷିଣ କାଳୀଙ୍କ ପୂଜା ହୁଏ, ନାଗାମାନଙ୍କର ହାତ-ହତିଆର ପୂଜା ହୁଏ । ନାଗା ନୃସିଂହ ଦେବଙ୍କୁ ଦର୍ଶନ କରେ, ମନ୍ଦିରରୁ ଶାଢ଼ୀ, ପ୍ରସାଦ ଓ ମାଳା ପାଏ । ନୃସିଂହ ଜନ୍ମଦିନ ପୁରୀ ଜିଲ୍ଲାର ନୂଆଶାସନ ଗ୍ରାମରେ ନାଗା ଯାତ୍ରା ହୁଏ, ଉତ୍ତରସାହି ଓ ଦକ୍ଷିଣସାହି ମଧ୍ୟରେ ନାଗା ପ୍ରତିଯୋଗିତା ହୁଏ । ଜନସାଧାରଣ ହିଁ ବିଚାରକ, କେଉଁ ସାହିର ନାଗା ବେଶ ଓ ନୃତ୍ୟ ସରସ

Digitized by srujanika@gmail.com

ତାହା ଲୋକେ ଉନ୍ମତ୍ତଭାବେ ପ୍ରକାଶ କରିଥାନ୍ତି । ଧର୍ମପୁର, ବଲଙ୍ଗା, ରୂପଦେଈ-ପୁର ଗ୍ରାମରେ ଚମ୍ପକ ଦ୍ୱାଦଶୀ ଦିନ ନାଗାଯାତ୍ରା ହୋଇଥାଏ । ନାଗା ପୁରୀର ପ୍ରସିଦ୍ଧ ସାହି ଯାତର ଏକ ପ୍ରଧାନ ମଣ୍ଡନ । ସେଭଳି ଶକ୍ତିମନ୍ତ ପୁରୁଷ ନ ହେଲେ ନାଗା ଭଡ଼ା ସଜି ପାରିବ ନାହିଁ, ନାଗା ନାଚ ନାଚି ପାରିବ ନାହିଁ । ଭଗବାନଙ୍କ ନୃସିଂହ ଅବତାର ସହିତ ଏହି ନୃତ୍ୟର ଆଙ୍ଗିକ ସାମଞ୍ଜସ୍ୟ ରହିଅଛି ।

ମେଳଣରେ ନାଗାଯାତ୍ରା ଆଗରୁ ପାଲ୍‌ବାଲା, କେଳାକେଲୁଣୀ, ଶବର-ଶବରୁଣୀ, ବାଉଳ-ବାଉଳାଣୀ, ବଘଧରିଆ, ଚଇଁଲାଆପଣ୍ଡା, ବୁଢ଼ାବୁଢ଼ୀ, ଗଣେଶ, ବୃଷଭ, କଳ ଘୋଡ଼ା ସୁଆଙ୍ଗ ନାଚ ନୃତ୍ୟର ଏକ ବାତାବରଣ ତିଆରି କରନ୍ତି । ନାଗାଙ୍କ ଆଗମନର ଅବ୍ୟବହିତ ପୂର୍ବରୁ ନୃତ୍ୟ କରନ୍ତି ସଠଗ୍ର । ସଠଗ୍ରର ମୁଣ୍ଡରେ ଟୋପି, ପିନ୍ଧା ଜାଙ୍ଘି, ଦେହରେ ଗମରଜ ବୋଲା, ବାହାରେ ବଗ ପକ୍ଷୀର ପର ବନ୍ଧା, ସେ କାଠତାଳ ବଜାଇ ନାଚେ ଓ ନିମ୍ନ ହିନ୍ଦୀ ଓଡ଼ିଆମିଶା ଗୀତଟି ବୋଲିଥାଏ—

"ଜାଗୋ ମାଈ କାଲିକା ଜଗାଓ ମାଈ କାଲିକା
ହସ୍ତେ ଶୋହେ ଖଣ୍ଡାଖପର ଗଳେ ମୁଣ୍ଡମାଳିକା
କଲିକତାରେ ଗଙ୍ଗାତଟରେ ନାମ ବୋଲିଓ କାଳୀ
ବଳିଭୋଜା ସବ ରୋଜ ପାଓ ପୂଜା କରେ ବଙ୍ଗାଳୀ ।
ବାଣପୁରେ ଭଗବତୀ ବରଳେ ବାଙ୍କିରେ ଚର୍ଚ୍ଚିକା
ସମ୍ବଲପୁରେ ସମଲାଈ ଆଦମପୁରେ ଭେକା ।
ଝଙ୍କଡ଼େ ସାରଳା ନାମ ଯାଜପୁରେ ବିରଜାଇ
ପ୍ରାଚୀ କିନାରେ କାକଟପୁରେ ମଙ୍ଗଳା ମହାମାଈ ।
ଜଗନ୍ନାଥଜିକୋ ଧାମ ପରେ ବିଖ୍ୟାତ ବିମଳା
ନାମ ଭଜୋ ଜନକ ପୂଜୋ କବ ନାହିଁ କର ହେଲା ।

କହାଁସୁ ଆୟେ ନାନକ ସାହି କହାଁ ତୁମାରୀ ଡେରା
କହାଁ ତୁମାର ଗୁରୁକା ଗାଦି କୋନ ବେଦକା ପଶାର ?
କନ ତୁମାର ମାତା ପିତା କନ୍ ସେ ହାତର ଭେକ
କନ୍ ତୀର୍ଥମେ ଲିଓ ତୁମ ଲେକ ବୋଲିଓ ଏକ ଏକ ।
କନ ଦେ ହାତର ତପସିମ୍, ଟୋପି କନ ହାତର ଜର
କହାଁ ଯୁକାଠି କହାଁସୁ ଚନ୍ଦନ ଭଣ ।
କୋନ ତପକନ୍ ଦିଆ ତୁମ୍‌ସେ କୋନ ଦିଆ ମିରଜାଇ
ତଯଲ କହାଁସୁ ଆୟେ ଲୋଟା କହାଁସୁ ପାଇ ?

Digitized by srujanika@gmail.com

ହୁମ୍‌କୁ ଯଦ ନାହିଁ ପାଇଗୁନା  ପିକର ଆସ୍ୱେ ଛାଡ଼ି
ତୁମ୍ ଶାଲୀକେ ନାହିଁ ଗ୍ଲେଡ଼େଙ୍ଗେ ପାଓମେ ଜାଗା ବେଡ଼ି ।
ସିକୋ କାଲୀ ସାହେବ ଜ୍ୟାଦେ ସବ୍‌କୋ ଗିରଓ କାଲେ
ପିତା ନିରଞ୍ଜନ ମାତା ଆଦ୍ୟ କାଲୀ ରୂପମେ ମିଲେ ।
ଖାନା ବନା ଆଦ୍ୟ ମରଗାସ୍ୱେ ଗୁରୁ ନାନକଜୀ ଦେଖା
ବ୍ରହ୍ମଦଣ୍ଡକୋ କାଠ କୁଦ୍ୟାଁ ଠୁଙ୍କୋ ମାଗୋ ଭିକ୍ଷା ।
ରୁଦ୍ରକମଲ ଚପକନ ଚିର ନାରଦ ଦିଆ ହମ୍‌ସେ
ଦୋ ପଲ୍ଲଇ ଦୋ ମିରଜାଇ ରାମ ଦିଲାଓ ଖୁସେ ।

ଗୁରୁ ହୁକୁମେ ତପଲ ଲୋଟା ଦିଆଏ ଜନମୀ କାଲେ
ଲଙ୍ଗି ସମ୍ବସ୍ତ୍ରର ଛାଲ ଦିଲାଓ ଖପର ଝପର ବାଲେ ।
ଧ୍ୟାନ ନିରଞ୍ଜନ କରକେ ହ୍ୱାମନେ ଗୃରଖୁଣ୍ଡମେ ଫିରି
ଗଙ୍ଗାଯମୁନା ତୀର୍ଥ ଲିଓ ପ୍ରୟାଗ ରାଜ ହରଦ୍ୱାରି
ଜମ୍ମୁକାବଲ କାଶ୍ମୀର ଦେଖା ଲିଓ ମୁର୍‌ଜାବାଦ୍
ପୁରି ସହରମେ ଆସ୍ୱେ ଆମି ଦେଖେ କ୍ଷେତ୍ରର ରାଜ ।
ବିଚମେ ଦେଖା ହସ୍ତିନାପୁରି ଅମର ସହର ପଟିଆଲା
ଜୟପୁର ବିଜପୁର ଉଦଆନ ପଟକା ଢାକା ଗୁଆଲିଅର ଦ୍ୱାଲା ।
ଅଉର ଲଖନୋ ଉଦିପର ବନ୍ଧା ଭରତପୁର ମୁଲତାନ
ଗୃନ୍ଦୁପିପୁର ଜୟପୁର ପଟନା ରାମପୁର ଲଦ୍ଦୁଆନ
କାଲି ଜରନ୍‌ମେ କାଲୀ ପୂଜେ ଗୋପ ମଥୁରା ଫିର୍ ଆୟା
ବୃନ୍ଦାବନମେ ଚଉକ କରେ୍ୱ ରାମକୃଷ୍ଣ ଦୋଭାସ୍ୱା ।
ରେବା ସରସ୍ୱତୀ ଫାଲ୍‌ଗୁନ ଗୟା ତୀର୍ଥ ଲିଓ ଦ୍ୱାମ୍‌କା
ଅଯୋଧ୍ୟା ଯାବେ ସହର କୁଲିଓ ମିଲେ ସୀତା ଶ୍ରୀରାମ ।"

ଏହି ଗୀତ ଗୋରେଖ ସମ୍ବାଦ ଅନୁକରଣରେ ଲିଖିତ, ଗୋରେଖ ସଂହିତାର ମତ୍ସ୍ୟେନ୍ଦ୍ର ଗୋରେଖ ଉକ୍ତି-ପ୍ରତ୍ୟୁକ୍ତିର ଅନୁରୂପ ।

"କଉଣ ଦିଆ ଦଣ୍ଡକମଣ୍ଡଳୁ
କଉଣ ଦିଆ ଆଧାରି
କଉଣ ଦିଆ ତୁମେ ଡୋରି କଉପୁନୀ
କଉଣ ଦିଆ ବ୍ରହ୍ମଚାରୀ ?

Digitized by srujanika@gmail.com

ବ୍ରହ୍ମା ହଥା ଦଣ୍ଡକମଣ୍ଡଳୁ
ବିଷ୍ଣୁ ହଥା ଆଧାରୀ
ଈଶ୍ୱର ହଥା ଡୋରକଉପୁନୀ
ଗୁରୁ କଥା ବ୍ରହ୍ମଗୃଣ୍ଠୀ ।" *

ସଠଗ୍ରମାନେ ସନ୍ନ୍ୟାସୀ ; ସେମାନଙ୍କ ପର୍ଯ୍ୟଟନ ଅନୁଭୂତ ହେବାରୁ ଭାରତ ଭୂମିର, ଭାରତୀୟ ସଂସ୍କୃତି ଓ ସଭ୍ୟତାର ନିବିଡ଼ ଐକ୍ୟ ପ୍ରତିପାଦିତ ହୋଇଅଛି । ସଠଗ୍ରମାନେ ହିଁଏତ ନାଗାମାନଙ୍କର ଚେଲା ।

ଉକ୍ତ ଗୀତ ଓଡ଼ିଶାର ଗାଁ ଗହଳରେ ପ୍ରଚଳିତ । ଏଥିରୁ ପ୍ରମାଣିତ ହୁଏ ଯେ ଓଡ଼ିଆ ନାଗା ସହିତ ନାଗାସନ୍ନ୍ୟାସୀର ଧର୍ମଗତ ସମ୍ପର୍କ ରହିଅଛି । ଶକ୍ତିର ସାଧନ ସେ, ଅସ୍ତ୍ରଧାରୀ ; କିନ୍ତୁ ଆକ୍ରମଣ ନୁହେଁ, ଆତ୍ମରକ୍ଷା ହିଁ ତା'ର ଲକ୍ଷ୍ୟ । ନାଗା ଧର୍ମ ସହିତ ଓଡ଼ିଶୀ ପାଇକ ବେଶ ଓ ବୀର ନୃତ୍ୟ ପରମ୍ପରା ମିଶି ନାଗାକୁ ହିଂସା ଅହିଂସା, ବୀରତ୍ୱ ଓ ଶାନ୍ତିର ଭୌତିକତା ଓ ଆଧ୍ୟାତ୍ମିକତାର ସମନ୍ୱୟରେ ଏକ ଅପୂର୍ବ ରୂପଶ୍ରୀ ପ୍ରଦାନ କରିଅଛି । ଗୁରୁ ନାନକଙ୍କ ବିଷୟରେ ଏଥିରେ ସୂଚିତ ହୋଇଅଛି । **

**ଜାନୁଘଣ୍ଟି**—ଜାନୁରେ ଘଣ୍ଟି ବାନ୍ଧିଥିବାରୁ ତାଙ୍କ ନାମ 'ଜାନୁଘଣ୍ଟି' । ଅର୍ଦ୍ଧୋଲଙ୍ଗ, କଣ୍ଠରେ ତୁଳସୀମାଳା, କାନରେ ତୁଳସୀକାଠି, ଜାନୁରେ ଘଣ୍ଟି ; ଚାଲିଲାବେଳେ ଠନ୍ ଠନ୍ ଶବ୍ଦ କରେ, ସେ ଆଗକୁ ଚାଲି ଚାଲି ଯାନ୍ତି, ପୁଣି ପଛକୁ ଫେରି ଆସନ୍ତି, ସେ କାହାକୁ ଭିକ ମାଗନ୍ତି ନାହିଁ, ଭକ୍ତ ସେ, ସମ୍ମାନାସ୍ପଦ ଲୋକେ ଯାଚି ଦିଅନ୍ତି । ତୁଣ୍ଡରେ ତାଙ୍କର ରାମନାମ—

ସୀତାରାମ, ସୀତାରାମ
କଣ୍ଠେ ତୁଳସୀ, ମୁଖେ ରାମ
ତମ୍ବା ତୁଳସୀ ଶାଳଗ୍ରାମ
କୋଦଣ୍ଡ-ରୂପଧାରୀ ରାମ
ଦଣ୍ଡଚାପଧାରୀ ରାମ
ଯହିଁ ବରଜେ ତହିଁ ରାମ
× × ×

* ( ପୃ. ୨୮୪, ଓଡ଼ିଶାର ନାଥ ସମ୍ପ୍ରଦାୟ ଓ ନାଥଧର୍ମ—
ଡକ୍ଟର ଦୋଲଗୋବିନ୍ଦ ଶାସ୍ତ୍ରୀ )
** ଚଣ୍ଡୀଗଡ଼ ବିଶ୍ୱବିଦ୍ୟାଳୟର ଦୁଇ ଜଣ ଶିଖ ବିଦ୍ୱାନ୍ ଏହି ଗୀତଟି ନେଇଛନ୍ତି ।

Digitized by srujanika@gmail.com

ରାମ ନାମ ଲଡ଼ୁ ଆ ଗୋବିନ୍ଦ ନାମ ଘି
ହରିନାମ ଖଣ୍ଡକ୍ଷୀର ଘୋରି ଘୋରି ପି ।

ଜାନୁଘଣ୍ଟ ନୟାଗଡ଼ର ପ୍ରସିଦ୍ଧ ଠାକୁର ରଘୁନାଥଙ୍କ ଭକ୍ତ; ନରସିଂହପୁର, ବଡ଼ମ୍ବା ଓ ଖଣ୍ଡପଡ଼ାରେ ଜାନୁଘଣ୍ଟଙ୍କର ମଠ ଅଛି । ଜାନୁଘଣ୍ଟ ପରଶୁରାମଙ୍କର ପ୍ରତିନିଧି; ରାମଙ୍କଠାରୁ ପରାଜୟ ପ୍ରାପ୍ତି ପରେ ସେ ନିଜର କ୍ଷତ୍ରିୟ ସଂହାରୀ ପ୍ରଳୟଙ୍କର ରୂପ ତ୍ୟାଗ କରିଥିଲେ; ବୈଦ୍ଧିକ ଶକ୍ତି ଉପରେ ତାଙ୍କର ଆସ୍ଥା ତୁଟି ଯାଇଥିଲା । ସେ ହୋଇଥିଲେ ପରମ ଯୋଗୀ, ରାମଭକ୍ତ । ସେ ଜାନୁରେ ଘଣ୍ଟି ବାନ୍ଧି ଦେଶ ବିଦେଶ ଭ୍ରମଣ କରି ରାମ ନାମ ପ୍ରଚାର କରିଥିଲେ ବୋଲି ଲୋକବିଶ୍ୱାସ ପ୍ରଚଳିତ ।

ପୁରାଣପ୍ରସିଦ୍ଧ ରାଜା ଜାନୁଘଣ୍ଟଙ୍କ ସହିତ ଏହାଙ୍କ ସମ୍ପର୍କ ସ୍ଥାପନ କରାଯାଇପାରେ । ଶାରଳା ଦାସଙ୍କ ମହାଭାରତ (ସଭାପର୍ବ)ର ଜାନୁଘଣ୍ଟ ସିନ୍ଧୁ ଦେଶର ରାଜା । ସେ ସୂର୍ଯ୍ୟଭକ୍ତ, ଯୋଗସିଦ୍ଧ । ତପସ୍ୟାରେ ତୁଷ୍ଟ ହୋଇ 'ତୁ ଦ୍ୱାପର ଯୁଗ ଭୋଗ କରିବୁ' ବୋଲି ସୂର୍ଯ୍ୟଦେବ ବର ପ୍ରଦାନ କରିଥିଲେ; କିନ୍ତୁ ଭୋଗ ନୁହେଁ, ତ୍ୟାଗ ହିଁ ତାଙ୍କର ଦୀକ୍ଷା ହୋଇଥିଲା—

"ଜାନୁଘଣ୍ଟ ପଦ ତୁହି କଲୁ ଯେବେ ଇଚ୍ଛା
ତୋର ନାମ ଜାନୁଘଣ୍ଟ ଖାଅ କରି ଭିକ୍ଷା ।
ଦିନକର ବଚନରେ ସିନ୍ଧୁ ରାଜ ତନୁ
ସେଦିନୁଁ ଘଣ୍ଟ ବାନ୍ଧିଲା ଆପଣାର ଜାନୁ ।
ମହାକ୍ଷତ୍ରୀ ବିଦ୍ୟାରେ ସେ ରାଜ୍ୟ କରେ ରକ୍ଷା
ଜନପ୍ରଜା ପାଳି ସେହୁ ମାଗିଖାଏ ଭିକ୍ଷା ।
ଘଣ୍ଟାର ଶବଦ କରି କରେ ଖଡ଼୍ଗ ଧରି
ପ୍ରଜାଙ୍କ ହିତେ ତୁଳକ ହୋଇ ଦିଗମ୍ବରୀ ।
ସେ ସିନ୍ଧୁ ମନ୍ଦିର ଦ୍ୱାରେ ଅର୍ଜୁନ ପ୍ରବେଶ
କଟକେ ପଶି କରିଲା ବୀରବାଦ୍ୟ ଘୋଷ ।"

× × ×

"ପର ହତ୍ୟାକାରୀ ନୁହେଁ, ନୁହେଁ ପରବାଦୀ
ଦ୍ୱାପର ଭୋଗ କରୁଛୁ ମହାଯୋଗ ସାଧି ।
ଧର୍ମିକେ ଧାର୍ମିକ ମୁହିଁ ଦୁଷ୍ଟେ ଅନର୍ଗଳା
ପ୍ରାଣେ ତୋର ଆଶା ଥିଲେ ଏଥୁଁ ବେଗେ ପଳା ।"

Digitized by srujanika@gmail.com

ସେ ରାଜା, କିନ୍ତୁ ରାଜବେଶଭୂଷଣ, ଆଟୋପ ଆଡ଼ମ୍ବର ତାଙ୍କର ନ ଥିଲା । ଭୋଗ୍ୟଦ୍ରବ୍ୟ ସମ୍ଭାରରେ ରାଜ୍ୟ ପରିପୂର୍ଣ୍ଣ; କିନ୍ତୁ ଭୋଗ କରିବାର ପ୍ରବୃତ୍ତି ତାଙ୍କର ନ ଥିଲା, ସେ ଅହିଂସ୍ର ଯୋଗୀ ; କିନ୍ତୁ ଯୋଗ ବିରୋଧୀ ଅସ୍ତ୍ରଶସ୍ତ୍ରରେ ଭୂଷିତ । ସେ ଆକ୍ରମଣ କରୁ ନ ଥିଲେ; ସ୍ୱରାଜ୍ୟ ରକ୍ଷା ଲାଗି ଖଡ଼୍ଗ ଧାରଣ କରୁ-ଥିଲେ ମାତ୍ର । ସେ ମହାଦାନୀ, ପୁଣି ଭିକ୍ଷୁକ; ଶରୀର ରକ୍ଷା ଲାଗି ଅନ୍ନଭିକ୍ଷା କରୁଥିଲେ । ପ୍ରଜାମାନଙ୍କୁ ସୁବସ୍ତ୍ର ପରିଧାନ କରାଇ ନିଜେ ହେଉଥିଲେ ଦିଗମ୍ବର । ରାମଭକ୍ତ ବା ଶୈବ ହେବାରେ ଉଭୟ ଜାନୁଘଣ୍ଟଙ୍କ ମଧ୍ୟରେ ଯତ୍ସାମାନ୍ୟ ତାରତମ୍ୟ ରହିଅଛି, କାଳକ୍ରମେ ହୁଏତ ଲୋକଚଳଣିରେ ବ୍ୟତିକ୍ରମ ଆସିଅଛି । କିନ୍ତୁ ଲୋକକଲ୍ୟାଣ ହିଁ ଉଭୟଙ୍କର ଆଜୀବନ ବ୍ରତ ।

**ଘଣ୍ଟାକର୍ଣ୍ଣ**—ଘଣ୍ଟାକର୍ଣ୍ଣ ଜାନୁଘଣ୍ଟଠାରୁ ଭିନ୍ନ ; କାହାରି କାହାରି ମତରେ ସେ ଏକପଦ ଭୈରବ, ତାଙ୍କର ବାହନ ବ୍ୟାଘ୍ର ; କେହି କେହି ତାକୁ ମହାନ୍ ଅନିଷ୍ଟକାରୀ ଅସୁର ବୋଲି ମନେ କରିଥାନ୍ତି । ଭାଦ୍ରବ କୃଷ୍ଣପକ୍ଷ ରାତିର ଅନ୍ଧକାର ମଧ୍ୟରେ ସେ ଗୃହେ ଗୃହେ ଉପଦ୍ରବ ସୃଷ୍ଟି କରିଥାଏ, ଧନସମ୍ପଦ ହରଣ କରେ, ଜନଜୀବନ ବିପନ୍ନ କରେ । ଘଣ୍ଟାକର୍ଣ୍ଣ ନାନା ବାଧାବିଘ୍ନ, ଆପଦ ବିପଦ ଘଟଣକାରୀ ଅସୁର । ତା'ର ମୃତ୍ୟୁ ନାହିଁ; କିନ୍ତୁ ପୂଜାଅର୍ଚ୍ଚନାଦ୍ୱାରା ତା'ର ତୁଷ୍ଟି ବିଧାନ କରାଯାଇପାରେ । ତଦ୍ଦ୍ୱାରା ଉପଦ୍ରବରୁ ଅବ୍ୟାହତି ମିଳେ ।

ବର୍ଷ ମଧ୍ୟରେ ରେଖାପଞ୍ଚମୀ (ଭାଦ୍ରବ କୃଷ୍ଣପକ୍ଷର ପଞ୍ଚମୀ) ତାର ପୂଜାର ଦିନ । ଏହା ଏକ ସର୍ବସାଧାରଣ ପର୍ବ ନୁହେ ; କେତେକ ବ୍ରାହ୍ମଣଗୋଷ୍ଠୀ ମଧ୍ୟରେ ଏହା ସୀମିତ ମାତ୍ର । ଘରର କବାଟମାନଙ୍କରେ ଦୁଧଖଡ଼ିରେ ଚତୁଷ୍କୋଣ ରେଖା ଚିତ୍ର କାଟି ତା' ମଧ୍ୟରେ ନିମ୍ନ ଚାରିଧାଡ଼ି ଲେଖାଯାଏ —

ଓଁ ଗଣେଶାୟ ନମଃ
ଓଁ ଶ୍ରୀ ରୁଦ୍ରାୟ ନମଃ
ଓଁ ଶ୍ରୀ ଭୈରବାୟ ନମଃ
ଓଁ ଶ୍ରୀ ଚଣ୍ଡିକାୟୈ ନମଃ

ସେହି ରେଖାଚିତ୍ରର ଉପରେ ଦେଉଳ ମୁଣ୍ଡିପରି ଗାର ଟାଣି ଉପରେ ଓଁ ଲେଖାଯାଏ । ହଳଦୀ, ଅଁଳା, ମେଥି ବାଟି ଗୁଳା କରି ରେଖାଚିତ୍ର ମଝିରେ ସମାନ୍ତରାଳ ଭାବରେ ଲଗେଇ ଦିଆଯାଏ । ତା' ଉପରେ ଚନ୍ଦନ, ସିନ୍ଦୂର, ଫୁଲ ଚଢ଼ାଇ ଗଣେଶ, ରୁଦ୍ର, ଭୈରବ ଓ ଚଣ୍ଡିକା ଏହି ଚାରି ଦେବଦେବୀଙ୍କୁ ପୂଜା କରାଯାଏ । ପୂଜା ପରେ ଚକୁଳି, ମଣ୍ଡା, କାକରା ପ୍ରଭୃତି ପିଷ୍ଟକ ଘଣ୍ଟାକର୍ଣ୍ଣଙ୍କ ଉଦ୍ଦେଶ୍ୟରେ ଦାଣ୍ଡ ଓ ବାଡ଼ିପଟେ ଉତ୍ସର୍ଗ କରାହୁଏ ।

Digitized by srujanika@gmail.com

ରେଖାପଞ୍ଚମୀ ପର୍ବରେ ଘରର ବାଡ଼ପଟ, ଦାଣ୍ଡପଟ ଓ ପ୍ରତ୍ୟେକ ଦ୍ୱାର ଝରକା ମନ୍ତ୍ର ପଢ଼ି କିଲାଯାଏ । ଜୁଣ ଜୈଷ୍ଠରେ ବେଣୀକରି ପ୍ରତ୍ୟେକ ଦ୍ୱାର ସ୍ଥଳରେ ଝୁଲେଇ ଦିଆଯାଏ । ସେ ଜୁଣ ବେଣୀରେ ଖଣ୍ଡେ ଖଣ୍ଡେ ତାଳପତ୍ରରେ ନିମ୍ନ ମନ୍ତ୍ରଟି ଲେଖି ବନ୍ଧାଯାଏ—

"ଘଣ୍ଟାକର୍ଣ୍ଣ ମହାବୀର
ସର୍ବବ୍ୟାଧିନିବାରଣ
ସର୍ବୋପଦ୍ରବ ସଘାତ
ବିଦ୍ରାବଣଂ ହରପ୍ରିୟେ
କଣ୍ଠେ ଯସ୍ୟ ମହାମାଳଂ
ଭୂଷଣଂ ଯସ୍ୟ ପନ୍ନଗାଃ
ତେଜାଂସି ତସ୍ୟ ଦେବସ୍ୟ
ରକ୍ଷନ୍ତୁ ମମ ମନ୍ଦିରମ୍ ।"

ବର୍ଷକୁ ବର୍ଷ ଏପରି ନୂଆ ଜୁଣବେଣୀ ସ୍ଥଳରେ ଝୁଲି ହେଉଥାଏ । ଶୈବ-ଜ୍ୱର ଶଙ୍କାରେ ମାଆମାନେ ଏହାକୁ ସ୍ପର୍ଶ କରିବାକୁ ସନ୍ତାନମାନଙ୍କୁ ବାରଣ କରିଥାନ୍ତି ।

ଘଣ୍ଟାକର୍ଣ୍ଣ ପର୍ବ କେବଳ ଓଡ଼ିଶା ମଧ୍ୟରେ ସୀମିତ ନୁହେଁ; ଏହା ଭିନ୍ନ-ରୂପରେ ହୁଏତ ଭାରତର ବିଭିନ୍ନ ଅଞ୍ଚଳରେ ପ୍ରଚଳିତ ହୋଇଥାଇପାରେ । ଅନୁସନ୍ଧାନ ଆବଶ୍ୟକ ।

ନେପାଳରେ ଏବେ ମଧ୍ୟ ଘଣ୍ଟାକର୍ଣ୍ଣ ଉତ୍ସବ ପାଳିତ ହୁଏ । ପୂର୍ବେ ସେ ରାଜ୍ୟରେ ଘଣ୍ଟାକର୍ଣ୍ଣ ନାମକ ଏକ ପ୍ରଚଣ୍ଡ ଅସୁର ଥିଲା । ସେ ଈଶ୍ୱରବିରୋଧୀ ; ଈଶ୍ୱରଙ୍କ ନାମ କାଳେ କର୍ଣ୍ଣ ମଧ୍ୟରେ ପ୍ରବେଶ କରିବ, ଏଥିଲାଗି ସେ କର୍ଣ୍ଣରେ ଗୋଟିଏ ଘଣ୍ଟି ବାନ୍ଧିଥାଏ । ସେ ଜଘନ୍ୟ କାମୁକ, ଭୟଙ୍କର ଅତ୍ୟାଚାରୀ । ଅଜଜୁ ନାମରେ ଜଣେ ବୃଦ୍ଧଙ୍କ ନେତୃତ୍ୱରେ ଦଳେ ଲୋକ ଘଣ୍ଟାକର୍ଣ୍ଣ ଶୋଇଥିବା ବେଳେ ତାକୁ ବିନାଶ କଲେ । ଦେଶ ନାନା ଉପଦ୍ରବରୁ ରକ୍ଷା ପାଇଲା । ତା'ର ସ୍ମାରକ ସ୍ୱରୂପ କୃଷ୍ଣପକ୍ଷ ଶ୍ରାବଣ ଚୌଦଦିନ ଘଣ୍ଟାକର୍ଣ୍ଣ ଉତ୍ସବ ପାଳିତ ହୁଏ; ଶସ୍ୟଗୁଚ୍ଛ ଘଣ୍ଟାକର୍ଣ୍ଣର ପ୍ରତୀକ; ଲୋକେ ସେଦିନ ରାସ୍ତାଘାଟ ବନ୍ଦ କରନ୍ତି, ପଥିକମାନଙ୍କଠାରୁ ଘଣ୍ଟାକର୍ଣ୍ଣଙ୍କ ନାମରେ ଚାନ୍ଦା ଆଦାୟ କରନ୍ତି; ସେମାନେ ଲୁହାର ଘଣ୍ଟି କାନରେ ବାନ୍ଧିଥାନ୍ତି । ଭୂତପ୍ରେତ ଘଉଡ଼ିବା ଲାଗି ଦୁଆର ବନ୍ଧରେ କଣ୍ଟା ବାଡ଼େଇଥାନ୍ତି ।
(A Folk Festival of Nepal, Illustrated Weekly, Sept. 1959)

Digitized by srujanika@gmail.com

ମଣିଷ ଜୀବନ ପାଇ କିଏ ବା ବାଧାବିଘ୍ନର ସମ୍ମୁଖୀନ ନ ହୁଏ ? କିଏ ବା ରୁଗ୍ଣ, ବ୍ୟଥିତ, ବିପନ୍ନ ନ ହୁଏ ? କାହା ଚକ୍ଷୁରେ ବା ଅଶ୍ରୁବିନ୍ଦୁ ଦେଖା ନ ଦିଏ ? କାହା ହୃଦୟ ଦୁଃଖଶୋକରେ ମ୍ରିୟମାଣ ନ ହୁଏ ? ଘଣ୍ଟାକର୍ଣ୍ଣ ସବୁ ଆଧିବ୍ୟାଧି, ଦୁଃଖଶୋକର ପ୍ରତୀକ । ଗୃହକୁ ନିରୁପଦ୍ରବ ଓ ଜୀବନକୁ ସୁଖମୟ ରଖିବା ଲାଗି ମନୁଷ୍ୟ ଘଣ୍ଟାକର୍ଣ୍ଣଙ୍କୁ ତୁଷ୍ଟ ରଖିଥାଏ ।

## ବିଚ୍ଛିନ୍ନାଞ୍ଚଳର ଲୋକସଂସ୍କୃତି

ବିଚ୍ଛିନ୍ନାଞ୍ଚଳର ଲୋକଗୀତକୁ ଉପଜୀବ୍ୟ କରି 'ପଲ୍ଲୀଗୀତ ସଞ୍ଚୟନ'ର ତୃତୀୟ ଖଣ୍ଡ ସଂକଳନ କରିବା ମୋର ଉଦ୍ଦେଶ୍ୟ ଥିଲା । ଏଥିରୁ ଭବିଷ୍ୟତ ବଂଶଧରମାନଙ୍କର ହୃଦ୍‌ବୋଧ ହେବ ଯେ, ସିଂହଭୂମ୍, ସରାଇକଲା, ଖରସୁଆଁ, ମେଦନୀପୁର, ମଞ୍ଜୁଷା, ଟିକାଲି ବସ୍ତର ଦିନେ ଖାଣ୍ଟି ଓଡ଼ିଆ ଅଞ୍ଚଳ ଥିଲା ; ଦୁର୍ବଳ ନେତୃତ୍ୱ ବିଚ୍ଛିନ୍ନାଞ୍ଚଳମାନଙ୍କ ସାଂସ୍କୃତିକ ସଚେତନତାର ଅଭାବ ଓ ଏ ପ୍ରଦେଶବାସୀଙ୍କ ଅଯୋଗ୍ୟତାରୁ ଓଡ଼ିଆ ସଂସ୍କୃତି କ୍ରମେ ବିକଳାଙ୍ଗ ହୋଇ ଅବଲୁପ୍ତ ହେଲା । ଟିକାଲି, ବସ୍ତର, ତରଲା, ବୁଡ଼ାରସିଂ ପ୍ରଭୃତି ଅଞ୍ଚଳ ବୁଲିବାର ସୁଯୋଗ ମୋତେ ମିଳିନାହିଁ । ଖରସୁଆଁ, ଚକ୍ରଧରପୁର, ଓ ଆଖପାଖ ଗ୍ରାମାଞ୍ଚଳରେ ବୁଲି ଦେଖିଲି—ଓଡ଼ିଆ ଲୋକସଂସ୍କୃତି ଭୟାବହ ସଂଘର୍ଷରେ ସମ୍ମୁଖୀନ ହୋଇ ଅବସ୍ଥା ଚକ୍ରରେ ଲୋପ ପାଇବାକୁ ବସିଛି । ସଂଗଠିତ ପ୍ରତିରୋଧ ଆଉ ନାହିଁ । ଭବିଷ୍ୟତ ଅନ୍ଧକାରମୟ ଦେଖି ସିଂହଭୂମ୍‌ବାସୀ ମ୍ରିୟମାଣ । ଓଡ଼ିଆ ପିଲା ହିନ୍ଦୀ ପଢ଼େ, ଓଡ଼ିଆ ଶିକ୍ଷକ ହିନ୍ଦୀ ପଢ଼ାଏ । ଉତ୍କଳୀୟ ସଂସ୍କୃତି ସହିତ ଏ ଅଞ୍ଚଳର ଅନ୍ତଃନାଡ଼ି ବିଚ୍ଛିନ୍ନ । ସାଂସ୍କୃତିକ ଆବର୍ତ୍ତରେ ପଡ଼ି ସିଂହଭୂମ୍ ମେଦନୀପୁର ପରି ପ୍ରାୟ ଆତ୍ମବିସ୍ମୃତ; ସିଂହଭୂମ୍‌ରେ ଶିକ୍ଷିତ ଅପେକ୍ଷା ଅଶିକ୍ଷିତ ଅଧିକ ଓଡ଼ିଆ ହୋଇ ରହିଛନ୍ତି । ଗାଉଁଲି ଭାଷା ବହୁଳାଂଶେ ଅବିକୃତ ହୋଇ ରହିଛି । ଚକ୍ରଧରପୁର ନିକଟବର୍ତ୍ତୀ ଗୋଟିଏ ଗ୍ରାମ ; ଗ୍ରାମ ମୁଖ୍ୟଙ୍କ ନିମନ୍ତ୍ରଣରେ ଗ୍ରାମବାସୀମାନେ ଆସିଲେ, ସ୍ତ୍ରୀମାନେ ବାଡ଼ପଟେ, ପୁରୁଷମାନେ ଦାଣ୍ଡଆଡ଼େ । ପଲ୍ଲୀଗୀତ ସଞ୍ଚୟନରୁ ମୁଁ କିଛି ପଢ଼ିଲେ କେତୋଟି ଗୀତ ଆବୃତ୍ତି କଲା ପରେ ବହୁ ପ୍ରବର୍ତ୍ତନାରେ ଗୋଟିଏ ଝିଅ ଦୋଳି ଗୀତଟିଏ ଗାଇଲା—

ଏ···ପଣସ ଭାଙ୍ଗିଲି କଷା<br>
ଆଗୁଁ ଦେଇଥିଲା ବୁଦ୍ଧି ଭରସା<br>
ଏବେ କଲା ଲୋକହସା,

Digitized by srujanika@gmail.com

ଏ······ତାଟିକୂଲେ ମୂଷାମାଟି
ଆସ ବଡ଼ବୋହୂ, ଖେଳିବା ବାଟି
ପଣ୍ଡିତ ଜନକ ସ୍ୱାଦ ।
ଏ······ନୂଆ ପନିକିର ରୁଖ
ବାପାମାଆ ଘରେ ଅନେକ ସୁଖ
ଶାଶୁଘରେ ବଡ଼ ଦୁଃଖ ।

ତା'ପରେ ସାହସ ପାଇ ଆଉ ଗୋଟିଏ ଝିଅ କାନ୍ଦଣା ଗାଇଲା—

ଚୁଲ୍ଲିରେ ବସିଚ ଘିଅ ପଲମ ବୋଉ ବୋ
ଆଜଠୁଁ ସରିଲା ଝିଅ ଜନମ ,,
କଣ୍ଟିକଣ୍ଟି (କଷ୍ଟି) ଦୂବ ବାଛୁଥିଆ ,,
ଆଜିଠୁଁ ସରିଲା ପଖାଳଖିଆ ,,
ଝାଡ଼ୁଆ (ଗଉଡ଼) ସାହିରେ କାଳିଆଘୋଡ଼ା ଭଉ (ଭଉଣୀ)ରେ
କିଏ ବାନ୍ଧିଦେବ ଲେଞ୍ଚଣୀ ଜୁଡ଼ା ? ,,
ବାଡ଼ିର କଦଳୀ ପାକି ପଡ଼ିଲା (ପାଚିଲା) ,,
ତୁମ ଘରୁ ମୋର ଅନ୍ନ ସରିଲା । ,,

ଯୁବକମାନଙ୍କଠାରୁ କେତେକ ନାଁଦଆ ଟିପିଲ—

'ଏତେ଼ ଟିକେ ଛୁଞ୍ଚି, ଘରଆଡ଼େ ବଞ୍ଚି,—ଆଳୁଅ । ଜଣେ ଡୁଡୁ ଖେଳର ରାହାଧର ଗୀତ ଗାଇଲା—

ପିଠ ବାଉଁଶର କୂଲରେ ପିଠ ବାଉଁଶର କୂଲ
ଗୁଡ଼ିଦେଲେ ମାଡ଼ ବସିବ ସିଂହଭୂୟାଁ ପିଲରେ
ସିଂହଭୂୟାଁ ପିଲ ।

ସବୁଠୁ ଭଲ ଲାଗିଲା କଥାର ଲଥାଟି ; ଏକାବେଳକେ ନୂଆ । ପିଲାଙ୍କ 'କାହ୍ନିକା'ର ବ୍ୟଙ୍ଗାତ୍ମକ ଓ ପ୍ରୀତିପ୍ରଦ ଉତ୍ତର ।

'ମୋ ଖିସ୍ତି କିଏ ନେଲା ?
ବିଲେଇ ନେଲା ।
ବିଲେଇକି କେତେଦୂର ଦଉଡ଼ାଇଲୁ ?
ଖଣ୍ଡିଆ ବନ୍ଧ ।

Digitized by srujanika@gmail.com

ଖଣ୍ଡିଆ ବନ୍ଧରୁ କଣ ଆଣିଲୁ ?
ମାଟି ଭରେ ।
ମାଟିଭରକୁ କାହାକୁ ଦେଲୁ ?
କୁମ୍ଭାରକୁ ।
କୁମ୍ଭାର କ ଦେଲା ?
ହାଣ୍ଡି ଭରେ ।
ହାଣ୍ଡି ଭରକୁ କାହାକୁ ଦେଲୁ ?
ତେଲୀକି ।
ତେଲୀ କ ଦେଲା ?
ତେଲ ଭରେ ।
ତେଲଭରକୁ କାହାକୁ ଦେଲୁ ?
ଗୁଡ଼ିଆକୁ ।
ଗୁଡ଼ିଆ କ ଦେଲା ?
ମିଠେଇ ଭରେ ।
ମିଠେଇ ଭର କାହାକୁ ଦେଲୁ ?
ବ୍ରାହ୍ମଣକୁ ।
ବ୍ରାହ୍ମଣ କ ଦେଲା ?
ଗୁଆ ପଇତା, ଚନ୍ଦନ ଚିତା
ଗୁଆ ପଇତା ଚନ୍ଦନ ଚିତା କାହାକୁ ଦେଲୁ ?
ରଜାଙ୍କୁ ।
ରଜା କ ଦେଲେ ?
ହାତୀ ଘୋଡ଼ା ଅନ୍ତୁଣ କେତେ
ହାତୀ ଘୋଡ଼ା କଣ ହେଲା ?
ଗୋଟିଏ ପାଣି ପିଉଁ ପିଉଁ ମଲା
ଗୋଟିଏ ଘୁଷୁରୀ ଗାତରେ ମଲା
ଗୋଟିଏ ପିମ୍ପୁଡ଼ି ଗାତରେ ମଲା ।

ଓଡ଼ିଶାର ଅଧିକାଂଶ ଓଷାବ୍ରତ ସିଂହଭୂମ୍‌ରେ ପ୍ରଚଳିତ ; କିନ୍ତୁ ସିଂହଭୂମ୍‌ର କେତେକ ଓଷାବ୍ରତ ଓଡ଼ିଶାରେ ଚଳେ ନାହିଁ । ଖରସୁଆଁ ଓ ଚକ୍ରଧରପୁରର 'ଶିଶୁ ସୁବନାଥୀ' ବ୍ରତ ଓଡ଼ିଶାର ପ୍ରାଚୀନ ଗୌରବର ପ୍ରତୀକ । ଏ ଗୋଟିଏ ଜଳଯାତ୍ରା ଓ ଯୁଦ୍ଧଯାତ୍ରାର କାହାଣୀ; ଉତ୍କଳୀୟ ନାରୀ ଅବଳା ନୁହେଁ, ବୀରାଙ୍ଗନା;

Digitized by srujanika@gmail.com

ରଣାଙ୍ଗନରେ ସେ ବିଜୟିନୀ, ସିଂହଳର ରାଜାଙ୍କୁ ପରାସ୍ତ କରି ସେ ବାନ୍ଧି ଆଣିଛି । ତାଙ୍କୁ ଭଲ ପାଇଛି ; କିନ୍ତୁ ପରାଜିତ ପୁରୁଷ ସଙ୍ଗେ ତା'ପରି ବୀରନାରୀର ପରିଣୟ ଅବିଧେୟ । ଶିରୀ ସମୁଦ୍ରରେ ବୋଇତ ବୁଡ଼ାଇ ଆତ୍ମହତ୍ୟା କରିଛି ।

ବ୍ରତାନୁଷ୍ଠାନ ଚଟାରେ ଗୋଟିଏ ବୋଇତ ଲେଖାଯାଏ; ପ୍ରାଚୀନ ଉତ୍କଳୀୟ ବୋଇତର ସ୍ମାରକ ଏ । ଓଡ଼ିଶାରେ ଅନ୍ୟତ୍ର କାନ୍ଥ କବାଟରେ ଏପରି ବୋଇତ ଅଙ୍କିତ ହେବାର ଦେଖିନାହିଁ ।

ବ୍ରତ କଥାର ଭାଷା ଗଦ୍ୟ ; କିନ୍ତୁ ପଦ୍ୟ ସ୍ୱର ଦେଇ ଏହା ବୋଲାଯାଏ, ଗାଉଣୀ ଦେବତାଙ୍କ ନାଁ ଧରି ଗାଏ । ଦେହୁରି ପୂଜା କରେ । ଦେହୁରି ପାଟୁଆଙ୍କ କାଳସୀ ପରି କଣ୍ଠା ପିଢ଼ାରେ ବସେ, ନୁଆଁରେ ଝୁଲେ । ଏହି ବ୍ରତର ପୁରୋହିତ ଜଣେ କୁମ୍ଭାର । ଏ ବ୍ରତରେ ଜାତିଭେଦ ନାହିଁ । ଯେ କୌଣସି ଜାତିର ଲୋକ ସ୍ୱଜନ ଥିଲେ ପୂଜା କରିପାରନ୍ତି । ବ୍ରତପାଳନ ଉଦ୍ଦେଶ୍ୟ ବ୍ରତ କଥାରେ ବର୍ଣ୍ଣିତ ହୋଇଅଛି, 'ତୁମେ ମାଗୋ ଗୁହାରି ଶୁଣିବ, ଅନ୍ଧକୁ ଯେ ଚକ୍ଷୁଦାନ ଦେବ, ନିପୁତ୍ରକୁ ପୁତ୍ରଦାନ ଦେବ, ନିଧନକୁ ଧନ ଦେବ ।'

ଧର୍ମଦେବତାଙ୍କ ସିନ୍ଦୂରଟିପା ଦେଲାପରେ ବଡ଼ମା ଠାକୁର, ଗାଆଁ ଶିରୀ ଠାକୁରାଣୀ, ପୁଣ୍ଡ୍ରଦାରି (ଧୋବ ପଥର), ସିନ୍ଦୂର ଗୌରୀ (ପୋଖରୀ) ଜଟିଆ ପାଟ (ପାହାଡ଼), ରାଇସୁନ୍ଦରୀ ପାଟ (ପାହାଡ଼), ଗଡ଼ଗଡ଼ିଆ ପାଟ, ଦାମୋଦର (ନାଗରାକୃତି ପ୍ରସ୍ତର), ବସିଣା ବୁଢ଼ୀ (ଗଛର ଡାଳରେ ଥିବା ଦେବୀ), ଆକର୍ଷିଣୀ (ପାହାଡ଼ ଦେବୀ), କେରା ଦୁର୍ଗା, ଖିଚଙ୍ଗେଶ୍ୱରୀ, ଝୁମୁକେଶ୍ୱରୀ, ସମଲେଶ୍ୱରୀ ଓ ମହାମାୟୀ କାଳିକାଙ୍କ ଆବାହନ କରାଯାଏ । ତା'ପରେ ବହୁ ଦେବଦେବୀ, ନରନାରୀ, ଜୀବଜନ୍ତୁ, ସରୀସୃପ, ବୃକ୍ଷଲତା, ଜଡ଼ପଦାର୍ଥର ଆବାହନ ହୁଏ । ସତେ ଯେପରି କି ଉତ୍କଳୀୟ ଗୌରବ ଦିନର ଏହା ଏକ ସୂଚୀପତ୍ର ।

ଗ୍ରାମର ଗ୍ରାମବୁଢ଼ା, ପାଉଡ଼ୀ ବୁଢ଼ୀ, ପାଉଡ଼ୀ ପାଟଖଣ୍ଡା, ଇନ୍ଦ୍ର ବୋଲି ରଜା, ଇନ୍ଦ୍ର ବୋଲି ରାଣୀ, ଚନ୍ଦ୍ର, ସୂର୍ଯ୍ୟ, ହେମନ୍ତ ରଜା, ମାଳା ସ୍ୱପନମାଳା, ମାମୁଁ ନାରଦ, ଢକୋଇ, ରାଉତ କୁମର, ଝୋପି ପରିବାରୀ, ଦାସୀ ପରିବାରୀ, ଗଉଡ଼ର ପୁଏ, ଦେହୁରୀ ଦେହୁରାଣୀ, ଧନ୍ତାମନ୍ତ ହାତୀ, ଉଡ଼ଣବାରଣ ଘୋଡ଼ା, ଲାଦଲକ୍ଷ ବାଘୁଆ ବଳଦ, ଇନ୍ଦ୍ର ଗୋବିନ୍ଦ ଗୃନ୍ଦୁଆ, ମଗରମୁହାଁ ପାଲିଙ୍କି, ବେଦର ପୁଅ, ଜାନି ଭଣ୍ଡାରୁଣୀ, ନଡେଇ ଧୋବଣୀ, କଯୁରୁଣୀ ଗାଈ, କୁଳ ପୁରୋହିତ, ଆଠ ବରଣିଆ, ଲକ୍ଷେ ଗୋ-ବ୍ରାହ୍ମଣ, ବାରଣ ବଢ଼େଇ, ବାରଣ ବଣିଆ, ନାଟୁଆର ପୁଅ, ଭାଟର ପୁଅ, ରାଧା ଗୁଳକାଣୀ, ଦୂତୀ ଗୁଳକାଣୀ, ଶ୍ରୀଧର ଗୁଳକ, ମନୋହର ଗୁଳକ,

Digitized by srujanika@gmail.com

ଢଗବାରୁଆ, ଢାସିଆ କେଉଟ, ଛତର ବଇରେଖ, କଳାଧଳା ଛତ, ଆଢେଣୀ ତଗ୍ରସ, ଓଲଟ ବଣ୍ଟଣା, ନାଙ୍ଗର ଧାମ୍ସା, ତୁମ୍ବ ରଣେଢା, ଘଣ୍ଟିଘୁଙ୍ଗୁରମାନ, ଡିବଡିବ ବାଇଦ, ତେଲେଙ୍ଗା ବାଇଦ, ମୁଖବଂଶୀମାନ, ନାକବଂଶୀମାନ, ଭୃଙ୍ଗରାଜ ଟେଢ଼ିଇ, ଡାମ କାଉଚଆ, ମାର ମାର ଠେଙ୍ଗା, ବାନ୍ଧ ବାନ୍ଧ ଦଉଡ଼ି, ଢଣ୍ଡା ନଳତା, କଳା ଚୁଲପା, ବାରଭୁଇଁଗଡ଼ି, ବାରଗଡ଼ିଆଣୀ, ଅଦଆ ରଜା, ପଦଆ ରଜା, ଟଳଣବାନ୍ଦର, ନାଣ୍ଡୁ ହନୁମନ୍ତ, ମହାନନ୍ଦାଗଣ୍ଟ, ସୁନା ଗିରଧନୀ, ରୁପା ଗିରଧନୀ, ଅନ୍ଧ ବଢ଼ାଇ, ଅଜଗର ବୋଡ଼ା, ଖୋଲଝଣ୍ଡ ବୋଇତ, ନୁଠୁଣି ବୋଇତ, ଢଳଣି ବୋଇତ, ପାଟଭେଲ ଶୁଆ, ଡାହାଳ କୁକୁର, ଶଙ୍ଖ ଝଲେଇ, ମାନଝର ଖଣ୍ଡା, ଦେଶ ଉଜଳ ଫର, ହରଣ୍ଡର ପାଗ, ଧରମ ଯୁଜଷ୍ଟି, ତାଲଗାଆଣି, ମୂଳ ଗାଆଣି ଇତ୍ୟାଦ ।'

ବ୍ରତ କଥାଟି ମୌଖିକ ହୋଇଥିବାରୁ ଭିନ୍ନ ଭିନ୍ନ ମୁଖରେ ଭିନ୍ନ ଭିନ୍ନ ଆକାର ପ୍ରକାରରେ ଏହା ମିଳେ । ବିଶେଷ ପ୍ରାଚୀନ ଓ ମୁଖେ ମୁଖେ ବିକୃତ ହୋଇଥିବାରୁ ଏହାର ଭାଷା ସୁବୋଧ ନୁହେଁ । ଭାଷାର କିଞ୍ଚିତ୍ ନମୁନା ନିମ୍ନରେ ଦିଆଗଲା । ଜଳଯାତ୍ରାବେଳେ ଶିଶୁ ସୁବନାଥୀଙ୍କ ନିର୍ଦ୍ଦେଶ ଏ ।

'ଦଦାକେ ବୋଲଇ ଦାସିଆ କେଉଟ, ତୁମ୍ଭେ ଦଦା ସୁପାରେ ବାହିବ
କି ଆହ୍ଵା ସୁପାରେ ବାହିବ

ଦଦାକେ ବୋଲଇ ଏ ବିଷ୍ଣୁ କେଉଟ, ତୁମ୍ଭେ ଦଦା ଟାଣି ନାବ ବାହ
କି ଆହ୍ଵା ଟାଣି ନାବ ବାହ ।

ଏ ଯେ ତାର ନାଗସ୍ର ବାଜିଲା, ଏ ଯେ ତାର ଧମ୍ସା ବାଜିଲା
ଏ ଯେ ତାର ମୁଖବଂଶୀମାନ, ଏ ଯେ ତା'ର ନାକବଂଶୀମାନ
ଏ ଯେ ତାର ଡ଼ିବ ଡିବ ବାଇଦ, ଏ ଯେ ତାର ତେଲେଙ୍ଗା ବାଇଦ
ଏ ଯେ ତାର ନାଟୁଆର ଝିଅ, ଏ ଯେ ତାର ନାଚ ଯାଉଅଛୁ
ଏ ଯେ ତାର ଭାଟୁଆର ପୁଅ, ଏ ଯେ ତାର କବଚ ପଢ଼ୁଛୁ
ଦଦାକେ ବୋଲଇ ଏ ଢଗବାରୁଆ, ତୁମ୍ଭେ ଦଦା ଢଗ ଗୋ ବାଣିବ
ସିଙ୍ଗଳ ଦ୍ଵୀପ ଅଛୁ କେତେ ଦୂର ?
ସିଙ୍ଗଳ ଦ୍ଵୀପ ଅଛୁ ବହୁ ଦୂର
ଏ ଯେ ତାର ବୋଇତ ଚଳିଲା ।"

Digitized by srujanika@gmail.com

ଓଡ଼ିଶାର ବଉଲା ଗାଈ ଗୀତ ପରି 'କପିଳାସ ଗାଈ' ଗୀତଟି ମାନଭୂମିର କୁର୍ମୀମାନେ ଜାଗର ରାତରେ ଗାଇଥାନ୍ତି । କପିଳାସ ଗାଈ ସତ୍ୟ ରକ୍ଷା କରି ବାଘ ପାଖରେ ପହଞ୍ଚିଥିଲା, ବାଛୁରି ତା' ସାଥିରେ ମାୟାରେ ଗୋଡ଼ାଇ ଯାଇଥିଲା । ବାଘ ଦୁଇଟି ଶିକାର ପାଇ ଖୁସି ହୋଇ ଯାଇଥିଲା । ବାଳୁତ ବାଛୁରିର କାରୁଣ୍ୟ ଭଗବାନଙ୍କ ମର୍ମରେ ବାଜିଲା । ସେ ତା ଦେହରେ ଅବତରିଲେ, ବାଛୁରି ବିଶ୍ୱରୂପ ଧାରଣ କଲା; ବାଘ ବିଶ୍ୱରୂପ ଦେଖି ଭୟରେ ଥରିବାକୁ ଲାଗିଲା । ତାର ଦୁରାକାଂକ୍ଷା ଉଭେଇ ଗଲା । ବ୍ୟାଘ୍ର କବଳରୁ ମୁକ୍ତ ହୋଇ କପିଳାସ ଗାଈ ବାଛୁରି ସହିତ ଘରକୁ ଫେରିଲା । ଓଡ଼ିଶାରେ ପ୍ରଚଳିତ ବଉଲା ଗୀତ ସହିତ କପିଳାସ ଗାଈ ଗୀତ ତୁଳନୀୟ । ତଳେ କେତୋଟି ପଦ ଉଦ୍ଧୃତ ହେଲା ।

"ଛୁଟୁ ମୁଟୁ ଛୁଟୁ ମୁଟୁ କପିଳାସ ଗାଈ ଗୋ
ରନବନେ ଯାତ ବଡ଼ଦୂର
ଚରିଏ ଫିରିଏଁ କପିଳାସ ଘର ଯେ ମୁରିଏଁ
ରାସତାଇଁ ଛେଁକିଲେନ୍ ବାଘ ଯେ ।

ବାଘ—ଶୁନହିଁ ଶୁନହିଁ ତୁଇ କପିଳାସ ଗାଈ ଯେ
ଶୁନହଲେ ମୋହରି ବଚନ
ବାର ବଛର କେରି ଆହାର ଯେ ପାଇଲହିଁ
ଆଜ ତ ନେବ ଜୀବଦାନ ।

ଗାଈ —ଶୁନହିଁ ଶୁନହିଁ ତୁଇ ବାଘ କେରି ପୁତା ଯେ
ଶୁନହଲେକ ଆମାର ବଚନ
ଘରେ ଆଛେ ଆମାର ମନରହୁ ବାଛୁରି
ଭୋକେ ଶୋଷେ ଜାତରେ ଲୋଟାଇ
ଆଁଖିର ପାଣି ପଡ଼େ ଧସ ଧସ୍
ସତ୍ୟ କରିଏ କପିଳାସ ଘର ଯେ ବୁରିଏଁ
ପହଞ୍ଚିଲ ଆପଣାର ସ୍ଥାନ ।
'ଖାଅ ବାବା ଖାଆ ମନ ଭରି ଦୁଧ ଗୋ
କାଲ୍ ତ ଚଲିଏ ନାଗ ଯାବରେ ।'
'ନାହିଁ ଯେ ଖାବ ମା' ମୁହିଁ ଭରି ଦୁଧ ଗୋ
ଦୁଃଖ ସୁଖ କହନା ରେ ଦେଲ ଯେ ।'
'କପିଳାସ ସଙ୍ଗେ ଚଲତେ ଲାଗିଲ
ସଙ୍ଗେ ଗେଲ ମନରହୁ ବାଛୁରି ।'

Digitized by srujanika@gmail.com

'ବାଘ ଯେ ଦେଖି ଏ ମୁଣ୍ଡ ଟେକି ଏ ବଲେ
ଧନ୍ୟ ବାବା ଆମାର କପାଲ
ଏନ ଯେ ସତ୍ୟ ଛୁଲ ଦୁଇ ଯେ ପାଇଲ୍'
ଧନ୍ୟ ବାବା ଆମାର କପାଲ ।'
'ଘୃଣ କନେ ଘୃଣ ଦେବତା ଯେ
ଶିଙ୍ଗ ଯେ ବଢ଼ିଏ ଆକାଶେ ଲଗି ଏ
ଆକାଶ ତ କମ୍ପେ ଥରହର
ଯଖନ ମନରନୁ ବାଛୁଗି ଝାଲନାରେ ମାଣ ଏ
ପୃଥିବୀ ତ କମ୍ପେ ଥରହର
ଏକ ଶିଙ୍ଗେ ମାରବ ଆର ଶିଙ୍ଗେ ଲୁଟବ
ଆଜ ବାଘେର ନେବ ଜୀବଦାନ ।'

ଗାଈ ଯେପରି ସତ୍ୟ ରକ୍ଷା କଲା, ମନୁଷ୍ୟ ସେହିପରି ସତ୍ୟ ପାଳନ କରିବା ଉଚିତ । ତା ନ ହେଲେ ସେ ପଶୁଠାରୁ ହୀନତର ହେବ ଓ ତା'ର ମନୁଷ୍ୟ ଜନ୍ମ ବୃଥା ହୋଇଯିବ । ଜାଗର ଦୀପ ଜାଳି ମହାଦେବଙ୍କ ସାମ୍ନାରେ କୁର୍ମୀ ଏହି ସଙ୍କଳ୍ପ କରେ । ଆନୁଷ୍ଠାନିକଭାବରେ ଏହି ଗୀତ ବୋଲାହୋଇଆସୁଛି ଓ ଜାଗର ଯାହାର ଏକ ବ୍ରତ ବା ଓଷା ଗୀତ ପରି ହୋଇଅଛି ।

## ମେଦିନୀପୁରୀ ଗୀତ ଓ ଓଡ଼ିଆ ଉପଭାଷା

ମେଦିନୀପୁରର ଲୋକେ ନୂଆ ଇତିହାସ ଗଢ଼ିଛନ୍ତି – ସେମାନଙ୍କ କଳନାରେ ଏ ଅଞ୍ଚଳ କେବେ ଓଡ଼ିଶାରେ ନ ଥିଲା । ଓଡ଼ିଶା ପଡ଼ୋଶୀ ପ୍ରଦେଶ ହୋଇଥିବାରୁ ସେଠା ସଂସ୍କୃତିର ପ୍ରଭାବ ସତ୍ତ୍ୱସାମାନ୍ୟ ପଡ଼ିଛି ମାତ୍ର । ମେଦିନୀପୁରର ଭାଷା ସ୍ଥାନୀୟ ଲୋକଙ୍କ ମତରେ ନୁହେ ଓଡ଼ିଆ, ନୁହେଁ ବଙ୍ଗଳା; ଏହା 'ମେଦିନୀପୁରୀ' ।

ବଙ୍ଗଳା ଭାଷା ପ୍ରଚଳିତ ପଦ୍ୟ ଅପେକ୍ଷା ଗଦ୍ୟକୁ ଅଧିକ ପ୍ରଭାବିତ କରିଛି । ଏହା ସ୍ୱାଭାବିକ; ଗଦ୍ୟର ପରିବର୍ତ୍ତନ ଦ୍ରୁତତର ଭାବେ ହେଉଛି । ତଥାପି 'ମେଦିନୀପୁରୀ'କୁ ଓଡ଼ିଆର ଏକ ଉପଭାଷା ରୂପେ ନିଆଯାଇପାରେ । ନିମ୍ନରେ ମେଦିନୀପୁରୀ ଗଦ୍ୟର ଗୋଟିଏ ଦୃଷ୍ଟାନ୍ତ ଦିଆଗଲା—

ଏକ ବାପେର ତିନ ପୋ ଥାଇଲା । ତାର ମନକେର ବାପା ମରିଯାବାର ଆଗେ ଗଟେ ଉଇଲ କରିଗେଲା । ସେ ଉଇଲେ ଲେଖା ରଇଲା—ଆମାର ତିନ ପୋ'ର ମଧ୍ୟେ ସବଗୁଇ ଯେ ବଡ଼ ବେକୁବ୍ ହବେ, ସେ ଅଧାଆଧି ସମ୍ପତ୍ତି ପାବେ ।

Digitized by srujanika@gmail.com

ବାକୀ ଆଧେ ଦୁଇ ପୋ ପାବେ । ବାପ ମରିଯାବାର ପର ତାର ତିନ ଟୋକାର ମଧ୍ୟେ ଝଗଡ଼ା ଲଗିଲ । ବଡ଼ କହିଲ ଆମି ବଡ଼ ବେକୁବ୍, ମଝିଆ କହିଲ ଆମି ବଡ଼ ବେକୁବ୍, ସ୍ରେଷ୍ଟ କହିଲ ଆମି ବଡ଼ ବେକୁବ୍ । ଓ ରକମ୍ କହିତେ କହିତେ ଝଗଡ଼ା ହଇଲ । ଝଗଡ଼ା ହଇତେ ମାରପିଟ୍ । ଗ୍ରାମର ଲୋକ କହିଲେ ଯେ ତୋରମାନେ ଝଗଡ଼ା କାଜିଆ କରନ୍ତୁ କେନ ? ବାପେର ଜିସ୍ଥାଟା ଇକ୍ରମାଲ୍ ଖରଚେ କର । ତାର ପର ଜିସ୍ଥାର ପର ଆମାରମାନେ ମୋଟମାଟ କରିଦେବା । ମୋଟମାଟ କୋନମତେ ହଇଲନା । ଅଦାଲତ ଯାଇତେ ହଇଲ । ହାକିମ୍ ପଚ୍ରିଲ ବଡ଼କେ—ତୁଇ ଯେ ବଡ଼ ବେକୁବ୍ ତାର ପ୍ରମାଣ କହ ।”

‘ହଜୁର୍, ଆମି ଆମର ଶଶୁର ଦୁଆରେ ଥାଇ । ସଉଠି ଆମର ଗଟେ ଟୋକା ହଇଲ । ମା’କେ ମା କହନ, ବାପ୍‌କେ ବାପ୍ କହନ । ଆମି ଆମାର ମାଇପର ସଙ୍ଗେ ଯୁକ୍ତି କରିଲ—ଆମି ତୋକେ ମା କହ, ତୁଇ ଆମାକେ ବାପ କ । ଓ ରକମ୍ କରିତେ ଟୋକା ମା ବାପ୍ ଡାକତେ ଶିଖିଲ । କିନ୍ତୁ ଆମାରମାନଙ୍କର ଅଭ୍ୟାସ ରଇଗେଲ । ହଜୁର୍, ଘର ଆଇଲ ।

ବାପ କହିଲ—ତୋର୍‌ମାନଙ୍କର ଏ କି ସ୍ୱଭ୍ ? ତୁଇଂ କିନା କେନା ଘରଣିକେ ମା କହ, ସେ ତୋକେ ବାପ କଏ । ଆମି ତଖନ ଆଗୁକର କଥାଟା କହିଲ । ତଖନ ବାପ କହିଲ—ତୁଇ ଆମାର ତିନ ପୋର ମଧ୍ୟେ ବେକୁବ୍ ।

ହାକିମ୍ ମଝିଆକେ ପଚରିଲ—ତୋର କି ପ୍ରମାଣ ଦେ । ‘ହଜୁର, ଏକ ଦିନ ଜାଲ ଫେକି କି ଗଟେ କାଙ୍କଡ଼ା ଧରିଥିଲ । ଆମି କହିଲ—ଆମି ଖାବା, ଅମର ମାଇପ କହିଲ—ଅମି ଖାବା । ଦୁଇ ଲୋକ ଝଗଡ଼ା ହଇଲ । ନିଅମ କରିଲି କି ଦୁଇ ଲୋକ କଥା ବନ୍ଦ କରିଦେବା ଆସ୍ତୁ, ଯେ ଆଗୁରେ କହିବ, ସେ କାଙ୍କଡ଼ା ଖାଇତେ ପାବେନ । ରାତେ ଘରେ ଶୁବାର ସମୟ ନିଅମ ଥାଇଲ ଯେ ଆମି କବାଟ ବନ୍ଦ କରି ଶୁବା । ଆମି ତ ଆଗେ ରଗି କି ଶୁଇଗଲି । ଆମାର ମାଇପର ତ କବାଟ ବନ୍ଦ କରବାର କଥା ନାହିଁ, ସେ ବି ଆସି ଶୁଇଗେଲ, କବାଟ ଆଲଗା ।

ତିନ ଲୋକ ଚୋର ଆଇସିକି ଘରେ ପଶିଲ । ଆମି ସତର (ଜାଗ୍ରତ) ଅଛୁ, ସବ ଦେଖିଚି ।’

ହାକିମ୍—ତୁଇ ଉଠିପଡ଼ି କି ଘେଉଡ଼େଇ ଦେଲୁନି ଚୋର ?

‘ଆମି କଥା କହିନେ ଯେ କାଙ୍କଡ଼ା ଖାଇତେ ପାବାନି, ତିନଲୋକ ଚୋର ଚାରଟି ମୋଟ ବାନ୍ଧିଲ । ବାନ୍ଧି କି ଭାବିଲ ଯେ ଆମାର ତ ତିନଲୋକ, ମୋଟ

Digitized by srujanika@gmail.com

ସୃରଟିସ୍ୱା । ଆର ଗୋଟେ ମୋଟ କେ ଲ ଯାବେ ? ଘରେର ଭିତର ଘୁରତେ ଦେଖିତେ ପାଇଲ ଆମାକେ—କେ ଶାଲା ଶୁଇଚୁରେ ? କହିକ ହୁଡ଼୍ ହୁଡ଼୍କ ଟାନଥାନ ଏକ ଲଥ୍ ଦିଲ ପାଢ଼େ—ଶାଲା, ମୋଟ ଲ ଚଲ୍ ।

ହଜୁର୍, ତଖନ ବ କଥା କଇନ । ଘରେ ପନ୍ଦ୍ଧୁ କ କଇଲ ପକା ଶାଲା ଏଠି ମୋଟ । ଆମି ମୋଟ ପକେଇଦିତେ ଢନଟା ଲଥ୍ ମାଶ କଇଲ— ଯା! ଶାଲା, ସୃଲ ଯା । ତାହିନେ ଆମିତ ବଡ଼ ବେକୁବ୍ ହଇଲ, ହଜୁର, ଆମାକେ ଅର୍ଧେକ ସମ୍ପତ୍ତି ଦିଆହେଉ ।'

ତାରପର ଗ୍ରେଟ ପୋ'କେ ହାକମ୍ ପଚଶଲ—ତୋର କଥା କ ।

'ହଜୁର, ଆମର ଦୁଇ ମାଇପ । ଆମର ଗଟେ ନିଅମ ଥାଏ—ଶୁବାର ସମସ୍ତ ଆମି ମଝଶାସ୍ଥ ଶୁବା, ଦୁ ମାଇପ ଦୁ ପାଶେ ଶୁବେ, ଦିଟା ହାତ ଦୁଇ ଲୋକେର ଉପରେ ଲାଦ ଶୁଇତେ ହବେ । ହାତ ଉଠିଇ ଲିସ୍ୱା ଚଲ୍‌ବେନ । ବାରମାସିଆ ଭିଡ଼ଭିଡ଼ ହୁକାରେ ନଆଁ ଭୁଲ କ ଦିଲ । ନଲଟା ଆମାର ମୁଖେ ଲଟେଇ ଦ ଗେଲ । ଆସି ଟପ୍‌କା (ତମାଖୁ) ଗଟେ କାଶ୍ ଉଠଲ, କାଶି ପକେଇତେ ଟିକ ନଆଁ ଉଡ଼ିକ କପାଳେ ପଡ଼ିଗେଲ । ଆମାର କପାଳ ପୁଡ଼ିଗେଲ, ଆମାର ଦୁ ହାତ ଉଠବାର କୋନ ଉପାସ୍ଥ ନାହିଁ, ହଜୁର, ଦିଧାନ ଗାତ ହଛେ । ଆମି ସବ ଠେସ୍ତେ ବଡ଼ ବେକୁବ୍ ।' 'କଣ୍ଟାଇ, ମୋ ସଙ୍ଗୁହୀତ'

ଏହି ଗଦ୍ୟ ତୁଳନାରେ ସ୍ଥାନୀସ୍ଥ ଲୋକଗୀତ ଉପରେ ବଙ୍ଗଳା ଭାଷାର ପ୍ରଭାବ କମ୍—

'ମା ଦିଲନ ସରୁ ଶଂଖା ବାପ ଦିଲନ ଶାଢ଼ୀ
କୋନ ଶାଢ଼ୀଟା ପରେ ଯାବେ ଶଶୁରେର ବାଡ଼ି ?
ଆଗେ କାନ୍ଦେ ମା ମାଉସୀ ପିଛେ କାନ୍ଦେ ପର
ପରଜାପତିର ଲିଖନ ଆଛେ ପରଘରକୁ ଚଲ୍,
ଆଇଜ୍ (ଆଜି) ଯାଇତେ ମାଆ ମୋର କ୍ଷୀର ନନି (ଲହୁଣୀ) ଖାଇସ୍ୱା
କାଲ ଫିରୁ ମାଆ ମୋର ସସାର୍ କାନ୍ଦିସ୍ୱା ।'

ପୂର୍ବ ଅଞ୍ଚଳର ସେଇ ପ୍ରଶ୍ନାତ୍ମକ ଗାଥା ମେଦିନୀପୁରରେ କିଞ୍ଚିତ୍ ଭିନ୍ନ-ରୂପ ଧାରଣ କରିଛି—

ବେଙ୍ଗ—ଲମ୍ବୁନାକାରେ ଗୋଦିରଗୋଡ଼ା ରୁ
ମାଣିକ କ ପାଇଁ ମାଡ଼ ?

Digitized by srujanika@gmail.com

ହୀରା—ଟେପ୍‌ଟିନାକ୍ଟୀ ଲୋ ଦନ୍ତଫୁଟଙ୍କା ତୁ
ବାଟରେ କି ପାଇଁ ପଡ଼ୁ ?

ବେଙ୍ଗ—ଶ୍ରୀଧର ପାଢରେ ଶ୍ରୀଧର ପାଢ
ମୁଁ କିନା ହେଲି ଟେପ୍‌ଟିନାକ୍ଟୀ ?

ଏଣ୍ଡୁଅ—ତୃମୀ ହୁଅ ଲୋ ସର୍ଗ ଅପସରୀ
ନେଞ୍ଚ ଲୋକ ସଙ୍ଗେ ନ କର କଳି । (ପୁରୀ)

ବେଙ୍ଗ—ଉଁଚ କପାଳୀ, ଚରନ୍‌ଦାନ୍ତୀ ଡେଇଁଯାଉଚୁ ମତେ

ହୀରା—ମୁଁ ସ୍ୱରୂପେ, ପେଁଚଲ୍‌ନାକୀ, ଦଇବ ରଖିଲା ତତେ ।

ବେଙ୍ଗ—ଶୁନ ଗୋ ବାସଚନ୍ଦନ (ଚୁଚୁନ୍ଦ୍ରା), ଚରନ୍‌ଦାନ୍ତୀର କଥା

ଚୁଚୁନ୍ଦ୍ରା—ତୁମି ଆମର ପାଟରାଣୀ, ନୀଚେର ସଙ୍ଗେ କି କଥା ?
(କଣ୍ଠାଇ, ମେ। ଫଗୁଖାତ)

'କଲରେଇ' କାହାଣୀରେ 'କୁସ୍ତ୍ରୀ' ନାମ ଧାରଣ କରିଛୁ ; କିନ୍ତୁ ଗାଥା ବସ୍ତୁ ମଧ୍ୟରେ କୌଣସି ତାରତମ୍ୟ ନାହିଁ । କଲରେଇ ନାରଙ୍ଗ, କୁସ୍ତ୍ରୀ ଆମ୍ବ, ଖାଇବା କଥା ଅଛି; ପୁରୀ, କଟକରେ ଏହା ସାଧାରଣ ଜୀବନର, ମେଦିନୀପୁରରେ ଏହା ରାଜପରିବାରର ଏକ କାହାଣୀ ।

ଆସ ଆସ ଗୋ କଲରେଇ ଫୁଲ,
ବେଦୀରେ ଯେ ବର ବୁଢ଼ା ହୋଇଲା
କଜଳପାତିରେ ଗୁଣ୍ଡ ପଡ଼ିଲା
ସିନ୍ଦୂର ଗୋଲାରେ ଧୂଳି ପଡ଼ିଲା
ହଳଦୀ କାଠୁଆ ଫିମ୍ପି ମାଇଲା
ବେଦୀ ତଳେ ପାଣି ଆଣୁଏ ହଇ
ନାହାକ ବାହ୍ମଣ ବସି ରହଇ ।'

କଲରେଇ—"ତୁମେ ଆଗେ ହୋଇଥିଲ ଝିଇ
ଏବେ ହେବ ଦେଢ଼ଶୁର ଯେ
ତୁମ ମୁହଁ ଯାହା ଚାହିଁବ
ଏ ପାଣିରେ ବୁଡ଼ି ମରିବ ।" (କଟକ, ପୁରୀ)

Digitized by srujanika@gmail.com

'ନାହାକ ବାମୁନ ବସି ରହିଲା
ଝିଣ୍ଟିପିଠା ପଚିଗଲା
ଆ କୁଞ୍ଜା ଘରକୁ ଆ' ।

କୁଞ୍ଜା—'ଭାଇ ହୋଇ କରି ଭାତାର (ଭର୍ତ୍ତା) ହବ
ତା କୁଞ୍ଜା କତ ସହିବ ?
ବାପ ହୋଇକରି ଶଶୁର ହବ
ତା କୁଞ୍ଜା କତ ସହିବ ?
ମା ହୋଇ କରି ଶାଶୁ ହବ
ତା କୁଞ୍ଜା କତ ସହିବ ?'
(କଣ୍ଠାଇ, ମେଦନୀପୁର)

ପିଲାଙ୍କୁ ଗେଲ କରିବା ଗୀତ ଓଡ଼ିଶା ଓ ମେଦନୀପୁରରେ ପ୍ରାୟ ଏକାପରି ।

'ମୋ କୁନକୁ କିଏ ମାଇଲା ମାଡ଼ ଲୋ
ଭାଙ୍ଗି ପକେଇଲା ପିଞ୍ଜରା ହାଡ଼
ନେଇ ମାମୁଁ ଘରେ ଛାଡ଼
ମାମୁଁ କହିଲେ ଏଇଟି କିଏ
ମାଇଁ କହିଲା ଭଣଜାଟିଏ
ଝାଡ଼ିଝୁଡ଼ି କରି ଘରକୁ ନିଅ
ଦୁଧଭାତ କରି ଗୁଣ୍ଡିଏ ଦିଅ
ଖଟ ପଲଙ୍କରେ ଶୁଆଇ ଦିଅ ।' (ପୁରୀ)

'ତାଇ ସର, ତାଇ ସର
ବାବୁ ଯିବ ତାର ମାମୁଁ ଘର
ମା ବଲିବେ ଏଟି କେ ?
ମାମୁଁ ବଲିବେ ଭନଜାଟିଏ
ଧୂଳିପୁଛି କରି ଘରକୁ ନିଅ
ଖଟପଲଙ୍କରେ ଶୁଆଇ ଦିଅ
ଦୁଧ ଭାତ କରି ଥାଳିଏ ଦିଅ ।'
(କଣ୍ଠାଇ, ମେଦନୀପୁର)

Digitized by srujanika@gmail.com

ଓଡ଼ିଶାର ବହୁ ସ୍ଥଳର ବାଛୁବା ଗୀତ ପରି ମେଦିନୀପୁରରେ 'ଇକଡ଼ିମିକଡ଼ି' ଗୀତ ପ୍ରଚଳିତ ।

'ଇକଡ଼ିମିକଡ଼ି ଦାଁତ କଡ଼କଡ଼ି
କଇମି କାଁ କୋଡ଼ ନବେଇ ବାଁ କୋଡ଼
ଅସ୍ତ (ଓସ୍ତ) ଗାଛ ବଡ଼ ଗାଛ
ତାଁହେ ଆଛେ ଜଗନ୍ନାଥ
ଜଗନ୍ନାଥେର ଦାଁଡ଼ି
ସୁବୁ ସୁଉଲ କାଁଡ଼ି
କାଁଉଡେ କାଁଉଡେ ହେଲ ହାତ
ଉଠ ବୁଢ଼ା ଜଗନ୍ନାଥ ।'

ଓଡ଼ିଶାର 'ଗୁଗୁପାଣ୍ଡି ଦାଣ୍ଡିପାଣ୍ଡି' (ପାଦ ଓ ଆଣ୍ଠୁ ଉପରେ ପିଲାକୁ ଶୁଆଇ ଝେଙ୍କ ଗୀତ ବୋଲିବା) ଗୀତ ପରି ମେଦିନୀପୁରର—

'ଗୋଗୋ ପାଁଚ, ଦଇ ପାଁଚ
ମେଉ ମାରି ସର୍ଗେ ଯାଯ୍
ନଟିଆ ବୁଢା କାଇଁ ରଖମି
ସୁବରନେଖା (ସୁବର୍ଣ୍ଣରେଖା)ର ତଳେ ।'

ଓଡ଼ିଶାର ବହୁ କାନ୍ଦଣା ଗୀତ ପରି ମେଦିନୀପୁରର—

'ବନର କୁକୁର ଛ'ମାସେ ରେବେ ଏ ନାନା
ମତେ ଘୂରାଇତେ ବରଷେ ନାଗେ ,,
ଝିରଝିରି ପାନି ପଥର କାଟେ ,,
ଘରଘର କଥା କଲେଜା କାଟେ ,,
ଆଡ଼ିଆ ଉପରେ ଲାଲ୍ ମାଚିସି ,,
ଆଉ କି ଦେଖିବା ମାଉସୀ ପିସି ? ,,
ଦେପାଲ୍ (କାନ୍ଥିର ଗୋଟିଏ ଗ୍ରାମ) ହାଟର ମହତା ପାନ—
ଏ ନାନା
ଆଉ କି ଦେଖିବା ଜନମ ଥାନ ?'

ଓଡ଼ିଶାର ପାଲି ପରି ଉତ୍ତର-ବାଲେଶ୍ୱର ଓ କାନ୍ଥି ଅଞ୍ଚଳରେ 'ଷଷ୍ଠୀ-ମଙ୍ଗଳ' ପ୍ରଚଳିତ ! ଓଡ଼ିଶାର ଘରେ ଘରେ ଷଠୀଘର ଅଛି, ଷଠୀଓଷାରେ ଷଠୀ

Digitized by srujanika@gmail.com

ପୂଜା ହୁଏ ; କିନ୍ତୁ ମେଦିନୀପୁରରେ ଷଠୀ ପାଲର ସତ୍ୟନାରାୟଣ ବା ସତ୍ୟପୀରଙ୍କ ସ୍ଥାନ ପୂରଣ କରିଛନ୍ତି । ସେ ବନ୍ଧ୍ୟାକୁ ସନ୍ତାନବତୀ କରନ୍ତି; ଜନ୍ମଦିନ, ଜନ୍ମମାସ, ନରତା (ଏକୋଇଶା), ଅନ୍ନଛୁଆଁ, ଖଡ଼ିଛୁଆଁ ଦିନ ଷଠୀମଙ୍ଗଳ କରାଯାଇଥାଏ ।

ଷଠୀ ବ୍ରହ୍ମାଙ୍କ କନ୍ୟା ; ଗଣେଶଙ୍କ ଲାଗି ତାଙ୍କୁ ବ୍ରହ୍ମା ସୃଷ୍ଟି କରିଥିଲେ । କିନ୍ତୁ ଗଣେଶ ବିଭା ହେଲେନାହିଁ । କୁମାରୀ ଷଠୀ ନରନାରୀଙ୍କ ସନ୍ତାନ କାମନା ପୂର୍ଣ୍ଣ କରି ଗ୍ରାମେ ଗ୍ରାମେ ପୂଜିତା ହେଲେ ।

ଷଠୀଘର ସାମ୍ନାରେ ମଙ୍ଗଳ ହାଣ୍ଡି, ମଙ୍ଗଳଘଟ, ହାଣ୍ଡିରେ ପାଞ୍ଚପାଆ ଚାଉଳ, ପାଞ୍ଚଖଣ୍ଡ ହଳଦୀ, ପାଞ୍ଚକଡ଼ା କଉଡ଼ି, ଗୋଟିଏ ଗୁଆ, ହାଣ୍ଡି ଉପରେ ଆମ୍ବଡାଳ । ସିନ୍ଦୂରଲଗା ସେଇ ହାଣ୍ଡି ଷଠୀଙ୍କ ପ୍ରତୀକ, ତାଙ୍କୁ ବନ୍ଦାପନା କରାଯାଏ । ତା'ପରେ ବୈଠକୀପାଲର ଗାୟକ ପରି ସେ ଗାଏ—

'ଆମି ଅତି ଶିଶୁମତି କି ବନ୍ଦିତେ ଜାନି ଗୋ
ଯେମନ୍ତ କବିତା ମୋର ତେମନ୍ତ ବାଖାନି ଗୋ
ଶୂନ୍ୟେ ଉଡ଼ୁଥାଏ ପାରା ଭକ୍ଷୁଥାଏ ଗୁଡ଼ ଗୋ
ଗୀତକୁ କବିତା ମୋର କଣ୍ଠେ ଲଗୁ ଯୁଡ଼ ଗୋ ।
ଯାହାର ଜନ୍ୟ ବସିଅଛି ଶୁଭେନି ମଙ୍ଗଲ ଗୋ
ତାହାର ଶରୀର ମାଗୋ ରଖିବ କୁଶଲ ଗୋ ।
ମାଆ ବୋଲି ଡାକଲେ 'ଓ' ବୋଲି ଶୁନିବୁ
ଭାଙ୍ଗିଲି କବିତା ମୋର ଉଗାଇଣ (ସ୍ମରଣ କରାଇ) ଦେବୁ ।
ବେନି ଦୁଆରୀ (ପାଳିଆ)ର କଣ୍ଠେ ବେନି ପାଦ ଦେଇ
ମୋର କଣ୍ଠେ ଥାଅ ମାଗୋ ପୁଷ୍ପହାର ହୋଇ ।'

(କଣ୍ଟାଇ, ମେଦିନୀପୁର)

ତା'ପରେ 'ଶୁନ୍ଦସୌଦାଗର' 'ଗୁଣଦେବ', 'ନଳମାଳ', 'ରଘୁ ଚୂଡ଼ାମଣି', 'ପଦ୍ମନ କୁମର' ପ୍ରଭୃତି ଷଠୀମଙ୍ଗଳ ମଧ୍ୟରୁ କୌଣସି ଗୋଟିଏ ଗାଥା ଗୀତ ବୋଲିହୁଏ । ଜଣେ ପଖଉଜ ବଜାଏ, ଜଣେ ନାଚେ । ଗାୟକ ଓ ପାଳିଆମାନେ ଗୀତ ବୋଲିଥାନ୍ତି ।

ଓଡ଼ିଶାର 'ଆ ଜହ୍ନମାମୁଁ ଶରଦଶଶୀ' ପରି ମେଦିନୀପୁରରେ ପ୍ରଚଳିତ ଅଛି—

'ଆ ଜହ୍ନମାମୁଁ ନଡ଼ି
ହାତୀର ଉପରେ ଚଢ଼ି

Digitized by srujanika@gmail.com

ଦୁଧ ଖର ମର ଅନେକ ଦନା
ସନ୍ତୋଷ କର ଘରକୁ ନବା ।'

ବିରାଡ଼ି, କୁକୁର ଦୁଇଟିଯାକ ଗୃହସ୍ଥର ପୋଷା । ବିରାଡ଼ି ଘରର ସବୁଆଡ଼େ ଚଳବିଚଳ ହୁଏ, କୁକୁରର ସେ ସ୍ୱାଧୀନତା ନାହିଁ । ବିରାଡ଼ି ଦୁଧ ଦହି ହାଣ୍ଡି ଗଡ଼ାଏ, ବିରକ୍ତ କରେ । ଗୃହସ୍ଥ ତାକୁ ଦୂର ଦୂରାନ୍ତର ଅପନ୍ତରା ଅଞ୍ଚଳରେ ନେଇ ଛାଡ଼ି-ଦେଇଆସେ । ବିରାଡ଼ିକୁ ଏଇ ଅବସ୍ଥାରେ ନେବାବେଳେ କୁକୁର ସହିତ ତା'ର ସଂଲାପ ହୋଇଅଛି—

ବିରାଡ଼ି—ଛୁଟଚାଟ୍ଟନ୍ ଦୂରଣ୍ଣନ୍ ଝାଡ଼ଝେନ ଗୋ
ଆମି ଯେନ ବସିଅଛୁ ପୁରୀ ବାହ୍ମଣେର ମାଥା ।

କୁକୁର—ସେଦିନ ଗୋ କହୁଥିଲୁ ବଡ଼ ବଡ଼ କଥା
ବେକଣା (ପାଳଦଉଡ଼ି) ଯୋଡ଼ାସ୍ତ ତୋତେ
ବାନ୍ଧିନେଇ ଯାଏ କୋଥା ?

ବିରାଡ଼ି—ଘର କଲି ଦୁଆର କଲି ତୀର୍ଥେ କଲି ସ୍ନାନ
ନାଉସବୁ ନେଇ ଯାଉଛନ୍ ଶ୍ରୀ ବୃନ୍ଦାବନ !
(କଣ୍ଟାଇରୁ ସଂଗୃହୀତ)

ଏହା ଏକ ହାସ୍ୟରସାତ୍ମକ ସଂଲାପ ।

ଅନ୍ୟାନ୍ୟ ବିଚ୍ଛିନ୍ନାଞ୍ଚଳ ମଧ୍ୟରେ ମଞ୍ଜୁଷା (ମଣ୍ଡାଷା)ରୁ କେତେକ ଗୀତ ସଂଗ୍ରହ କରିଛୁ । ତଳେ କେତୋଟି ହଳିଆ ଗୀତର ଦୃଷ୍ଟାନ୍ତ ଦିଆଗଲା ।

କାଳିଆ କାହ୍ନୁଆ ସଖୀରେ ମୁଁ ବାହିଁଥିଲି ହଳ
ଲାଗିଲା କଷ ଗଛ ମୂଳରେ ଲଙ୍ଗଳ
ଧୀରେ ଧୀରେ ଚାଲ ହୋ କାଳିଆ କାହ୍ନୁଆ
ହାଳିଆ ଭୁକବେଳ ।
ହାଣିଦେଲି ବାଉଁଶରେ ଗୁଞ୍ଜିଦେଲି କଣି
ଭଗା ମାଠିଆକୁ ସଖୀରେ ଧରିବନ୍ଧ ପାଣି
ଧରମ ରଖ ମାଠିଆ ପରଘର ଭୁଆସୁଣୀରେ ।
କାଳୀ ଗୋରୀ ସଖୀ ଦହେଁ ଗାଧୋଇ ଗଲେ
କାଳୀ ପଚାରଇ ଗୋଶ୍ରୀ ଲୋ ତୋ' ମୁଣ୍ଡରେ କେତେ ବାଳ ?

Digitized by srujanika@gmail.com

ଏଘର ଛୁଇଁଲି ସେ ଘର ଛୁଇଁଲି ରଜାଙ୍କ ନଅର
ଭଗବନ୍ତାଠୁ ଦଅର ଆସିଲେ
ନେନେ ଦମୁଠା ଚଅଁର ହୋ ।

ଲଉ ଲଗାଇଲି ସଖୀରେ ମନ୍ଦା ମୂଳେ ବସି
ଅତ ଅଲଜୁକ ଲଉରେ ଟେଣ୍ଡିକେ ଫୁଲ କସି
ଲଙ୍କାଙ୍କି ଖିଆ ହୋ ଦଅର
ମୋ ସ୍ୱାମୀ ପରବାସୀ ।

ଦାଣ୍ଡକୁ ସୁନ୍ଦର ସଖୀରେ ନଡ଼ିଆ ଗଛ ଗୁଇ
ବିଲକୁ ସୁନ୍ଦର ସଖୀରେ ଗଉଡ଼ଗୋଠ ଗାଈ
ଘରକୁ ସୁନ୍ଦର ସଖୀରେ ଝାମ୍ପୁରମୁଣ୍ଡୀ ମାଈ ।
ଗାଁ ଗୃରପାଖେ ଗୃକୁଣ୍ଡାର ବଣ
କେମନ୍ତେ ଶୁଝିବ ସଖୀରେ ଏ କୁମୁଟୀର ଋଣ
ଶୁଝି ନ ପାରିଲେ ସଖୀରେ ନେବ ଗୃରଗୃଣ ।
ଦୂର ପର୍ବତେ ଭାଇରେ ଲାଗିଅଛି ନିଆଁ
ନିଆଁ ଦେଖି ଦେଖି ଭାଇ ହୋ ନ ହୁଅ ଗୁନିଆଁ
ଧାଇଁ ଧାଇଁ ଆସୁଛି ଭାଇରେ କାହାର କନିଆଁ ?
ଧୀରେ ଧୀରେ ଟାଳ ଶଗଡ଼ ମୋ ହଳିଆ ଭାଇ
ଦେଖୁଥିବୁ ଆଗେ ପଡ଼ିବ ବଡ଼ ନଈ
ସେ ନଈ ପାଖେ ଭାଇରେ କରିବୁ ଜୁହାର
ବାରହ୍ମ ଠାକୁରାଣୀ ସେ ଦେବେ ଅଭୟ ବର ।
ଝଣ୍ଡି ଝଣ୍ଡିଆ ମେଘ ହୋଇ ଆସୁଅଛି ଘୋଟି
ଦୂରକୁ ଦେଖିଲେ ଯେ ଅନ୍ଧାର କଟି କଟି
ବିଜୁଳି ବାଜିଲେ ଭାଇ ରେ ଦିଶୁଅଛି ବାଟ
ବେଗେ ବେଗେ ଚଲା ଶଗଡ଼ରେ ପଡ଼ିବ ସଙ୍କଟ ।

ବଡ଼ ହଳଦିଆ ଭାଇରେ କନିଆର ଫୁଲ
ଧାନ ପାଚିଥିବା ବିଲ ଦିଶେ କି ଉଜଳ
ସେ ବିଲର ସାହୁକର୍ମ ଅଟେ କେଡ଼େ ଭଲ ।
ଭୁଲି ଦେଲି ଆମ୍ବକଷି ବୁଦ୍ଧିଗଲା ନସି
ଜପ କରୁଥିଲା ମୁନି ଦେଉଳରେ ବସି
ଦେଉଳ ଗୃରପାଖେ ଭାଇରେ ଫୁଟିଅଛି କିଆ
ସେଇ ଫୁଲ ଭୁଲୁଅଛି ଶ୍ରୀକୃଷ୍ଣ କନିଆଁ ।

Digitized by srujanika@gmail.com

ମନ୍ତ୍ର ଦ୍ୱାରୁ ସଗୁମ୍ଫିତ ଦୋଳି ଗୀତ କପର ଖାଣ୍ଟି ଓଡ଼ିଆ, ତାହା ଦେଖାଇବା ଲାଗି କେତୋଟି ଦୃଷ୍ଟାନ୍ତ ଦେଲି—

'ସଅକ ସକଆ ମଲ୍ଲୀ
ମଲ୍ଲୀ ଗଛ ମୂଳେ କାନ୍ଦବସିଲି
ଅସୁନ୍ଦର ବର ବୋଲି ।
ମାଠିଆ ନବ-ଗୁଞ୍ଜର
ତତେ ଆଣିବାର ଦିନ ପନ୍ଦର
ମାଗୁଛୁ ଗୁଡ଼ପତର ।
ନଈରେ କେଞ୍ଚୁଆ ଗାତ
ବଡ଼ ବୋଉ ଦେଲା ପଖାଳ ଭାତ
ଧରଦେଲା ସନ୍ନିପାତ ।
ଢନୁଲି ପତର ଖଲି
ଖଲିକୋଟ ରାଜ୍ୟରେ କଣଆଁ କଲି
ବାଟ ଚାଲି ଚାଲି ମଲି ।
ଚାଲେ ଚାଲେ ଗଲା ମୂଷା
ରଣ୍ଡର ମୂଷାର କେଡ଼େ ଭରସା
ଖଟ୍ରା ତଳେ କଲା ବସା ।
ନଈନାଲି ଉଲସିଲା
ବାପର ଗୁଡ଼ରେ ପୁଅ ବସିଲା
ସୁନା ଖଡ଼ୁ ମନାସିଲା ।
ପାକଲା ବାଉଁଶ ବାଡ଼ି
ରାମଚନ୍ଦ୍ର ଗଲେ ରାଇଜ ଛାଡ଼ି
ସୁବର୍ଣ୍ଣ କଠଉ ମାଡ଼ି ।
ମଉଁଷି ଗଲେ ମାଲକୁ
କାକର ପଡ଼ିବ ପେଣ୍ଡାବାଲକୁ ଯେ
ବାହୁଡ଼ିଥିବ ଘରକୁ ।
ନଈ ତଡ଼େ କଆ କେନ୍ଦୁ
ଆଷାଢ଼ ମାସରେ କୁଣିଆ ବାନ୍ଧୁ
ବେକ ଧରି କରି କାନ୍ଦୁ ।
ବାଘକୁ ମାରିଲି କାଣ୍ଡେ
କାଣ୍ଡ ଗଲା ବଡ଼ଦାଣ୍ଡେ

Digitized by srujanika@gmail.com

ସେଇ କାଣ୍ଡ ମୁନ ସବୁ
ବାବାଜି ପିନ୍ଧିଚ ଗେରୁଆ ଲୁଗା
ମାଛ ଗଲ ଧରୁ ଧରୁ ।
ଉସୁନା ଧାନ କୁଟିଲି
ଜାଣି ନ ଥିଲି ମୁଁ କପଟ କଲି
ହାତ ଧରି ହଟା ହେଲି
କାବଡା ଖାଇଲି ଗୁଡ଼
ଧିରି ଦେଶେ ଦେଇ ପାସୋରଗଲା
ମରୁଅଛୁ ମୁଣ୍ଡ କୁଡ଼ ।

ଆନ୍ଧ୍ର ପ୍ରଦେଶରେ ନାନା ସାଂସ୍କୃତିକ ଆଲୋଡ଼ନ ମଧ୍ୟରେ ବିଚ୍ଛିନ୍ନ ଅଞ୍ଚଳ ନିଜର ପାରମ୍ପରିକ ଓଡ଼ିଆ ସତ୍ତା ଅକ୍ଷୁର୍ଣ୍ଣ ରଖିଅଛି ।

## ଚଇତପର୍ବ ଗୀତ

ବସ୍ତରର 'ହାଲ୍‌ବୀ' ମରହଟ୍ଟୀ, ଛତିଶଗଡ଼ୀ ଓ ଓଡ଼ିଆମିଶା ଏକ ଭାଷା । ହାଲ୍‌ବୀରେ ବହୁ ଚଇତ ପର୍ବ ଗୀତ ବୋଲାଯାଏ, ବୋଧହୁଏ କୋରାପୁଟରୁ କ୍ରମେ ବସ୍ତରରେ ଏହା ପ୍ରସାରିତ ହୋଇଛି । 'ବସ୍ତର'ରୁ ଭତ୍ରି ଅପଭ୍ରଂଶ ହୋଇପାରେ । ବସ୍ତରର ଭତ୍ରମାନେ ଓଡ଼ିଆ କହିଥାନ୍ତି । 'ଭତ୍ରୀ' ଏକ ଓଡ଼ିଆ ଉପଭାଷା । ଭତ୍ରମାନେ ଚଇତପର୍ବ ଗୀତ ଗାଇଥାନ୍ତି । 'ଦନ୍ତେଶ୍ୱରୀ' ଠାକୁରାଣୀ ବସ୍ତର ରାଜାଙ୍କର ଇଷ୍ଟଦେବୀ, ସେ ଭତ୍ରମାନଙ୍କର ସରସ୍ୱତୀ । କଣ୍ଠରେ ବିଜେ ହୋଇ ପଦ ସୁମରଣା କରାଇଦେବା ପାଇଁ ସେମାନେ ତାଙ୍କୁ ପ୍ରାର୍ଥନା କରିଥାନ୍ତି ।

ବସ୍ତରରେ ବିବାହ ଭୋଜି ଓ ଅନ୍ୟ ସାମାଜିକ ଅନୁଷ୍ଠାନମାନଙ୍କରେ ଚୈତ୍ର ପର୍ବ ଗୀତ ବୋଲା ହୋଇଥାଏ । ଗୀତ ପ୍ରତିଯୋଗିତାରେ ପରାଜିତ ଯୁବକ ବିଜେତୀ ଯୁବତୀକୁ ଗୋଟିଏ ମୁଦି ଉପହାର ଦିଏ । ଯେଉଁ ଉତ୍ସବରେ ଏହି ଉପହାର ଦିଆଯାଏ, ତାକୁ 'ମୁଣ୍ଡିମାଙ୍ଗାତୋ' କହନ୍ତି ।

ଚୈତ୍ରପର୍ବ ଗୀତରେ ପ୍ରେମର ଜୁଆର ବୋହୁଛି । ଏହା ଚିରନ୍ତନ; ଚିରନ୍ତନ ଭାବ ଏଥିରେ ପ୍ରକାଶିତ । ତଳେ କେତୋଟି ପଦ ଉଦ୍ଧୃତ ହେଲା—

"କୋକିଲ ରାବିଲା
ବସନ୍ତ ବହିଲା, ଆମ୍ବଗଛ ବଉଳିଲା

Digitized by srujanika@gmail.com

ଖରର ଶୀରଢ
ଅଢ଼େଇ ଦଳଆ ଅଲପଟକ ମଉଳଲ ।”

“କପଟ ବଚନ
ପିଢା ଉଅଣ ପାସୋର ନ ଯାଏ ମନୁ,
ରହ୍ଣ ରହ୍ଣକଣ
ହେତୁ ପଡ଼ିଲେ ଘାଣ ହେଉଥାଇ ତନୁ ।”

“ତମେ ଆମେ ବନ୍ଧୁ
ଗୋଟେ ଘରେ ଥିଲେ ନ ଲଗେ ବରଷା ଶୀତ ।”
“କେତେ ସରକାରେ ଡ଼ାକଲ ବନ୍ଧୁ
ମୋ’ ବାଟେ ଗୁଣ୍ଡିଲୁ ନାହିଁ
ଦେବତା ହୋଇଲେ ଦଅନ୍ତା ବର
କାଠର ଜୀବନ ଡୋର ।’’

ଆକାରବୃଦ୍ଧି ଭୟରେ ଏ ସଙ୍କଳନରୁ ଚଇତପର୍ବ ଗୀତସବୁ ବାଦ୍ ଦେବା’କୁ ବାଧ୍ୟ ହେଲି ।

## ଗାଥାଗୀତିକା

ଏହି ସଞ୍ଚୟନରେ କେତେକ ନୂତନ ଗାଥାଗୀତିକା ଓ ପ୍ରଥମ ଦୁଇ ଭାଗରେ ପ୍ରକାଶିତ କେତେକ ଗାଥାଗୀତିକାର ରୂପାନ୍ତର ସଙ୍କଳିତ ହୋଇଅଛି । ପ୍ରଥମ ଗୀତିକାଟି ସାମାଜିକ । ‘ଲଉ’ ସ୍ତ୍ରୀ କଥାରେ ପଡ଼ି ମାଆଠାରୁ ଭିନେ ହୋଇଛି, ଯାଇ ଶଶୁର ଘରେ ପଶିଛି । କଥା ଅଛି—‘ଏକ କୁଗ୍ରା ଶଶୁର ଘରେ ଜୋଇଁ ।’ ଶଶୁର ଘରେ ସ୍ତ୍ରୀଠାରୁ ଅପମାନ ପାଇ ପୁଣି ଘରକୁ ପଳାଇଆସିଛି, ମାଆ ଓ ଗ୍ରାମବାସୀ ତାକୁ ଆଦରରେ ଗ୍ରହଣ କରିଛନ୍ତି । ଏହାର ସାରମର୍ମ—‘ସ୍ତ୍ରୀ ବୁଦ୍ଧି ପ୍ରଳୟଙ୍କରୀ ।’ ଭାଇ ଭିନେ ହେବାର ବ୍ୟଙ୍ଗାତ୍ମକ, କରୁଣ ଚିତ୍ର ଏଥିରେ ରୂପାୟିତ ହୋଇଅଛି ।

ଏହି ସଞ୍ଚୟନରେ ‘ବଉଲା’ ଓ ‘ସୁବାଣୀ’ ଗାଈର ଚରିତ ଗୋଟିଏ ଗୀତରେ ଗ୍ରଥିତ ହୋଇଅଛି । ପୂର୍ବପ୍ରକାଶିତ ଗୀତ ଅପେକ୍ଷା ଏହା ବୃହତ୍ତର ଓ ଭିନ୍ନତର । ବଉଲାର ପଶୁ ଅଧିକ ମାନବିକ ଓ ସୁବାଣୀର ମାନବ ଅଧିକ ପାଶବିକ ହୋଇଅଛି । ତ୍ୟାଗ, ସତ୍ୟ ପାଳନ, ଅନ୍ନଦାନ ମହାପୁଣ୍ୟ ବୋଲି ଏଥିରେ ପ୍ରତିପାଦିତ ହୋଇଅଛି ।

Digitized by srujanika@gmail.com

ଭୃଗୁରାମଙ୍କ 'ଭ୍ରମରବର' ପାଲା ଅନୁକରଣରେ 'ରଙ୍ଗବନ୍ତୀ' ଗାଥା ରଚିତ । 'ଗୋବିନ୍ଦ ଚନ୍ଦ୍ର'ର କେତେକ ରୂପାନ୍ତର ଏଥିରେ ସଂକଳିତ । ଏହି ଗାଥା ଉପରେ ଭିନ୍ନ ଭିନ୍ନ ରୂପେ ଉତ୍କଳୀୟ ହୃଦୟକୁ ସ୍ପର୍ଶ କରିଛି, ତୁଳନାତ୍ମକ ଭାବେ ଉପଭୋଗ୍ୟ । ଗୋଟିଏ ଗୀତକାରେ ରାଜାଙ୍କ ନାମ ନାଉଚନ୍ଦ୍ର, ରାଣୀଙ୍କ ନାମ ମଉନାସୁନ୍ଦରୀ, ସେମାନଙ୍କ କନ୍ୟା ମୁକ୍ତା ଦେଈ ଗୋବିନ୍ଦ ଚନ୍ଦ୍ରଙ୍କ ମାତା । ଗୋବିନ୍ଦଙ୍କ ପିତାଙ୍କ ନାମ ମଣିକ ଚନ୍ଦ୍ର । ହାଡ଼ିପାଙ୍କ ମହିମାରେ ନାରିକେଳ ବୃକ୍ଷ ତଳକୁ ନଇଁଆସିଛି, ଅଙ୍ଗୁଠି ପୁଅ ପଇଡ଼ ତୋଳି ଖାଇଛି ।

ଲୋକ ଜୀବନର ବାସ୍ତବ ଚିତ୍ର ଏଥିରେ ସ୍ପଷ୍ଟଭାବେ ପ୍ରତିଫଳିତ । ତଳେ ଗୋଟିଏ ଅପୂର୍ଣ୍ଣ ଗୀତର ଦୃଷ୍ଟାନ୍ତ ଦେଲି—

''ବନ ଯେ ବନସ୍ତ ପୋଡ଼ିଗଲେ ତାହା ଜଗତଜନେ ଜାଣନ୍ତି
ମାତା କ୍ଷୀରବନ୍ତୀ ହୃଦସ୍ତ ପୋଡ଼ିଲେ ତାହା କେହି ନ ଜାଣନ୍ତି ।
ମାତାର ହୃଦସ୍ତ ପୋଡ଼ିଗଲେ ଜାଣ କୁମ୍ଭାର ଉହା ପୋଡ଼ାଏ
ନ ଦେଇ ନ ଖାଇ ଧନଟି ଛନ୍ଦିଛୁ ମହୁମାଛିର ପରାଏ ।
ଯାହା ଦେଇଥିବୁ, ଯାହା ଖାଇଥିବୁ, ଯାହା ପନ୍ଧିଥିବୁ ନେଇ
ଡାହାଣ ହାତରେ ଯେ ଧର୍ମ କରିବୁ ପଥକୁ ସଖାଳି ସେଇ ।
ଛତିଶଲର ଧନ ଖଣ୍ଡ ଖାଇଯିବେ ତୋହ ମୁଖେ ଅଗ୍ନି ଦେଇ
ମଣଲର ଧନ ଗୋବିନ୍ଦଚନ୍ଦ୍ରରେ ପଥକୁ କି ନେବୁ ବୋହି ।
ଆସିଲାର ବେଳେ ଏକା ଆସିଚୁ ରେ ଗଲାବେଳେ ଯିବୁ ଏକା
ନବା ଆଣିବାକୁ ତୋହ ସଙ୍ଗେ ନାହିଁ ତୋର ହରିନାମ ସଖା ।
ମଲା ଗଲା ବେଳେ ବେଢ଼ିରେ କାନ୍ଦିବେ ଜଣେ ନ ଯିବେ ସଙ୍ଗର
ଅନେଶ୍ୱର ମହାଦେଈ ବେଢ଼ିରେ କାନ୍ଦିବେ ଦୁଆରେ ଦେବେ ଗୋବର ।
ମରିଗଲା ଧନ ତୋର ବାପଧନ କି ନେଲା ସଂସାରୁ ବୋହି ?
ଦଢ଼ ଦଢ଼ ବସ୍ତ୍ର ନ ଦେଲେ ରଜାଙ୍କୁ ପୋଡ଼ିଜାଲି ଯିବା ପାଇଁ ।
କାଠ ଛ'ଖଣ୍ଡ ଧଉଡ଼ ନ' ଖଣ୍ଡ ସଙ୍ଗତରେ ଦେବେ ନେଇ
ଗ୍ରାମର ବାହାରେ ମଶାଣି ଭୂଇଁରେ ନେଇ ରେ ଦେବେ ପକାଇ
ଶୋଇବାର ଖଟ ପିନ୍ଧିବାର ପାଟ ତା' ନେଲେ ଧୋବା ଛଡ଼ାଇ,
ଧଣ ଯାଇ ଧନ ଏଗାର ହୋଇଲେ ପାସୋରିବେ ଘିଅ ଖାଇ
ମୋହ ବୋଲ କର ଗୋବିନ୍ଦଚନ୍ଦ୍ରରେ କାଲି ଯାଅ ଯୋଗୀ ହୋଇ ।''

Digitized by srujanika@gmail.com

'ଖ୍ୁଲଣାସୁନ୍ଦରୀ'ରେ ଅପୁତ୍ରକର ଦୁଃଖ ବର୍ଣ୍ଣିତ । ରାଜା ଧନେଶ୍ୱର, ରାଣୀ ନୟନାସୁନ୍ଦରୀଙ୍କର ସନ୍ତାନ ହେଉନାହିଁ । ଧନେଶ୍ୱର ରାଜା ବିଦ୍ୟାଧରଙ୍କ ସଙ୍ଗେ ଚଉପାର ଖେଳ ଖ୍ୁଲଣାକୁ ଜିଣି ବିଭା ହେଲେ । ଆସ୍ତୁ କୁଡ଼ା ହୋଇଥିବାରୁ ପ୍ରଜାମାନେ ତାଙ୍କ ମୁହଁ ଚାହିଁଲେ ନାହିଁ । ଖ୍ୁଲଣା ଗର୍ଭବତୀ ଥିବା ସମୟରେ ରାଜା ଅନ୍ୟ ରାଜ୍ୟକୁ ପଳାଇ ଯାଇ ମୁଖ ଲୁଚାଇଲେ । ସେ ଜଗନ୍ନାଥଙ୍କ ଭକ୍ତ, ମଙ୍ଗଳା ଠାକୁରାଣୀଙ୍କୁ ନ ମାନିବାରୁ ସେ ବହୁତ ଅନିଷ୍ଟ ସାଧନ କରିଥିଲେ । ଧନେଶ୍ୱର ବନ୍ଦୀଶାଳାରୁ କାକଦୂତଦ୍ୱାରା ନୟନାରାଣୀଙ୍କ ନିକଟକୁ ଚିଠାଉ ପଠାଉଥିଲେ, ପତିଙ୍କ ବାର୍ତ୍ତା ଆଣିଛି ବୋଲି ରାଣୀ କୁଆ ଲାଗି ତିନ ଠାଆ ରାନ୍ଧିଲା ବାଢ଼ୁଥିଲେ ।

## ଡଗ ମହାଭାରତ

ସମ୍ବଲପୁରରେ 'ଡଗ ରାମାୟଣ' ପରି 'ଡଗ ମହାଭାରତ' ଲୋକପ୍ରିୟ । 'ପଲ୍ଲୀଗୀତ ସଞ୍ଚୟନ', ଦ୍ୱିତୀୟ ଭାଗରେ ଡଗ ରାମାୟଣ ସଙ୍କଳିତ ହୋଇଥିଲା । ଉଭୟ ଚିନ୍ତାଧାରାରେ ଓ ପ୍ରକାଶଭଙ୍ଗୀରେ ଗ୍ରାମୀଣ ଓ ବିଶେଷ ମୌଳିକ ବୋଧହୁଏ । ଚରିତ୍ର ଚିତ୍ରଣରେ ଲୋକକବି ଗତାନୁଗତିକ ପନ୍ଥା ଅନୁସରଣ କରିନାହିଁ । ବିରାଟ ରାଜ୍ୟରେ ପଞ୍ଚପାଣ୍ଡବଙ୍କ ଅଜ୍ଞାତବାସ, ଶମୀବୃକ୍ଷରେ ଅସ୍ତ୍ରଶସ୍ତ୍ର ଗୋପନ ପ୍ରଭୃତି ଏଥିରେ ବର୍ଣ୍ଣିତ । ସମସ୍ତ ଡଗ ମହାଭାରତ ସଂଗ୍ରହ ଏକାନ୍ତ କାମ୍ୟ । ଅନୁବାଦିତ ହେଲେ ଏ ଦୁଇ ପୁରାଣ ଭିତ୍ତିକ ଗୀତ ସାରା ଜଗତର ସଂସ୍କୃତି କ୍ଷେତ୍ରରେ ଚମକ ଆଣିବ । ତଳେ କେତୋଟି ପଦ ଉଦ୍ଧୃତ ହେଲା ।

"ଏତେ ବଲି ପାଞ୍ଚଭାଇଯାକ ବିରାଟ ପଥେ ଚଲ୍‌ଲେ
ଆଗେ ରାମ ପଛେ ଲକ୍ଷ୍ମଣ ସୀତା ବାଗିର୍ ଦିଶ୍‌ଲେ ।
ସେମାନେ ଥିଲେ ତୁଇଟା ଭାଇ ଏମାନେ ହେଲେ ପାଞ୍ଚଟା
ଦୁହିଙ୍କର ସଙ୍ଗେ ମାଏଝୀ ଗୁଟେ ଆଉସବୁ ଏକାଟା ।"

× × ×

"କୁନ୍ତୀ ଭୋଜପଣ୍ଡା ହଇ ମୁଇଁ ଆସଲି ସିନି
ନାଅଏ ଧୃପ ଜାପ କତାପ ମୁଇଁ ସବୁ କର୍‌ମି ।
ଭୀମ ବଏଲା ରନ୍ଧନିଆ କାମେ ତୁମର ପଛେ ଥିମି
ରନ୍ଧନିଆ କାମ୍‌ଟା ପାଇଗଲେ ଭଲ କରି ଖାଇମି ।
ଅର୍ଜୁନ ବଏଲା ନାଟ ଶିଖାଲେ ପେଟଟା ମୋର ପୂରବାନି
ନକୁଲ ବଏଲା ଘଡ଼ା ପାଲ୍‌ଲେ ମୋର କଥା ବନବାନି ।

Digitized by srujanika@gmail.com

ସହଦେବ ବଏଲା ଗାଏ ଚରାଇ ଝାରଜଙ୍ଗଲେ ବୁଲମି
ଦ୍ରୁପଦୀ ବଏଲା ସଭେ ଯାଏଲେ ମୁଇଁ କେନ୍ତା କର୍‌ମି ।
ଭୀମ ବଏଲା ଆରେ ସହଦେବ କେନ୍‌ତା କଥା କହେସୁ
ପାଞ୍ଚ ଭାଇ ବରାଟ ଗଲେ ତାକେ କେନ୍‌କେ ରଖ୍‌ସୁ ।
ଦ୍ରୁପଦୀ ବଏଲା ମୋର ଲଗି ଯଦ ଏତକ ଚନ୍ତା କରତ
ରଜାର ପୁଅ ହଇକରି କାଏଁ ଝାରେ ଜଙ୍ଗଲେ ବୁଲତ ।" .

'ମରଗ୍ରି' କୋରାପୁଟ ଜିଲାର ଗୋଟିଏ ରୋମାଞ୍ଚକର ଗାଥାଗୀତିକା । କୁମ୍ଭାର କୁମ୍ଭାରୁଣୀକୁ କହିଲା—ଅଣ୍ଡିରା ପିଲାଟେ ହେଲେ ଧରି ଆସିବୁ, ମାଇ ପିଲା ହେଲେ ଗୁଡ଼ି ଆସିବୁ । କୁମ୍ଭାରୁଣୀର ଝିଅଟିଏ ହେଲା । ସେ ତାକୁ ଲଙ୍କାମରିଚ ଖେତରେ ଫୋପାଡ଼ି ଦେଇ ଆସିଲା । ରଜା ପାରିଧିକୁ ଯାଇ କୌଣସି ଜୀବଜନ୍ତୁ ଭେଟିଲେ ନାହିଁ, ମରଗ୍ରିକୁ ପାଇ ସଙ୍ଗରେ ନେଇଗଲେ । ରଜା ଉଆସରେ ସେ ବଢ଼ିଲା । ରଜାପୁଅ ଯୁବତୀ ମରଗ୍ରିକୁ ଦେଖି ବାହାହେବା ଲାଗି ଜିଦ୍‌ ଧରି ବସିଲା । ସେ ଯେତେ ବୁଝାଇଲେ କିଛି ଫଳ ହେଲା ନାହିଁ ।

ତେଣୁ ବାହାଘର ଲାଗି ଆମ୍ବର ଖୁଣ୍ଟ ବସି ପାନର ଗୁମୁଣ୍ଡିଆ ହେଲା । ସାତମଣ୍ଡଳା ପରେ ରାଜାପୁଅ ଜିରା ମେଥିର ବୋଇତ, ଲୁଣ ଲଙ୍କାର ବୋଇତ, ପାନଆଁ ଫରୁଆର ବୋଇତ ନେଇ ବଣିଜକୁ ଗଲା । ମରଗ୍ରି ବୋଇତ ବନ୍ଦାଇ ଗଲା ।

ରଜାପୁଅ ବୋଇତରେ ଯାଉଁ ଯାଉଁ ତରା ଦେଶରେ ପହଞ୍ଚିଲା । ତରା ଶୁଦ୍ଧସ୍ନାନ କରି ତନଧାର ପାଣି ଗୁଡ଼ିଛି—ଯେ ଏ ଧାର ଡେଇଁବ, ସେ ତାକୁ ବାହା ହେବ । ରାଜାପୁଅ ଡେଇଁଲା, ବାହା ହେଲା, କିନ୍ତୁ ମଧୁଶଯ୍ୟା ପରେ କହିଲା—ମରଗ୍ରି ତୋ'ଠୁଁ ସୁନ୍ଦରୀ । ତରା ମରଗ୍ରିକୁ ନେଇ ଆସିବା ଲାଗି ମାଳୁଣୀକି ପଠାଇଲା । ମାଳୁଣୀ ମରଗ୍ରିକୁ ବାଇ ଫରୁଆ, ବାଇ ପାନଆ ଦେଲା । ମରଗ୍ରି ତାକୁ ଧରିବାମାତ୍ରେ ବାଇଆଣୀ ହୋଇଗଲା । ମାଳୁଣୀ ଫରୁଆରେ ମରଗ୍ରିକୁ ନେଇ ବୋଇତରେ ତରାରାଜ୍ୟକୁ ଫେରିଆସିଲା । ମରଗ୍ରି ତରାର ଦାସୀ ହୋଇ ରହିଲା ।

ସେ ନଅରରେ ଛ'ଭୁଣ ନ'ଭଜା କଲା ; ରଜାପୁଅ ମଣୋହିରେ ବସି କହିଲା—ଏଥିରୁ ତ ତରାରନ୍ଧା ପରି ଲାଗୁଛି !

Digitized by srujanika@gmail.com

ତାପରେ ରଜାପୁଅ ବୋଇତ ଧେନ ନିଜ ରାଜ୍ୟକୁ ଫେରିଲା । ତପସ୍ବିକୁ ନ ଦେଖି ସେ ପାଗଳ ହୋଇଗଲା । ତପସ୍ଵୀ ମରସ୍ଵକୁ ରଜାପୁଅ ସଙ୍ଗେ ମିଳାଇ ଦେଲା । ସମସ୍ତେ ସୁଖରେ ରହିଲେ । ମାଳୁଣୀ ଖଣିଗାଡରେ ପୋତା ହେଲା ।

'ମରସ୍ଵ' ଗାଥାଟି ଗଦ୍ୟ କି ପଦ୍ୟରେ ଲେଖା ସହଜରେ ଜାଣି-ହୁଏ ନାହିଁ । ତେବେ ଏହା ପଦ୍ୟ ପରି ଆବୃତ୍ତି କରାଯାଏ—ଯେପରି ଶିଶୁ ସୁବନାଥୀ ବ୍ରତ ।

**କାନ୍ଦଣା**

ଗୋଟିଏ ଝିଅର ପରିବେଶ ଅନ୍ୟ ଝିଅର ପରିବେଶଠାରୁ ଭିନ୍ନତର ହୋଇପାରେ ; କିନ୍ତୁ ଗତାନୁଗତିକ ଗୀତରେ ଗୋଟିଏ ଝିଅ ଯାହା ଗାଇଥାଏ, ତା'ଠାରୁ ଅନ୍ୟ ଝିଅଟି ଶିଖି ସେଇଆ ଗାଏ । ହୁଏତ ପରବର୍ତ୍ତୀ ଝିଅର ସାମାଜିକ ସ୍ଥିତି, ସଙ୍ଗତି, ଶାଶୂ, ନଣନ୍ଦ, ଦେଢ଼ଶୁର ସ୍ଵାମୀଙ୍କର ଚରିତ୍ର, ଚଳଣି ଓ ବ୍ୟବହାର ପୃଥକ୍ ହୋଇପାରେ । ପୁରୁଣା ଅନୁଭୂତିରେ କିଛି ନୂଆ ଅନୁଭୂତିର ଯୋଗ ହୋଇପାରେ ; ପଦ ସଂଖ୍ୟା ବଢ଼ିପାରେ । କିନ୍ତୁ କାନ୍ଦଣାରେ ଚରିତ୍ର ସବୁ ଚରିତ୍ର ପ୍ରାପ୍ତ ଗତାନୁଗତିକ । ଶାଶୂ, ନଣନ୍ଦ ଅତ୍ୟାଚାରିଣୀ; ଶ୍ଵଶୁର, ଦେଢ଼ଶୁର ଉଦାସୀନ, ଗୃହରେ ସ୍ଵାମୀ କର୍ତ୍ତୃତ୍ୱହୀନ, ନିଜ ସ୍ତ୍ରୀକୁ ନିପୀଡ଼ନରୁ ରକ୍ଷା କରିବାକୁ ଅସମର୍ଥ । ଆର୍ଥିକ ଦୂରବସ୍ଥା, ପାରମ୍ପରିକ ସାମାଜିକ ପ୍ରଥା ଓ କୁସଂସ୍କାର ବୋହୂର ଯାବତୀୟ ଦୁଃଖ ଲାଗି ଦାୟୀ । ପ୍ରଚଳିତ ପ୍ରଥା ଓ କୁସଂସ୍କାରକୁ ସମସ୍ତେ ଯେପରି କି ମୁଣ୍ଡପାତି ମାନିନେଇଛନ୍ତି । ଏଥିରେ କାହାର ଭାବିବାର, କିଛି କହିବାର ନାହିଁ । ବୋହୂ ନିର୍ଦ୍ଦିଷ୍ଟ ବଗିରିକ ଆଗେ ନାଳିସ୍ କରିନାହିଁ । ସେ କାନ୍ଦୁ କାନ୍ଦୁ ଅଭିଯୋଗ ବାଢ଼ିଯାଇଛି ମାତ୍ର ; ଏ ରୋଦନ ଅରଣ୍ୟ ରୋଦନ ; କାହା କାନରେ ହିଁ ପଡ଼େ । ସମସ୍ତେ ଶୁଣନ୍ତି, ଲୁହ ଝରାନ୍ତି, ନିଷ୍କ୍ରିୟ ରହନ୍ତି । କାରଣ କାନ୍ଦିବା ଗୋଟାଏ ପ୍ରଥାଭାବେ ପ୍ରଚଳିତ । କୌଣସି ନିର୍ଦ୍ଦିଷ୍ଟ କାରଣ ନ ଥିଲେ ବି ସେ କାନ୍ଦେ, ନ କାନ୍ଦିଲେ ଲୋକେ ନିଲାଜୀ କହିବେ ବୋଲି ।

କାନ୍ଦୁଥିବା ସବୁ ଝିଅ କବି ନୁହନ୍ତି । ଯେ କବି ତା କବାଧରରୁ ଦୁଃଖ-ବେଦନାରେ କବିତା ବୋହିଯାଏ । ଅନ୍ୟମାନେ ମୁଖସ୍ଥ କରି ଆବୃତ୍ତି କରନ୍ତି ମାତ୍ର । ନିବିଡ଼ ଆବେଗ, ଅନୁଭୂତି, ବିପୁଳ ସମବେଦନା, ଶବ୍ଦପ୍ରୟୋଗ, ରସିକତାରୁ କବି କବି ମଧ୍ୟରେ ତାରତମ୍ୟ ବାରିହୁଏ । କବିଙ୍କ ଜାଣିବାର କିଛି ହେଲେ ବାଟ ନାହିଁ । ଏହା ଏକ ସମୂହରଚନା ଭାବରେ ଗୃହୀତ ।

ନାରୀର ପୁରାଣଜ୍ଞାନ କେଉଁଠି ସାମାଜିକ ରୂପକୁ ମଳିନ କରିନାହିଁ, ବରଂ ଉଜ୍ଜ୍ୱଳତର କରିଛି ।

Digitized by srujanika@gmail.com

ଶାଶୂଘରର ଇଲାକା କଂସ, ରାବଣ ବା ବାଣାସୁରର ଇଲାକା । "ହେ ବାପା, ହରିଶ୍ଚନ୍ଦ୍ରଙ୍କଠାରୁ ମାପ୍ଥାତପସ୍ୱୀ ରାଜ୍ୟଦାନ ନେଲା ପରି, ବଳିଠାରୁ ବାମନ ଧନପୁର ମାଗିନେଲା ପରି, ତୁମଠାରୁ ମୋତେ ମାଗି ନେଉଛନ୍ତି । ଅଶୋକ-ବନରୁ ରାକ୍ଷସୀ ମେଳରୁ ମତେ କିଏ ଫେରାଇ ଆଣି ପାରିବ ? ସତ୍ୟ, ତ୍ରେତୟା, ଦ୍ୱାପରର ଯେତେ ରାଜା ସମସ୍ତଙ୍କ ସଙ୍ଗେ ମିତ ବସିଥିଲି, ଏବେ କଂସେଇ ସଙ୍ଗେ ସଙ୍ଗାତ ବସିଲି । ରାମ ଯେପରି ରାବଣକୁ ମାରି ବିଭୀଷଣ ମୁଣ୍ଡରେ ଶାଢ଼ୀ ବାନ୍ଧିଥିଲେ, ତୁମେ ସେହିପରି ମତେ ମାରି ଶଶୁଙ୍କ ମୁଣ୍ଡରେ ଶାଢ଼ୀ ବାନ୍ଧିବ । କୃଷ୍ଣ ଯେପରି ହସ୍ତିନାରେ ବିଦୁର ଘରେ ଭୋଜନ କରିଥିଲେ, ତୁମେ ସେହିପରି ମୋ ପାଇଁ ଚଣ୍ଡାଳଘରେ ଖାଇଲ । ଉଗ୍ରସେନ ଯେପରି ପୁଅର ମୁହଁ ଦେଖି ଆନନ୍ଦିତ ହେଲେ, ତୁମେ ସେହିପରି ମୋ ମୁହଁ ଦେଖି ଆନନ୍ଦିତ ହେବ । କଂସ ଯେପରି ବଜ୍ରକୁଳ-କନ୍ୟାକୁ ଦେବକୀ କୋଳରୁ ଛଡ଼ାଇଆଣି ବିନାଶ କରିଥିଲା, ତୁମେ ସେହିପରି ମାଆ କୋଳରୁ ମୋତେ ଛଡ଼ାଇ ନେଉଛ ।"

'ଉପମା କାଳିଦାସସ୍ୟ'—ଅର୍ଥାତ୍ ଉପମା ଦେବାରେ କାଳିଦାସଙ୍କର ଯୋଡ଼ି କବି ରାଜ୍ୟରେ ଆଉ ନାହିଁ ; କିନ୍ତୁ ଏ ଦିଗରେ ନିରକ୍ଷର ନାରୀର ଦକ୍ଷତା ଦେଖିଲେ ବିସ୍ମିତ ହେବାକୁ ହୁଏ । ଉପମା ଦେବାରେ ନାରୀର ସ୍ୱାଭା-ବିକତା, ବାସ୍ତବତା ଜ୍ଞାନ ସୁପ୍ରକଟ ।

'ସମୁଦ୍ର ସଙ୍ଗରେ ଶଙ୍ଖ ସଙ୍ଗାତ
ଗୁଲି ଗେଣ୍ଡା ଦେଖି ବସିଲି ମିତ ।'

'ଟିପି ଟିପି ପାଣି କାଛକୁ ଗୁଟେ
ଟୁପୁ ଟୁପୁ କଥା କଲିଜା କାଟେ ।'

ଲୋକଗୀତର ନାରୀ ସ୍ନେହମୟୀ, ପ୍ରେମମୟୀ, ସେବାପରାୟଣା, ଅତିଥିବତ୍ସଳା, ଗୃହକର୍ମନିପୁଣା, କଳାବତୀ, ସ୍ୱଭାବତଃ ସାହିତ୍ୟିକା । ଦାମ୍ପତ୍ୟ-ପ୍ରେମରେ ସେ ତା'ର ହୃଦୟ ଢାଳି ଦେଇଛି । ସେ ଅତ୍ୟାଚାରର ପ୍ରତିରୋଧ କରିନାହିଁ । ଅବିଚାରରେ ସେ ଅଗ୍ନିଶିଖା ପରି ଜଳି ଉଠିନାହିଁ ; ଦରଦୀ ଆଗରେ ସେ ବ୍ୟଥାବେଦନାର ଜ୍ୱାଳା ପ୍ରକାଶ କରିନାହିଁ । ଦୁଃଖକୁ ସେ ଭାଗ୍ୟର ଏକ ଅଭିଶାପ ବୋଲି ମନେକରିଛି ଓ ଅଶ୍ରୁର ଏକ ଝରଣା ହୋଇ ବୋହି-ଯାଇଛି ।

Digitized by srujanika@gmail.com

## ହଳିଆ ଗୀତ

ହଳିଆ କେବଳ ଆତ୍ମବିନୋଦନ ଲାଗି ଗୀତ ବୋଲେ ନାହିଁ, ବଳଦଙ୍କୁ ଚାଲିବାର ପ୍ରେରଣା ଦେବା ଲାଗି ମଧ୍ୟ ସେ ଗାଏ । ଗୀତ ହଳିଆ, ବଳଦ ସମସ୍ତଙ୍କର କର୍ମସଙ୍ଗୀତ ।

"ହଳିଆ ହୋଇ ଯେବେ ନ ଗାଇବ ଗୀତ
କେମନ୍ତେ ଚାଲିବେ ବଗ୍ଧ କ ବଳଦ
ହଳିଆ ମୂରୁଖ ତ ।"

ସଂକ୍ଷିପ୍ତତା ହଳିଆ ଗୀତର ଗୋଟିଏ ବଡ଼ ବୈଶିଷ୍ଟ୍ୟ । ସୀତାବିବାହ, ଦାନ ଯାତ୍ରୁକ ଗୋଟିଏ ପଦରେ ହଳିଆ କବି ଶେଷ କରିଅଛି । ଆଉ ଗୋଟିଏ ପଦରେ ଇନ୍ଦ୍ରଜିତ ବଧ ଓ କାଳୀୟଦଳନ ଶେଷ ହୋଇଅଛି ।

ହଳିଆ କବିର କବିତ୍ୱ, ବ୍ୟଙ୍ଗ ସୂଚନାତ୍ମକ ଓ ବଡ଼ ତୀକ୍ଷ୍ଣ ।

"ବାଞ୍ଝ ମାଇଝିର ପ୍ରେମ ସୁହାଗ
ଘରୁ ଗୁଡ଼ ତ ଦେଉନାହିଁ !"

ସୌନ୍ଦର୍ଯ୍ୟ ଗତାନୁଗତିକ ନିୟମ ଓ ଶୃଙ୍ଖଳାରେ ଆବଦ୍ଧ ମନକୁ ଚିରକାଳ ବିଭ୍ରାନ୍ତ କରିଦିଏ । ନିମ୍ନ ହଳିଆ ଗୀତରେ ତାହା ବ୍ୟକ୍ତ ।

"ଦେଢ଼ଶୁର ପୁଅ ଅତି ସୁନ୍ଦର
ନୋହିଲା ଦିଅର,
ଦିଅର ହୋଇଥିଲେ ପରଷି ଦିଅନ୍ତି ଭାତ
ମୁଖକୁ ଅନାଇ ଅନ୍ନ ଭୁଞ୍ଜିତି ପ୍ରାଣର ସଙ୍ଗାତ !"

ସ୍ୱଭାବତଃ କଳ୍ପନାବିଳାସୀ ନ ହେଲେ ବି ବିଦଗ୍ଧ କବି ପରି ହଳିଆ କବି କଳ୍ପନାରେ ମସ୍‌ଗୁଲ୍ ହୋଇ ଉଠେ ।

"ସୁନାର ଲଙ୍ଗଳକୁ ରେ ରୁପାର ଜୁଆଳି
ମଣି-ମାଣିକ୍ୟର ଯେ ବଳଦ ହଳିଆ ବନମାଳୀ ।"

ଦରିଦ୍ର ହେଲେ ବି ତାର ମାନବିକ ସହାନୁଭୂତି ଉଚ୍ଚସ୍ତରର । ତା ବିଚାରରେ ଅଯୋଧ୍ୟାରେ ସେପରି ଉଚ୍ଚସ୍ତରର ପ୍ରଜା ନ ଥିଲେ, ତା ହୋଇଥିଲେ ସେମାନଙ୍କ ସାମ୍ନାରେ ରଜା ହେବାକୁ ଯାଉଥିବା ରାମଚନ୍ଦ୍ର ଯୋଗୀ ବେଶ ପିନ୍ଧି ଅରଣ୍ୟକୁ ଯାଇ ନ ଥାଆନ୍ତେ ।

Digitized by srujanika@gmail.com

ପ୍ରାଚୀନ ବୋଇତ ଯାତ୍ରାର ଚିତ୍ର ବେଳେ ବେଳେ ତା କବିତାରେ ମିଳେ, ହୁଏତ ବୋଇତଟି ବାଲିଚଡ଼ାରେ ଅଟକି ଯାଇଛି । ସେଇ ବିପଦରୁ ଉଦ୍ଧାର କରିବା ଲାଗି ସେ ମାଆ ମଙ୍ଗଳାଙ୍କୁ ସୁମରଣା କରିଛି ।

'କଳାବୋଦା ଦେବି ମାତା ଗୋ ମଙ୍ଗଳା , ବୋଇତ ଚାଲିଯାଉ ।'

ହଳିଆ କବିର ପ୍ରେମ ଚିତ୍ରଣ ଏକାନ୍ତ ମୌଳିକ, ସ୍ୱାଭାବିକ, ଅଳଙ୍କାର ପ୍ରୟୋଗରେ ତାର କୌଶଳ ବିଦଗ୍ଧ କବିର ଈର୍ଷା ଜାଗ୍ରତ କରେ ।

"ପର ତ ପୁଅ କଥା ମନେ ପଡ଼ିଲେ
ହାଣ୍ଡି ମଜା ଥାଉ
ହାଣ୍ଡି ମାଜୁ ମାଜୁ ଲାଗିଗଲା କଳା
ତୁମେ ତ ଗଛ ଆମେ ବଉଳା
ତୁ ମତେ ଧରି ପଲା ।

## ବୃହତ୍ତର ପରିପ୍ରେକ୍ଷୀରେ

୧୯୬୭ ମସିହା, ଜୁନ୍ ୨୧ରୁ ୨୫ ତାରିଖ । ଆମେରିକା ଇଣ୍ଡିଆନା ପ୍ରଦେଶରେ ବ୍ଲୁମିଂଟନ୍ ସହରରେ ଇଣ୍ଡିଆନା ବିଶ୍ୱବିଦ୍ୟାଳୟର ଆନୁକୂଲ୍ୟରେ ଅନୁଷ୍ଠିତ ପ୍ରଥମ ଏସିଆ ଲୋକସଂସ୍କୃତି ସମ୍ମେଳନରେ ଭାରତର ଜଣେ ପ୍ରତିନିଧି ଭାବରେ ଯୋଗ ଦେଇ ମୁଁ 'ଚିଙ୍ଗୁଡ଼ିମାଳରେ ସାମାଜିକ ଲୋକଚରିତ' ପ୍ରବନ୍ଧ ପାଠ କରିଥିଲି ।

ନାଟକ, କ୍ଷୁଦ୍ରଗଳ୍ପ, ଉପନ୍ୟାସ ଓ ଯାତ୍ରା ସୃଷ୍ଟିର ବହୁ ପୂର୍ବରୁ ସାମାଜିକ ଚରିତ୍ରସବୁ ଚିଙ୍ଗୁଡ଼ିମାଳରେ ଆସନ ଜମାଇ ବସିଥିଲେ । ଚରିତ୍ରର ପୂର୍ଣ୍ଣ ରୂପ ନୁହେଁ, ଗୋଟିଏ ଗୋଟିଏ ବିଭାବ ମାତ୍ର ଏଥିରେ ପ୍ରକଟିତ ହେଉଥିଲା । ଅବୁଝା ରଜା, ପାଲଭଣ୍ଡା ମନ୍ତ୍ରୀ, କୃପଣ ସାହୁକାର, ଈର୍ଷୀ ପଡ଼ୋଶୀ, ବକଧାର୍ମିକ, କପଟୀ ଯୋଗୀ, ବୃଥାଗର୍ବୀ, ନିଲଜ୍ଜ କୁଳବଧୂ, ସଳଜ୍ଜା ବେଶ୍ୟା, ମାଇଚିଆ ପୁରୁଷ, ଅଣ୍ଡିରାଚଣ୍ଡୀ ସ୍ତ୍ରୀ, ଅତ୍ୟାଚାରିଣୀ ଶାଶୁ, ନିପୀଡ଼ିତା ବଧୂ ସମସ୍ତେ ଗୋଟିଏ ଗୋଟିଏ ଗୋଷ୍ଠୀ ଚରିତ୍ରର ପ୍ରତୀକ । ସମାଜର ଲୌହଚକ୍ର ତଳେ ନିଷ୍ପେଷିତା ସେଦିନର ନାରୀ, ତାର ମୂକ ଚକ୍ଷୁରେ ଅଶ୍ରୁବିନ୍ଦୁ । ବିବେଧଅସହାୟ ସାମନ୍ତମୁଖ୍ୟ ସମାଜ ମାମଲତକାର, ଠାକୁରର ଇଙ୍ଗିତରେ ପରିଚାଳିତ । ତଥାପି ବାସ୍ତବରୁଦ୍ଧ ସମାଜର ବାଣୀ ଫୁଟିଥିଲା ଚିଙ୍ଗୁଡ଼ିମାଳରେ । ସମସାମୟିକ ସମାଜର କଠୋର ସମାଲୋଚକ ଏଇ ଗୀତ—ଯାହାକୁ କୁହାଯାଉଥିଲା ମୂକ ।

ଏହାହିଁ ଥିଲା ମୋର ପ୍ରବନ୍ଧର ଭାବଧାରା । ଓଡ଼ିଆ ଲୋକସଂସ୍କୃତିର ଏଇ ପ୍ରଥମ ଗୁମ୍ଫ ବିଦେଶରେ ପ୍ରେରିତ ହୋଇଥିଲା । ଇଣ୍ଡିଆନା ବିଶ୍ୱବିଦ୍ୟାଳୟର

Digitized by srujanika@gmail.com

ଲୋକସଂସ୍କୃତ ପାଠାଗାରରେ ଢଗଢମାଳି, ଲୋକସଙ୍ଗୀତ, ଲୋକବୀରମାନଙ୍କ ଜୀବନଗାଥା, ଲୋକନାଟକ, ପର୍ବପର୍ବାଣି, ଯାଦୁବିଦ୍ୟା, ଶିଶୁକ୍ରୀଡ଼ା, ଲୋକଚିତ୍ର, କିମ୍ବଦନ୍ତୀ, ଲୋକ ବିଶ୍ୱାସର ୬୦ ହଜାର ପ୍ରକାର ଉପାଦାନ ସଙ୍ଗୃହୀତ ହୋଇଥିବାର ଦେଖି ମନରେ କ୍ଷୋଭ ଓ ପ୍ରଶ୍ନ ଜାତ ହୋଇଥିଲା—ଓଡ଼ିଶାରେ କେବେ ଏପରି ହେବ ?

'ଉତ୍କଳ ଗାଉଁଲି ଗୀତ' ମୁଖବନ୍ଧରେ ଶ୍ରୀ ଚକ୍ରଧର ମହାପାତ୍ର ଲେଖିଛନ୍ତି —'ଏହି ସଂକଳନ ଉତ୍କଳର ଏକ ଅତି ପୁରାତନ, ଅତି ଆବଶ୍ୟକୀୟ ସଂକଳନ ଅଟେ । ଏହା ପ୍ରକାଶିତ ହେବା ପରେ ପଲ୍ଲୀଗୀତର ପ୍ରକୃତ ସ୍ୱରୂପ କଣ, ତାହା ଜନସମାଜ ଓ ପୌରଗଣ ଅନୁଭବ କରିବେ ।' ତାଙ୍କ ସଂକଳନ ପୂର୍ବରୁ ମୋର 'ପଲ୍ଲୀଗୀତି ସଞ୍ଚୟନ, ୧ମ ଭାଗ, ପଲ୍ଲୀଗୀତି ସଞ୍ଚୟନ, ୨ୟ ଭାଗ, 'ଓଡ଼ିଆ ଲୋକଗୀତ ଓ କାହାଣୀ' ( ଡ଼କ୍‌ଟରେଟ୍‌ ଥେସିସ ) ପ୍ରକାଶିତ ହୋଇଅଛି । ସେ ସବୁରୁ କଣ ପଲ୍ଲୀଗୀତର ପ୍ରକୃତ ସ୍ୱରୂପ ବୁଝାଯାଉନାହିଁ ? ଜାଣିଶୁଣି ଏସବୁ ଗ୍ରନ୍ଥ ପ୍ରତି ଆଖି ବୁଜିଦେଲେ ସତ୍ୟ ଲୁଚିଯାଏ ନାହିଁ । ଆପଣା ଦୁର୍ବଳତା ହିଁ ପଦାରେ ପଡ଼େ ।

ଶ୍ରୀ ମହାପାତ୍ରଙ୍କର ଗୋଟିଏ ଗୀତ ସଙ୍ଗେ ମୋ ସଂଗୃହୀତ ଗୋଟିଏ ଗୀତର ସାମ୍ୟ ଥିଲା ବୋଲି ସେ ସମ୍ବାଦପତ୍ରର ଆଶ୍ରୟ ନେଇଥିଲେ । ଏବେ ମିଳାଇ ଦେଖୁଛୁ—ତାଙ୍କ ସଂଗ୍ରହର ପ୍ରାୟ ଛ'ପଣ ଗୀତ ପୂର୍ବରୁ ପ୍ରକାଶିତ ମୋର ପ୍ରଥମ ଓ ଦ୍ୱିତୀୟ ଭାଗ 'ପଲ୍ଲୀଗୀତି ସଞ୍ଚୟନ' ସହିତ ମିଳି ଯାଉଅଛି । ସେସବୁ ଗୀତ ସୌଜନ୍ୟ ଦୃଷ୍ଟିରୁ ତାଙ୍କ ସଞ୍ଚୟନରୁ ବାଦ୍‌ ଦେବା ଉଚିତ ଥିଲା । ମଞ୍ଜୁ ଘୋଷ ତ୍ରିପାଠୀଙ୍କ ଚଇତି ପର୍ବଗୀତ ମୋ ସଞ୍ଚୟନରେ ପ୍ରକାଶିତ ହେବା ପରେ ତାର ପୁନଃ ପ୍ରକାଶନର ଆବଶ୍ୟକତା କେଉଁଠି ?

ମଙ୍ଗଳଗୀତ ନାମରେ ସେ ଉ. ଗା. ଗୀ.ରେ ଯାହା ଛପାଇଥିଲେ, ସେସବୁ ଜଗନ୍ନାଥ ହରିଚନ୍ଦନ, ବିଶ୍ୱମ୍ଭର ହରିଚନ୍ଦନ ଓ ରାଜପରିବାରର ସ୍ତ୍ରୀଲୋକମାନଙ୍କ ର ରଚନା ସାହସରେ ସମସ୍ତ ଭଣିତା ଲିଭାଇ ଦେଇ ଶ୍ରୀ ମହାପାତ୍ର ମୌଖିକ ଲୋକ ଗୀତ ନାମରେ ସେ ସବୁ ଚଳାଇଲେ ! ଏ ସଂପର୍କରେ ଡ଼କ୍ଟର ଜାନକୀବଲ୍ଲଭ ମହାନ୍ତିଙ୍କ ମତ ଉଦ୍ଧାର କରୁଛୁ ।

"ଓଡ଼ିଶାର ସୁପରିଚିତ ଲୋକଗୀତସଂଗ୍ରାହକ ନରସିଂହପୁରନିବାସୀ ଶ୍ରୀ ଚକ୍ରଧର ମହାପାତ୍ର ତାହାଙ୍କ 'ଉତ୍କଳ ଗାଉଁଲି ଗୀତ' ପୁସ୍ତକରେ ବହୁ ପୂର୍ବରୁ ପ୍ରକାଶିତ ଏହି ମଙ୍ଗଳ ସଙ୍ଗୀତ ପୁସ୍ତକଦ୍ୱୟର ଗୀତଗୁଡ଼ିକୁ ହିଁ ସନ୍ନିବେଶିତ

Digitized by srujanika@gmail.com

କରିଅଛନ୍ତି । ମଙ୍ଗଳ ସଙ୍ଗୀତ ପୁସ୍ତକ ଦ୍ୱୟରେ ମୁଦ୍ରିତ ପ୍ରାୟ ୫୦ରୁ ଅଧିକ ଗୀତରୁ ଭଣିତାଂଶକ ବାଦ୍ ଦେଇ ସେ 'ଉତ୍କଳ ଗାଉଁଲି ଗୀତ'ରେ ଛପାଇଛନ୍ତି । ମଙ୍ଗଳଗୀତ ପୁସ୍ତକରେ ସନ୍ନିବିଷ୍ଟ କେତେକ ଗୀତର ମୁଦ୍ରଣକ୍ରମ ସହିତ ଶ୍ରୀଯୁକ୍ତ ମହାପାତ୍ରଙ୍କ ଉତ୍କଳ ଗାଉଁଲି ଗୀତରେ ମୁଦ୍ରିତ କେତେକ ଗାଉଁଲି ଗୀତର ମୁଦ୍ରଣ କ୍ରମ ମଧ୍ୟ ଅବିକଳ ମିଳିଯାଉଛି । ଭଣିତାଯୁକ୍ତ ତଥା ସାହିତ୍ୟିକ କୃତିଯୁକ୍ତ ରଚନାକୁ ବିକୃତ କରି ତାହାକୁ ଲୋକଗୀତ ଭାବେ ଚଳାଇବା ନିଶ୍ଚିତ ଭାବେ ଏକ ଅପଚେଷ୍ଟା ମାତ୍ର । ବିସ୍ମୟର କଥା, ଉତ୍କଳଗାଉଁଲି ଗୀତ ପୁସ୍ତକରେ ସନ୍ନିବିଷ୍ଟ ହୋଇଥିବା ଏହି ମଙ୍ଗଳଗୀତଗୁଡ଼ିକୁ ସଂଗ୍ରାହକ ରାଜ ଅନ୍ତଃପୁରରେ ଥିବା ଗାୟେତ୍ରୀମାନଙ୍କ ଠାରୁ ସଂଗ୍ରହ କରିଅଛନ୍ତି ବୋଲି ଉଲ୍ଲେଖ କରିଅଛନ୍ତି ।" (ପୃ ୨୩୦୬, ଓଡ଼ିଆ ଗୀତିକାବ୍ୟ ଡକ୍ଟର ଜାନକୀବଲ୍ଲଭ ମହାନ୍ତି)

ପ୍ରାୟ କୋଡ଼ିଏ ବର୍ଷ ତଳେ ଏହି ସଂକଳନରେ ଗୀତସବୁ ସଂଗୃହୀତ ହୋଇଥିଲା । କାଗଜର ଦୁର୍ଲଭତା, ଦୁର୍ମୂଲ୍ୟତା ଯୋଗୁଁ ବହୁ କଷ୍ଟରେ ଏହି ଗ୍ରନ୍ଥ ଏବେ ଆଂଶିକଭାବେ ପ୍ରକାଶିତ ହେଲା ।

ଓଡ଼ିଆ ଲୋକଗଳ୍ପ ଓ ଗୀତ ସଂଗ୍ରହ କାର୍ଯ୍ୟରେ ଆନ୍ତରିକ ଭାବେ ସାହାଯ୍ୟ କରୁଥିବା ଦୁଇଜଣ ବ୍ୟକ୍ତିଙ୍କର ଏବେ ମୃତ୍ୟୁ ଘଟିଛି । ଜଣେ କୋରାପୁଟ ନବରଙ୍ଗପୁରର ସାହିତ୍ୟିକ ଶ୍ରୀ ମଞ୍ଜୁଘୋଷ ତ୍ରିପାଠୀ, ଆଉଜଣେ ସମ୍ବଲପୁର ଲାଇଡ଼ା ଗ୍ରାମର କବି ନନ୍ଦକିଶୋର ପଟେଲ । ଏହି ଉଭୟ ନିଷ୍ଠାପର କର୍ମୀଙ୍କ ନିକଟରେ ମୁଁ ଚିରଋଣୀ । ଏମାନଙ୍କ ବ୍ୟତୀତ କେଉଁଝରର ପରମାନନ୍ଦ ମିଶ୍ର, କୁଜଙ୍ଗର ରାମଚରଣ ଦାସ, ମେଦିନୀପୁରର ଚିତ୍ତରଞ୍ଜନ ସାହୁ, ବଣିଆରଗଡର ମୁଖ୍ୟ ଅଧ୍ୟାପକ ଡକ୍ଟର ନରେନ୍ଦ୍ରନାଥ ମିଶ୍ର, ଡକ୍ଟର ଭବଗ୍ରାହୀ ମିଶ୍ର, ଶ୍ରୀ ଦଣ୍ଡପାଣି ମିଶ୍ର ପ୍ରଭୃତି ବହୁ ସଂଗ୍ରାହକ ମୋତେ ସଂଗ୍ରହ ଓ ସଂକଳନ କାର୍ଯ୍ୟରେ ସାହାଯ୍ୟ କରିଛନ୍ତି । ସଂଗ୍ରହ କାର୍ଯ୍ୟ ବନ୍ଦ ହୋଇ ଯିବାପରେ ବହୁ କର୍ମୀଙ୍କର ନାମ ମୁଁ ଭୁଲିଯାଇଅଛି । ସେମାନଙ୍କ ଦାନ ମୁଁ କୃତଜ୍ଞତା ସହିତ ସ୍ମରଣ କରୁଅଛି । ପଲ୍ଲୀଗୀତି ସଞ୍ଚୟନ, ୩ୟ ଭାଗ ମୋର ଶେଷ ଲୋକଗୀତ ସଂକଳନ ।

'ଓଡ଼ିଶା ସାହିତ୍ୟ ଏକାଡ଼େମୀ' ଏଥିଲାଗି ତିନିହଜାର ଟଙ୍କା ସାହାଯ୍ୟ କରିଥିବାରୁ ମୁଁ ଏହି ସଂସ୍ଥାକୁ ମୋର ହାର୍ଦ୍ଦିକ କୃତଜ୍ଞତା ଜଣାଉଅଛି ।

ଅଗଷ୍ଟ ପନ୍ଦର
୧୯୭୫

କୁଞ୍ଜବିହାରୀ ଦାଶ

Digitized by srujanika@gmail.com

# ନାଉ ଚରିତ

(ନୟାଗଡ଼, ପୁରୀ)

ଶୁଣ ହେ ସୁଜନେ ନାଉ ଚରିତ
ଶୁଣିବାକୁ ସୁଖ ଲାଗେ ବହୁତ ।
ଭୁଟମ୍ଭ ତ ଦିନେ ଯାଇଥିଲି ଖେତ
ଜାଆମାନେ ମତେ ନ ଦେଲେ ଭାତ ।
ଢିଙ୍କିରେ ପଣିଲେ ଧାନ ଗୁଡ଼ାଏ
କୁଠକୁଠ ବୋଲି ବୋଇଲେ ଜାଏ ।
ଏକା ହୋଇ ଧାନ କୁଟିଲି ମୁଇଁ
କେହ୍ବ ଆସିଣ ନ ଦେଲେ ଶୁଖାଇ ।
ସକାଳ ପହରୁ ଆଡ଼ନ୍ତି ଯେତେ
ଦଣ୍ଡେ ହେ ଅସର (୧) ନ ଥାଏ ମତେ ।
କଂସା ମାଜ ଅଗଣା ଖରକଲି
ଗୋବର ପାଣି ନେଇ ପକାଇଲି ।
ଧାନ ଦ ହାଣ୍ଡି ଉସାଁଇଲି ଥୋଇ
ଏମାନ ତାହାଙ୍କୁ ଦିଶିଲି ନାହିଁ ।
ନଣନ୍ଦକୁ ଦେନି ଗାଧୋଇ ଗଲି
ଭାତ ତିଅଣ ତରକାରି କଲି ।

---

(୧) ଅସର – ଅବସର

Digitized by srujanika@gmail.com

ଜାଆମାନେ ସବୁ ବସିଲେ ଖାଇ
ଶାଶୂବୁଢ଼ୀ ଯାଇଥିଲେ ଗାଧୋଇ ।
ଶଶୁରଙ୍କର କ କହିବ ଗୁଣ
ବୋଲନ୍ତି ଓଲଣା (୧) କଲୁ ତିଅଣ ।
ଶାଶୂ ବୋଲଇ ଘଇ ବାବୁ (୨) ଖାଇ
ମୋହ ଘରୁ ସବୁ ନେଲୁ ଲୁଟାଇ ।
ଲୁହରଣୀ ମତେ ବୋଲଇ ଦିଅର
କେତେ ସେରନ୍ତା ଘରଣୀ ତାହାର ।
କାହାର ଗୁଣ ବାହୁନିବ କସ ?
ଦେଖି ଜାଆମାନେ ହୁଅନ୍ତି ରୁଷ ।
ନଅାଁ ଲଗା କରମେ ଏହା ଥିଲା
ଢ଼ରୁ ଢ଼ରୁ ଗୋ ଦିନ ନ ସରିଲା ।
ଯେବେ ତୁ ଭିନ ନ କରିବୁ ଘର
ଦଉଡ଼ି ଦେଇ ମରିବ ଆଖର
ମୁଁ ଯାହା କହୁଛି ମୋ ବୋଲ କର ।
ଏତେ ଦୁଃଖ ସହି କପାଇଁ ଥିବା
ବାପ ଘରକୁ ଗୋ ବାହାରି ଯିବା
ଲୁଉଳ ଧ ଯେର ଘାଡ ରାନ୍ଧିବା
ଯେତେକ ଇଚ୍ଛା ତେତେକ ଖାଇବା ।
ଭିନ ହୋଇଲେ ମୁଁ କାଟିବ ସୂତା
ବୁଣାଇବ ସରୁ ଦୋସଡ଼ା ଗଞ୍ଜା ।
ଫୁଲ ଖଣ୍ଡିଏ ମଥାରେ ଯେନିମ
ଫୁଲଣା ହୋଇ ଦାଣ୍ଡରେ ବୁଲିବ ।
ପାଣ୍ଟୋଇ (୩) କୁନ୍ଦ ଲୁଳିବ ଦାଣ୍ଡର
ଗୁଆପାନ ଥିବ କଳ ଭିତର ।

---

(୨) ବାବୁ—ବାପା
(୧) ଓଲଣା—ଅଲଣା
(୩) ପାଣ୍ଟୋଇ—କଠଉ

Digitized by srujanika@gmail.com

ଘରେ ବସି ମୁଇଁ ଅନାଉଁଥିବ
ଦେଖି କରି ବୁକୁ କୁଟେଣ୍ଟି କରିବ ।
ଏ ସୁଖ ତୁମ୍ଭଙ୍କୁ ନ ଯୋଗାଇଲା
ବାପମାଆ ଲାଗି ଜୀବନ ଗଲା ।

ଏହା ଶୁଣି କରି ନାଉ କହିଲା
ତୁ ଯାହା କହିଲୁ ଭଲ ହୋଇଲା ।
ତୋପରି ଭାରିଯା ପାଇବ କାହିଁ ?
ଗଙ୍ଗାରେ ତପ କରିଥିଲି ମୁଇଁ ।
ତୁ ଯାହା କହିଲୁ ରୁଚଇ ମତେ
ଅମୃତ ପ୍ରାପ୍ତ ଲାଗଇ ଚିତ୍ତେ ।
ଏମନ୍ତେ ଭାରିଯା ସଙ୍ଗତେ ଭାଳି
ବାପ ମାଆ ସଙ୍ଗେ ଲଗାଏ କଳି ।
ପାଇଟିକି ଗଲେ ଖେଳଇ ପାଇ
ଅଡ଼ଣ୍ଡ ନ କରେ ଦେହ ଲଗାଇ ।
ଘର ପଦାର୍ଥ ତାର ଯେତେ ଥିଲା
ନାରଖାର କରି ଦାଣ୍ଡକୁ ନେଲା ।
ମାଆ ବୋଲଇ ଏମନ୍ତ ନୁହେଁ
ସହି ନ ପାରିଲେ ଭିନ ତୁ ରହ ।
ନାଉ ବୋଲଇ ମାତା ମୁଖ ଚାହିଁ
ଯାହାଅଛି ତାହା ଦେବୁ କି ନାହିଁ ?
ଲୁଣି ସୋରିଷ ମୁଗ ବରି ଟଙ୍କା
ଦୁଇଭାଗ କରି ଏମାନ ପକା ।
ଚୁଡ଼ା ପାଣ୍ଡୋଇ ଯେ ବଇଠା ବଣ୍ଟା
ବାଣ୍ଟି ନ ଦେବୁ କି କଣ୍ଟଳପାଣ୍ଡି ?
ହଳନ୍ଦ କାଠୁଆ ମାଲପା ଘଡ଼ି
ଏମାନ ନ ଦେଲେ ଯିବ କି ଗୁଡ଼ି ?

Digitized by srujanika@gmail.com

ଭଉଯା ବୋଲଇ ଆରେ ଉଲୁକା (*)
ବୃଲ୍ଲୁରୁ ଦେଖିବୁ ଡାହାଣ ପଖା ।
ବନ୍ଧୁ କୁଟୁମ୍ବ ଯେ କଲେ ଆବୋର
ଦୁଇ ଭାଗ କଲେ ଲୁଣ ଖପର ।
ମାଆ ବୋଲଇ ଆରେ ଆରେ ନାଉ
ଅରଟ ଖଣ୍ଡିକ ମୋ ଘରେ ଥାଉ ।
ଆଜଠାରୁ ବାବୁ ହେଉଛୁ ପର
ତୁ ତ ଯାଉଅଛୁ ଶଶୁର ଘର ।
ଦଶମାସ ଦଶ ଦିନ ଗର୍ଭେ ଧଇଲି
କେତେ ଦୁଃଖରୁ ବାବୁ ବଡ଼ କଲି ।
ଭଉଯା ତୋହର ଏଡ଼େ ହୋଇଲା
ଗୁଡ଼ ମୁଆଁ ଖଣ୍ଡ ଛଡ଼ାଇ ନେଲା ।
ଲାଜରେ ନାଉ ନ କହଇ କଥା
ମଣ୍ଡା କ ପୋଡ଼ରେ ବସିଛୁ ମଥା ।
କାହାର କଥାକୁ ନ ଶୁଣେ ପୁଣ
ଭଉଯା କଥାକୁ ଧରିଛି ମନ ।
ଏମନ୍ତେ ନାଉ ସେ ଶଶୁର କଲା
ଭଉଯା ଲାଗି ଏତେ ସବ ହେଲା ।
ଏମନ୍ତେ ତହୁଁ କେତେ ଦିନ ଗଲା
ଦିନେ ନାଉ ଅଳ୍ପ ଭୋଜନ କଲା ।
ଘରକୁ ଗଲା ସେ ଶୋଇବା ପାଇଁ
ଦେଖିଲା ଶେଯ ପର ହୋଇ ନାହିଁ ।
ଭଉଯାକୁ ତା ପାଶକୁ ଡାକିଲା
ଶେଯ ପାରିନାହୁଁ ଚଳ ହୋଇଲା ।
ଭଉଯା ବୋଲଇ ଆରେ ନିଲଜ
ମୋହ ବାପ ଘରୁ ଚଳ ତୁ ଆଜ ।

(*) ଉଲୁକା – ଓଲୁ

Digitized by srujanika@gmail.com

ଏମନ୍ତେ ନାଉ ସେ ବସ୍ତୁର କଲା
ଭଉଯା ଲାଗି ଏତେ ସର ହେଲା ।
ଯାଉଛି ଏବେ ମୁଁ ବାହାର ଯିବ
ଏହାଙ୍କ ଘରେ କପାଇଁ ରହିବ ?
ଭଉଯା ବୋଲଇ ଆରେ ନିଲଜ
ମୋହ ବାପଘରୁ ପଳା ତୁ ଆଜ ।
ମୁହଁରେ ନିଆଁ ମୁଁ ଦେବ ତୋହର
କାହିଁକ ରହୁଛୁ ମୋ ବାପଘର ?
ତେଣେ ବୁଢ଼ୀ ଭାତ ପରଷୁଥିଲା
ତୁଣ୍ଡ ଗୋଳ ଶୁଣି ଧାଇଁ ଅଇଲା ।
କଅଣ ବୋଲି ବୁଢ଼ୀ ପଚ୍ଚରିଲା
ଝିଅ ବୋଇଲା ମତେ ମାରୁଥିଲା ।
ଶୁଣି କ୍ରୋଧ ହୋଇ ଉଠିଲା ବୁଢ଼ୀ
ନାଉକୁ ଫିଙ୍ଗିଲା ସେ ଚଟୁବାଡ଼ି ।
ମାଡ଼ ଖାଇ ନାଉ କରେ ରୋଦନ
ଲୋତକ ବୁହାଇ ବେନି ନୟନ ।
ଏମନ୍ତ ବୋଲି ସେ ବସ୍ତୁର କଲା
ଗ୍ରାମକୁ ତାହାର ଫେରି ଆସିଲା ।
ଆପଣା ଗ୍ରାମେ ପ୍ରବେଶ କଲେ
ଆପଣା ଲୋକେ ଥିଲେ ଧାଇଁ ଗଲେ
ତାର ମାତା ପିତା ଆଗେ କହିଲେ ।

ଅକ୍ଷୁଣୀ ବୁଢ଼ୀ ଯେ ସାଉଁଟି ହୋଇ
ଅଧା ଦୂରଠାରେ ଧଇଲା ଯାଇ ।
କେଣେ ଯାଇଥିଲୁ ରଙ୍କୁଣୀ ଧନ
ଏତେ କାଳକରେ ପଡ଼ିଲୁ ମନ ।

Digitized by srujanika@gmail.com

ସକଳ ଚରିତ୍ର ବୁଢ଼ୀ ଶୁଣିଲା
ନାଉକୁ ଘେନିଣ ଗୃହ ଆସିଲା ।
ଆପଣା ଗ୍ରାମେ ହୋଇଲେ ପ୍ରବେଶ
ଦେଖିଣ ସମସ୍ତେ ବଡ଼ ହରଷ ।
ସୁଜନେ ଯେଉଁ ପୁଚ୍ଛେ ଦେବ ଜନ୍ମ
ସ୍ତିରୀଙ୍କ କଥାରେ ନୋହିବ ଭ୍ରମ ।
ସ୍ତିରୀ ଲାଗି କରି ଘରକୁ ଗୋଳ
ଦ୍ରୌପଦୀ ଲାଗି ମଲେ କୁରୁବଳ
ନାଉ ରହିଲା ତାର ନିଜ ବାସ
ହବେ ଭଣିଲେ ବଳରାମ ଦାସ ।

Digitized by srujanika@gmail.com

## ବଉଳା ଗାଈ

ଶଗଡ଼ା (ପୁରୀ)

ଜୟ ଜୟ ଜଗନ୍ନାଥ ଦେବା ଦେବୀ ରାଜା
ଲକ୍ଷ୍ମୀ ପାଟରାଣୀ ଯାର ଅଟନ୍ତି ଭାରିଯା ।
ନୀଳାଦ୍ରି କଟକେ ରତ୍ନ ସିଂହାସନେ ଥାଇ
ସଂସାରର ଚେଷ୍ଟା ସେ ବୁଝନ୍ତି ଭାବଗ୍ରାହୀ ।
ଭକତଙ୍କ ହିତବନ୍ଧୁ ଦରିଦ୍ରଙ୍କ ବନ୍ଧୁ
କହୁଛନ୍ତି ଶୁଣ ହୋ ଯୁଧିଷ୍ଠିର ତପୋବନ୍ତ ।
ସତ୍ୟେ ପ୍ରାଣୀମାନେ ସେ ଲଭନ୍ତି ସଦଗତି
ତାହା ତୋତେ କହିଦେବା ଶୁଣ ହୋ ନୃପତି ।
କାଞ୍ଚି ବୋଲି ଦେଶ ସେ ବିରଞ୍ଚି ବୋଲି ପୁର
ଧନେଶ୍ୱର ବୋଲି ତହିଁ ବଣିଆ ସେ ଘର
ତାହା ଘରେ ଥିଲା ସେ ବଉଳା ନାମେ ଗାଈ
ପ୍ରତିଦିନ ଚରଇ ସେ ବନସ୍ତରେ ଯାଇ ।
ଏହିପରି ଅନେକ ସେ ଦିନ ବହିଗଲା
ବଉଳା ଗାଈର ତହିଁ ଗର୍ଭ ଉପୁଜିଲା ।
ଦେହ ଆଶକତ ହୋଇ ପେଟବ୍ୟଥା କଲା
ବଉଳା ବଡ଼ କଷ୍ଟରେ ଉଠି ନ ପାରିଲା
ଏହିପରି ତହିଁରେ ସେ କେତେ ଦିନ ଗଲା
ବଉଳା ଗାଈର ତହିଁ ପୁଅ ଜାତ ହେଲା ।

Digitized by srujanika@gmail.com

ଅତି ହିଁ ସୁନ୍ଦର ସେହି ଅଟେ ବାଳସୁତ
ବଉଳା ଗାଈ ଦେଖି ଯେ ହୋଇଲା ଉଷତ ।
ପୁତ୍ରର ସ୍ନେହରେ ସେହି ବନସ୍ତେ ଯାଇ ଚରି
ପୁଅକୁ କେବଳ ମନ ମଧ୍ୟେ ଥାଏ ଧରି ।
ସନ୍ଧ୍ୟା ଅର୍ଦ୍ଧେକତା କ୍ଷୀର ହୋଇଲାକ ଭରି
ପୁଅକୁ ସୁମରି ଧାଇଁ ଆସୁଛି ହମାଳି ।
ନମୁଆ ନାମରେ ବ୍ୟାଘ୍ର ବନସ୍ତରେ ଥିଲା
ଖାଇବ ବୋଲି ସେ ଆସି ବାଟେ ଓଗାଳିଲା
ବୋଇଲା ବଉଳା ତୋତେ କରିବି ମୁଁ ଗ୍ରାସ
ସାତଦିନ ମୋହର ହୋଇଛି ଉପବାସ ।
ବଉଳା ବୋଇଲା ଆରେ କହୁଅଛି ମୁହିଁ
ଗୃହଦିନର ନନ୍ଦନ ମୋର ଅଛି ହୋଇ
ଏ କ୍ଷୀର ପହ୍ନାକ ତାକୁ ଦେଇ ମୁଁ ଆସଇ
ଗୃହରୁ ଆସିଲେ ବାଘ ଖାଇବୁ ଯେ ତୁହି
ବାଘ ବୋଇଲେ ବଉଳା କେ ହୋଇଲୁ କି ବାଇ ?
ଘରକୁ ଯିବା ଲୋକ କି ବନସ୍ତେ ଆସଇ ?
ମରିବାକୁ ଡର କଲେ ନାହିଁ ନା ତୋହର ?
ମତେ ଏବେ ଭଣ୍ଡି ଅଛୁ ଯିବୁ କି ତୁ ଘର ?
ଏହାକୁ କହିଲେ କଲେ ଛାଡ଼ିଦେବି ମୁହିଁ !
ବଉଳା ବୋଇଲା ସତ୍ୟ ବାଣୀ ଶୁଣ ତୁହି
ଗୃହ ଦିନର ଘରେ ମୋ ହୋଇଛି ନନ୍ଦନ
କ୍ଷୀର ନ ପାଇଲେ ତାର ନ ରହିବ ପ୍ରାଣ ।
ଏକ ଜଣ ନାଶିଲେତ ତିନି ପାପ ହେବ
କେଉଁ ବିଧାତା ନର୍କରେ ତୋତେ ଠାବ ଦେବ ?
ଗୋରୁ ବିପ୍ର ବଧ କଲେ ପାପ ହେବ ଯେତେ
ତୋଠାକୁ ନଇଲେ ବାଘ ପାପ ଲାଗୁ ମତେ ।
ବାଘ ପୁଣି ମନେ ମନେ କରୁଛି ବିଚାର
ଜାଣିବି ଲୋ ବଉଳା ତୋ ସତ୍ୟର ବେଭାର ।

Digitized by srujanika@gmail.com

ଆଜ ଉପବାସ ହେଲେ ମରିଯିବ ନାହିଁ
କାଲ ମୋତେ ଚଢ଼ ଦେବେ ନୈବେଦ୍ୟ ଗୋସାଇଁ ।
ଯାଅ ଚଲି ବଉଳା ତୁ ବନ୍ଧନ ହୋଇ ଆସ
ଜାଣିବା ତୋହର ଆଜ କେମନ୍ତ ବିଶ୍ୱାସ !
ଏତେ ବୋଲି ବାଘ ଯେ ରହିଲା ତୁନି ହୋଇ
ବଉଳା ଅଇଲା ଚଳିଁ ସତ୍ୟ ସେ କରାଇ ।
ମାତାଙ୍କୁ ଯେ ପୁତ୍ର ଏଣେ ରହିଁଅଛି ବାଟ
ଭେକରେ ଯେ ଆତ୍ମା ତାର ହୁଏ ଛଟପଟ ।
ବଉଳା ଯେ ଯାଇ ଘରେ ପ୍ରବେଶ ହୋଇଲା
ପୁତ୍ର ମୁଖେ ଚୁମ୍ବ ଦେଇ କ୍ଷୀର ଖୁଆଇଲା ।
ଯହୁଁ ଅଧିକ ତା କ୍ଷୀର ଚେରରୁ ସରିଲା
ବଉଳା ଗାଈର ମନେ ଶୋକ ଉପୁଜିଲା ।
ଆହା ବାପ ଅଟୁ ମୋର ରଙ୍କୁଣୀର ଧନ
ଆହା ବାପ ଅଟୁ ମୋର ଦୁଃଖୀର ଜୀବନ ।
ଆହା ବାପ ଧନ ତୋତେ ପରିମଣ୍ଡା ଯାଇ (୧)
ପୂର୍ବ ଜନ୍ମେ କେତେ ପାପ ଅରଜିଛୁ ତୁହି ।
ଶିବ ଥାନେ ଅବା ତୁରେ ଢାଳିଲୁ ଗରଳ
ତେଣୁ କରି ଛେଉଣ୍ଡ ହୋଇଲୁ ଆରେ ବାଳ ।
ମାଗନ୍ତା ଲୋକଙ୍କୁ ଅବା କଲୁ ତୁ ନିରାଶ
ତେଣୁ କରି ଛେଉଣ୍ଡ ହୋଇଲୁ ଆରେ ଶିଷ୍ୟ ।
ପୁତ୍ର ବୋଲେ ମାତା ତୁମ୍ଭେ କାନ୍ଦୁ କାହିଁ ପାଇଁ ?
ମତେ ଛାଡ଼ି କରି ତୁମ୍ଭେ ଯିବୁ କେଉଁ ଠାଇଁ ?
ମାତା ବୋଲେ କାହିଁକରେ ଯିବ ବାପଧନ ?
କେମନ୍ତେ ମୂର୍ଚ୍ଛିବି ତୋର ଚନ୍ଦ୍ରମା ବଦନ ?
କ୍ଷଣେ ନ ଦେଖିଲେ ତୋର ଚନ୍ଦ୍ରମା ମୁଖ ଗୋଟି
ଦଶ ଦିଗ ଅନ୍ଧାର ଯାଏରେ ମୋତେ ଘୋଟି ।

(୧) ସ୍ନେହ ସୂଚକ ଶବ୍ଦ

Digitized by srujanika@gmail.com

ଆଜିଦିନ ମହାପାପୀ ମୁଁ ଏମନ୍ତ କଲି
ତୋତେ ଗୁଡ଼ ବନସ୍ତକୁ ଚରିବାକୁ ଗଲି ।
ନପୁଆ ନାମେଣ ବାଘ ବନସ୍ତରେ ଥିଲା
ଖାଇବ ବୋଲିଣ ଆସି ବାଟ ଓଗାଳିଲା ।
ବୋଇଲା ବଉଳା ତୋତେ କରିବ ମୁଁ ଗ୍ରାସ
ସାତଦିନ ମୋହର ହୋଇଛି ଉପବାସ ।
ମୁଁ ବୋଇଲି ଆହେ ବାଘ ଶୁଣ ମନ ଦେଇ
ଗତ ଦିନର ନନ୍ଦନ ଘରେ ଅଛି ଶୋଇ ।
ତା ସଙ୍ଗେ ସତ୍ୟ କରି ଯେ ଆସିଲି ତୋ ପାଶ
ବାଘ ଯହିଁ ମୋ କଥାକୁ କଲାକ ବିଶ୍ୱାସ ।
ତୋହ ଠାକୁ ଧାଇଁ ଆସିଲିରେ ବାପଭାଇ
ଏ କ୍ଷୀର ପହ୍ନାକ ତୋତେ ଦେଇ ଯିବା ପାଇଁ ।
ପେଟ ପୂରାଇ କରିରେ ଖାଇଥାଅ ଦୁଗ୍ଧ
କାଲି କାହିଁ ବଳାରେ ପାଇବୁ ମନ ଶୋଧ ?
ପୁଅ ବୋଲେ ମାତା ତୁଲେ ହୋଇଲୁ କି ବାଇ ?
ତୋହପରି ବାଇତ ସଂସାରେ କେହି ନାହିଁ ।
ବନସ୍ତର ବ ଘ ସେତ ବନସ୍ତରେ ଥାଇ
ତୁତ ବନ ଜନ୍ତୁଙ୍କ ତାଠାକୁ ଅଛୁପାଇ ।
ମାତା ବୋଲେ ପୁଅ ତୁରେ ଶୁଣ ମନ ଦେଇ
ସତ୍ୟକୁ ଯେ ଚନ୍ଦ୍ର ସୂର୍ଯ୍ୟ ଆତଯାତ ହୋଇ ।
ସତ୍ୟକୁ ଯେ ବାସୁକୀ ଏ ପୃଥ୍ୱୀ ଧରିଅଛି
ସତ୍ୟକୁ ଯେ ଇନ୍ଦ୍ରରାଜା ବୃଷ୍ଟି କରୁଅଛି ।
ସତ୍ୟକୁ ଯେ ବୃକ୍ଷମାନେ ଫଳୁଛନ୍ତି ଫଳ
ସତ୍ୟକୁ ଯେ ସାତ ସିନ୍ଧୁ ନ ଲଙ୍ଘଇ କୂଳ
ଗାଈ ଜନ୍ତୁ ପୁଅ ଜାତ କରଇ ଗୋଟିଏ
ଗୋଟିକରୁ ଧର୍ମବଳେ ହୁଅଇ କୋଟିଏ ।
ଘୁଷୁରି ଗୁଟକ ଶ୍ୱାନ କେତେ କରେ ଜାତ
ଅସତ୍ୟ ଗୁଣ ଦେହନଣ ସବେ ହୋଉନ୍ତି ହତ ।

Digitized by srujanika@gmail.com

ପୁତ୍ର ବୋଲେ ମାତା ଶୁଣ ମନଦେଇ
କଦାଚିତେ ଘରେ ସେ ନ ରହିବ ମୁହିଁ ।
ସ୍ୱପ୍ନରେ ବସା ମୁଁ ରୋମାଞ୍ଚିତ ବପୁସ
ନ ଜାଣଇ କାନନରେ ପଥ ଆଦ ବାସ ।
କ୍ଷୀର ନ ପାଇଲେ ମୋର ନ ରହିବ ପ୍ରାଣ
ଗୁଲ ଚୋର ସଙ୍ଗତରେ ଯିବ ଘୋର ବନ ।
ତୋତେ ବାଘ ଖାଇଲେ ମୋତେ ବାଘ ଖାଉ
ଯୁଗ ଯୁଗାନ୍ତରକୁ ଏ କଥା ରହିଥାଉ ।
ମାତା ବୋଲେ ପୁତ୍ର କେଉଁ ହୋଇଲୁ କ ବାଇ ?
ଦେହ ଗଲେ ଲୋକର ସଂସାରେ କିସ ଥାଇ ?
ଦେହ ଥିଲେ ପୁତ୍ରମୋର ତୁ ଅରଜିବୁ ବିତ୍ତ
ଦେହ ଥିଲେ ପୁତ୍ରରେ ମିଳିବ ତୋତେ ମିତ ।
ଦେହ ଥିଲେ ପୁତ୍ରରେ ଜଗପା କାଲି ହୋଇ
ଦେହ ଥିଲେ ପୁତ୍ରମୋର ପାଇବୁ ବନ୍ଧୁ ଭାଇ ।
ଏକା ମାଆ ବାପାଙ୍କୁରେ ନ ଦେଖିବୁ ଧନ
ଆଉ ସବୁ କଥାମାନ କାଲି ହେବ ଜାଣ ।
ମାଆ ଥିଲେ ବାବୁରେ ଦେହକୁ ଚିନ୍ତା ନାହିଁ
ଆଜ ତୋତେ କେତେ ବୁଦ୍ଧି କହିଦେବି ମୁହିଁ ।
ଏକଗୋଟି କଥା ତୋତେ କହୁଛୁ ତିଆରି
ଏକା ହୋଇ ବନସ୍ତକୁ ନ ଯିବୁଟି ଚରି ।
ପାଞ୍ଚ ସାତ ଗାଈଙ୍କର ସଙ୍ଗେ ଚରୁଥିବୁ
ବେଳ ଘଡ଼ିଏକ ଥାଇ ଘରକୁ ଆସିବୁ
ଏକଥା ଗୋଟିକୁ ଧନ ମନେ ଥିବୁ ଧରି
ବିଧାତା ପୁରୁଷ ଜନ୍ମ ଦେଲା ଗାଈ କରି ।
ଗୋରୁ କରି ଆବର ଯେ ଶିଙ୍ଘ ଦେଲା ଦୁଇ
ବାନ୍ଧିଲା ବେଳକୁ କାନ୍ଧ ଦେବୁଟି ନୁଆଁଇ ।
ତୋତେ ସେବା କଲେ ତାଙ୍କୁ ଧର୍ମ ଥିବ ସହି
କଦାଚିତେ ଧର୍ମ ତାର ନ ବୁଡ଼ିବ ମହୀ ।

Digitized by srujanika@gmail.com

ଏତେ ବୋଲି ବଳା ପାଶୁ ବାହାର ହୋଇଲା
ମାତାର ପଛରେ ପୁତ୍ର ଗୋଡ଼ାଇଣ ଗଲା ।
ପୁଣି ଖଣ୍ଡେଦୂର ଯାଇ ବୋଲୁଅଛି ଗାଈ
ମୋର ସଙ୍ଗତରେ କର୍ମା ଆସୁ ବାପଭାଇ ।
ଆହେ ଅନ୍ତର୍ଯାମୀ ନାଥ ପୁଣି ଏହାକଲୁ
ମାତା ପୁତ୍ର ଦୁହିଁଙ୍କି ହେ ବ୍ୟାଘ୍ର ମୁଖେ ଦେଲୁ ।
ଗାଈର ମନକଥାକୁ ଯେ ଜାଣିଲେ ଗୋବିନ୍ଦ
ଏହି କଥା ଗୋଟି ମୋତେ ଲାଗୁଅଛି ଛନ୍ଦ !
ମନେ ମନେ ବିଚାରିଲେ ପ୍ରଭୁ ଚକ୍ରଧର
ଗାଈ ମାଈ ହୋଇଣ ପାପକୁ ଏଡ଼େ ଡର ।
ଏହାର ସତ୍ୟକୁ ଯେବେ ନ ରଖିବ ମୁହିଁ
ପତିତପାବନ ବାନା ବହିଛି କି ପାଇଁ ?
ମନେ ମନେ ବିଚାରିଲେ ପ୍ରଭୁ ବ୍ରହ୍ମରଶି
ବ୍ୟାଘ୍ରର କଣ୍ଠରେ ପ୍ରଭୁ ବିଜେ କଲେ ଆସି ।
ନପୁଆ ନାମରେ ବ୍ୟାଘ୍ର ରହିଁଥିଲା ବସି
ଖଣ୍ଡେ ଦୂରୁ ବଉଳା ଯେ ଦଶିଗଲା ଆସି ।
ଦେଖି କରି ବ୍ୟାଘ୍ର ବଡ଼ ଆନନ୍ଦ ହୋଇଲା
ଧନ୍ୟଲୋ ବଉଳା ବୋଲି ପ୍ରଶଂସା ସେ କଲା ।
ବଉଳା ବୋଇଲା ବ୍ୟାଘ୍ର କର ମୋତେ ଗ୍ରାସ
ଆଜଠାରୁ ଯାଉ ଏ ମୋହର ପାପ ଦୋଷ ।
ବାଘ ବୋଲେ ବଉଳା ଲୋ ବାହୁଡ଼ି ତୁ ଘର
ତୋର ବାହୁଡ଼ିଲେ ମୁହିଁ ଛୁଡ଼ିବ ଶରୀର !
ବଉଳା ବୋଇଲା ବାଘ ହୋଇଲୁ କି ବାଇ ?
ଅନ୍ନଦାନ ଉପରେ ହେ ବଡ଼ ଦାନ ନାହିଁ ।
ଅନ୍ନଦାନ ଦେବାର ହେ ଯେସନେକ ପୁଣ୍ୟ
ତାହା ତୋତେ କହିଦେବା ଥୋକାଏ ଏବେ ଶୁଣ ।
ଅଙ୍ଗ ବୋଲି ଦେଶ ଯେ କଳିଙ୍ଗ ବୋଲିପୁର
ବଡ଼େଶ୍ୱର ବୋଲି ତହିଁ ବଣିଆଁ ଯେ ଘର ।

Digitized by srujanika@gmail.com

ତାହା ଘରେ ଥିଲା ଯେ ସୁବାଣୀ ନାମେ ଗାଈ
ଅତି ବଡ଼ ହୃଷ୍ଟ ପୁଷ୍ଟ ମୂଳ ବାଛୁ ସେଇ ।
ଏହିମନ୍ତ ତହିଁ ଯେ କେତେକ ଦିନ ଗଲା
ସୁବାଣୀ ଗାଈ ଯେ ତାର ଗର୍ଭ ନ ହୋଇଲା ।
ଏକଦିନ ଗୃହସ୍ଥଙ୍କୁ ଭାର୍ଯ୍ୟା କହଇ
ଏ ବାଞ୍ଝ ଗାଈକି ହୋ ରଖିବା କାହିଁ ପାଇଁ ?
ପ୍ରଭାତୁ ଉଠି ଚାହିଁଲେ ମୁଖ ଯେ ଏହାର
ସୁନା ଦାନ ଦେଲେ ଯେ ପାତକ ହୁଏ ଦୂର ।
ଆର ଦିନକୁ ଯେ ପାପ କଷ୍ଟୁ କଷ୍ଟୁ ଥାଇ
ଏ ଯେଣ ବାଞ୍ଝ ଗାଈର ମୁଖକୁ ନ ଚାହିଁ
ତାହା ଶୁଣି ସାଧବ ବଦନ ଚଳଚଳ
ବସ୍ନକର ବୋଲାଣ ବ୍ରାହ୍ମଣ ତହିଁ ଥିଲା ।
ତାହାକୁ ଡାକିଣ ସେ ଗାଈ କି ଦେଲେ ଦାନ
ଦାନ ପାଇ ହରଷ ବ୍ରାହ୍ମଣ ପଞ୍ଚମନ ।
ବ୍ରାହ୍ମଣୀ ଗାଈ କି ତାର ପ୍ରତି ପାଳୁଥାଇ
ପେଜ, କୁଣ୍ଡା, ଘାସ ନିତି ଖାଇବାକୁ ଦେଇ ।
ଅପୂର୍ବ କଥାଏ ଶୁଣିବା ଦିବ୍ୟରସ
କଂସାଇ ଦୁଇଜଣ ଯେ ହୋଇଲେ ପ୍ରବେଶ ।
ବୋଇଲେ କଂସାଇ ବିପ୍ରେ ବିକିବ କି ଗାଈ ?
ପାଞ୍ଚଟଙ୍କା ଦେବୁ ଆମେ ଦେବୁଟି କି ଭାଇ ?
ତାହା ଶୁଣି ବ୍ରାହ୍ମଣ ବଦନ ଚଳଚଳ
ପାଞ୍ଚ ଟଙ୍କାର କଉଡ଼ି ଦେଇଣ ଆସିଲା ।
ତାହା ଶୁଣି ଗାଈ ତାର କରଇ ରୋଦନ
ବେନି ଆଖିରୁ ଲୋତକ ବହେ ଘନଘନ ।
ଆରେ ଦଇବ ବିଧାତା ଏହା ପୁଣି କଲୁ
ଏତେ କାଳେ ମତେ ଯେ ମରଣ କଷ୍ଟ ଦେଲୁ ।
ଗାଈବେକେ ପଘା ଲଗାଇଣ ତାକୁ ଦେଲା
ନିଅହେ ଗାଈକି ବୋଲି ତାହାଙ୍କୁ ବୋଇଲା ।

Digitized by srujanika@gmail.com

ତାହା ଶୁଣି ଗାଈ ଘରୁ ଗଲାକ ପଳାଇ
ପଛେ ପଛେ ଗୋଡ଼ାଇଅଛନ୍ତି ବେନଭାଇ ।
ଅନେକ ଗିରିକନ୍ଦରେ ବୁଲିଗଲା ଦେଶ
ସାତବନଯାକ ସେ ନ ଚରିଗଲା ଘାସ
କୁବେର ସାହୁ ବୋଲଣ ଏକ ମହାଜନ
ହରି ପାଦପଦ୍ମ ବିନୁ ନ ଜାଣଇ ଆନ
ସେ ଗ୍ରାମରେ ଗାଈ ଯାଇ ପଡ଼ିଲାକ ଶୋଇ
ଶୋଇବା ଥାନରେ ଯେ ଚେତା ଆଉ ନାହିଁ ।
ଗାଈ ପଛେ ପଛେ ଧାଇଁ ଧାଇଁ ଦୁଇଭାଇ
ପଡ଼ିଗଲେ ଭୂମିରେ ଯେ ଅଚେତନ ହୋଇ ।
ସାନଭାଇ ବୋଲୁଅଛି ଶୁଣ ଆରେ ଭାଇ
କୁବେରସାହୁଙ୍କୁ ଅନ୍ନ ମାଗିବାଟି ଯାଇ ।
କୁବେର ସାହୁର ଦ୍ୱାରେ ହୋଇଲେ ପ୍ରବେଶ
ମାଗିବା ମାତ୍ରକେ ତାଙ୍କୁ ଦେଲେ ଅନ୍ନଗ୍ରାସ ।
ଅନ୍ନଖାଇ ଦୁଇଭାଇ ବଳବନ୍ତ ହେଲେ
ସେଠାବରୁ ସୁବାଣୀକି ବାନ୍ଧି ନେଇଗଲେ ।
ଯେତେବେଳେ ସୁବାଣୀକି ବାନ୍ଧିଲେ କଂସାଇ
ସେ ଗ୍ରାମରେ ଗୋଟିଏ ଯେ ନ ବୋଲିଲେ କେହି ।
ବହୁତ ବିକଳ ହୋଇ ଗାଈ ପୁଣି ଗଲା
ଶରଣ ପଶିଲାରୁ ଯେ କେହି ନ ରଖିଲା ।
ବାନ୍ଧିଣ ଗାଈକି ବେନି ଘେନି ଚଳିଗଲେ
କଣ୍ଟିହିଁ ବେଳରେ ଯାଇ ଗ୍ରାମରେ ମିଳିଲେ ।
ଘରେ ସେ ଗାଈର ଯାଇ କଲେ ପ୍ରାଣନାଶ
ପ୍ରାଣନାଶ ଠାରେ ଯେ ଲାଗିଲା ତାକୁ ଦୋଷ ।
ଯମଧର୍ମ ବହୁକ ସେ ବିଗୁରଣା କଲେ
କୁବେର ସାହୁକୁ ଦୋଷ ଲାଗିଲା ବୋଇଲେ ।
ଯେତେବେଳେ କୁବେରକୁ ଲାଗେ ହତ୍ୟାଦୋଷ
ସକଳ ସମ୍ପତ୍ତି ତାର କ୍ଷଣେ ଗଲା ନାଶ ।

Digitized by srujanika@gmail.com

ପାଠ ପଢ଼ିବାର ପୁଅ ସେହି ଆଡ଼େ ଗଲା
ଗାଧୋଇ ଯିବାର ବୋହୂ ଘରକୁ ନଇଲା ।
ଚରିଯିବା ଗାଈ ତାର ସେହିଆଡ଼େ ଗଲା
ପୋତିବାର ଧନ ତା ପଥର ପାଲଟିଲା ।
ସାତ ଖଣ୍ଡ ବୋଇତ ଯେ ଥିଲା ତାର ଘରେ
ସେହି ପୁଣି ବୁଡ଼ିଗଲା ସମୁଦ୍ର ମଧ୍ୟରେ ।
ଶେଷେ ପ୍ରାଣୀ ଥିଲେ ତାର ସମସ୍ତେ ମରିଣ
ଗୃହସ୍ଥ ଭାର୍ଯ୍ୟା ଯେ ରହିଲେ ଦୁଇଜଣ ।
ନିତି ପ୍ରତି କୁବେର ଯେ ଭିକ୍ଷ ମାଗିଯାଇ
ବେଳବୁଡ଼ିକୁ ଚାଉଳ ମାଣେକ ଆଣଇ ।
ଭାର୍ଯ୍ୟା ସୁମତି ତାର କରଇ ରନ୍ଧନ
ତିନିଖଣ୍ଡି ପତର ଆଣଇ ମହାଜନ ।
ମାଣେକ ଚାଉଳ ଭାତ ତିନିଭାଗ କରି
ଦାଣ୍ଡରୁ ଅତିଥି ଜଣେ ଡାକିଆଣେ ବରି ।
ନିତିପ୍ରତି ବୈଷ୍ଣବଙ୍କୁ ଅନ୍ନଦାନ ଦେଇ
ନୋହିଲେ କେବେ ହେଁ ପାଣିପଣା ନ ଭକ୍ଷଇ ।
ଏହିମତି ତହିଁରେ ଯେ କେତେଦିନ ଗଲା
କୁବେର ସାହୁ କେବେ ହେଁ ସତ୍ୟ ନ ଛାଡ଼ିଲା ।
ଏକ ଦିନେ ଗୃହସ୍ଥକୁ ଭାର୍ଯ୍ୟା କହଇ
ମୋର ବାପ ଘରକୁ ହେ ନ ଯାଅ କିମ୍ପାଇ ?
ଋଣ ମାଗି କରିଣ ଆଣନ୍ତୁ ଥୋକେ ଧନ
ବେପାର ବଣିଜ କରି ବଞ୍ଚାଇବା ଦିନ ।
କୁବେର ବୋଇଲା ଆଗୋ ଶୁଣସି ଗୋ ସହ୍ମୀ
ଶେଷେ କୋଣ ମାର୍ଗ ମୁଁ ଗୋ ଯିବି କିସ ଖାଇ ?
ଭାର୍ଯ୍ୟା ବୋଇଲା ଦର ଦେଖଇ ମୁଁ ଯାଇ
ମାଗିଆଣିଲାର ଖୁଦ ଗୁଡ଼ାଏ ଅଛଇ ।
ଏତେ ବୋଲି ସୁମତି ଯେ ବେଗେ ଚଳିଗଲା
ଛିଣ୍ଡା ଗାମୁଛାରେ ଖୁଦ ଗୁଡ଼ାଏ ବାନ୍ଧିଲା ।

Digitized by srujanika@gmail.com

ତାହା ଯେବେ କୁବେର ଯେ ଗଲେ କିଛି ଦୂର
ଅଟବ୍ୟା ନାମରେ ଦେଶ ଅଛଇ ପାଖର
ସେ ଦେଶରେ ପ୍ରବେଶ ଯେ ହୋଇଲେକ ଯାଇ
ମୋହ ଯାଇ ବୃକ୍ଷତଳେ ପଡ଼ିଲେକ ଶୋଇ
ଦିବ୍ୟ ଯେ ପୋଖରୀ ଏକ ବନସ୍ତରେ ଥାଇ
ତୀର ପାଖେ ବୃକ୍ଷମାନେ ଲାଗିଛନ୍ତି ତହିଁ ।
ସେଠାକୁ କୁବେର ସାଧୁ ବେଗେ ଚଳିଗଲା
ପୋଖରୀ ଭିତରେ ପଶି ସ୍ନାହାନ ସାରିଲା ।
ଖୁଦ ଗୁଣ୍ଡ ଗୋଟିକ ସେ ବାନ୍ଧିଲେକ ନେଇ
ପତରେ ତିନି ଖଣ୍ଡି ଯେ ଆଣିଲେକ ଯାଇ
ଭାତ ଗୁଣ୍ଡ ଗୋଟିକ ସେ ତିନିଭାଗ କରି
ମନେ ମନେ କୁବେର ଯେ ହୁଅଇ ସୁମରି ।
ଅତିଥିକି ନ ଦେଇ ମୁଁ କେମନ୍ତେ ଖାଇବି ?
କେତେ କାଳ ମୁଁ ଯେ ଅବା ଦେହ ଧରିଥିବି ?
ଏତେ ବୋଲି କୁବେର ରହିଲା ତୁନି ହୋଇ
ଭକତର ମନ ଯେ ଜାଣିଲେ ଭାବଗ୍ରାହୀ ।
ତୁଳସୀର ମାଳ କଣ୍ଠେ କର୍ଣ୍ଣେ ଯେ କୁଣ୍ଡଳ
ଉତ୍ତରୀ କାନ୍ଧରେ ତିରା ଅଛଇ ଝମାଳ ।
ସଜେ କଲେ ତମ୍ଭା ଏକ ଯେନି ଶ୍ରୀ ହସ୍ତର
ଭକତର ପାଶ ଯେ ମିଳିଲେ ଚକ୍ରଧର ।
ଉଠ ଉଠ ସାଧବ ହେ ଦିଅ ଅନ୍ନଗ୍ରାସ
ସାତଦିନ ମୋହର ହୋଇଛି ଉପବାସ ।
ଖୁଦ ଗୁଣ୍ଡ ଗୋଟି ଯିନା ଥୋଇଅଛୁ ତୁହି
ପୂରୁ ବା ନ ପୂରୁ ପେଟ ଖାଇବଇଁ ମୁହିଁ
ଯେତେବେଳେ ମହାପ୍ରଭୁ ଖୁଦ କଲେ ଗ୍ରାସ
ସକଳ ପାତକ ତାର କ୍ଷଣେ ଗଲା ନାଶ ।
ସେହି ଧନ, ସେହି ପୁତ୍ର, ସେ ଜନ ମିଳଇ
ପୋଖରୀରୁ ଗାଧୋଇ ଆସିଲା ପ୍ରାପ୍ତ ହୋଇ ।

Digitized by srujanika@gmail.com

ଶୁଣିଲୁଟି ବାଘ ଅନ୍ନଦାନର ଚରିତ
ଖୁଦ ଦେଇ ଗୋହତ୍ୟାରୁ ହୋଇଲୁ ମୁକତ ।
ବାଘ ବୋଲେ ବଉଳା ଲୋ ବାହୁଡ଼ ତୁ ଘର
ତୋର ବାହୁଡ଼ିଲେ ମୁହିଁ ଛାଡ଼ିବ ଶରୀର ।
ତାହା ଶୁଣି ବଉଳା ଯେ ବେଗେ ଚଳିଲା
ପୁଅକୁ ଦେଖିଣ ଗୃହେ ପ୍ରବେଶ ହୋଇଲା ।
ବ୍ୟାଘ୍ର ଦେହ ଛାଡ଼ିକରି ବୈକୁଣ୍ଠକୁ ଗଲା
ଯୁଗ ଯୁଗାନ୍ତରକୁ ଏ କଥା ରୁହାଇଲା ।
ଶୁଣିଣ ଯୁଜେଷ୍ଠି ଅନ୍ନଦାନର ଚରିତ
ବଉଳା କହିଲା ବ୍ୟାଘ୍ର ଆଗରେ ଯେମନ୍ତ ।
ଏବେ ହେ ଯୁଜେଷ୍ଠି ତୁମେ ସତ୍ୟେ ଆଶ୍ରେ କର
ସତ୍ୟେ ଆଶ୍ରେ କଲା ଲୋକ ସ୍ୱର୍ଗେ କରେ ଘର
ସତ୍ୟ କରି ସତ୍ୟ ପାଳ ପ୍ରାଣ ତା ନସ୍ତାରି
ଏବେ ହୋ ଯୁଜେଷ୍ଠି ତୁମ୍ଭେ ଆଶ୍ରେ କର ହରି
ତାହା ଶୁଣି ଯୁଜେଷ୍ଠି ଯେ ହୋଇଲେ ହରଷ
ବଉଳା ଅଧ୍ୟା ଭଣିଲେ ବଳରାମ ଦାସ ।

Digitized by srujanika@gmail.com

# ବାଡ଼ିବାଇଗଣ ଗୁରିଚରୁଡ଼ା ଲୋ

(ରେଙ୍ଗଶାସନ, ପୁରୀ)

ବାଡ଼ି ବାଇଗଣ ଗୁରି ଚରୁଡ଼ା ଲୋ
କାହା ପତରରେ ଦେବ ?
ଶାଶୂ ଗାଳି ଦେବେ ନନ୍ଦେ ଗଞ୍ଜିବେ
କାହାର କେତେ ସହିବ ?
କାହାର କେତେ ମୁଁ ନ ସହି ପାରିଲେ
କୂଅକୁ ଡେଇଁ ପଡ଼ିବ
କୂଅକୁ ଯଦି ତୁ ଡେଇଁ ପଡ଼ିବୁ ଲୋ
ଦଉଡ଼ା ପକାଇ ଦେବ ।
ଦଉଡ଼ା ଯଦି ତ ଦେବ ପକାଇ ହେ
କୂଅ ମୂଳେ ଦୂବ ହେବ
କୂଅମୂଳେ ଯଦି ଦୂବ ହୋଇବୁ ଲୋ
କାଳୀ ଗାଈ ଚରାଇବ ।
କାଳୀ ଗାଈ ଯଦି ତୁମେ ଚରାଇବ ହେ
କୂଅର କଇଁ ହୋଇବ
କୂଏ ଯଦି ତୁମେ କଇଁ ହୋଇବ ହେ
ନିତି ତୋଳି ଆଣୁଥିବ ।
ନିତି ଯଦି ତୁମେ ତୋଳି ଆଣିବ ହେ
ବାଠ ବରଗଛ ହେବ

Digitized by srujanika@gmail.com

ବାଟ ବରଗଛ ଯଦି ହୋଇବୁ ଲୋ
ଧୋବା ଡାକ ଶୁଣାଇବ ।
ଧୋବା ଡାକ ଯଦି ତୁମେ ଶୁଣାଇବ ହେ
ବାଲିରେ ସୋରିଷ ହେବ
ବାଲିରେ ସୋରିଷ ଯଦି ହୋଇବ ହେ
ପାଗ ଆଣି ଖୁଣ୍ଟାଇବ ।
ପାଗ ଆଣି ତୁମେ ଯଦି ଖୁଣ୍ଟାଇବ ହେ
ବନସ୍ତେ ପଣସ ହେବ
ତୁ ଯଦି ବନସ୍ତେ ପଣସ ହେବୁ ଲୋ
ତୋଳ ଆଣି ମୁଁ ଖାଇବ ।
ତୋଳ ଆଣି ଯଦି ତୁମେ ଖାଇବ ହେ
ପୋଖରୀରେ ମାଛ ହେବ
ପୋଖରୀରେ ଯଦି ମାଛ ହୋଇବୁ ଲୋ
ଜାଲ ଆଣି ପକାଇବ ।
ଜାଲ ଆଣି ଯଦି ତୁମେ ପକାଇବ ହେ
ଗୃଳର ଲଉ ହୋଇବ
ଗୃଳରେ ଯଦି ତୁ ଲଉ ହୋଇବୁ ଲୋ
ଚୂଲ୍ଲି ଜାଳ ଶିଖାଇବ ।
ଚୂଲ୍ଲି ଜାଳ ଯଦି ତୁମେ ଶିଖାଇବ ହେ
କଳାମେଘେ ପଶିଯିବ
କଳାମେଘେ ଯଦି ତୁମେ ପଶିଯିବ
ବତାସରେ ଉଡ଼ାଇବ
ଉଡ଼ି ଉଡ଼ି ତୁଇ ଯେ ରାଇଜେ ଯିବୁ
ସେଇ ରାଇଜକୁ ଯିବ ।

Digitized by srujanika@gmail.com

# ଆଜିଠାରୁ ନ ଚାହିଁବି ଜାନକୀ ବଦନ

(ନିମାପଡା, ପୁରୀ)

ମଦର ଖାଇ ପାଟ ରଜକାର
ଭାରିଯା ସଙ୍ଗରେ କରୁଛି କଳି
ଯାଅ ତୋ ଠାରେ ମୋର କାର୍ଯ ନାହିଁ
ଅସତୀ ନାରୀ ତୋ ମୁଖ ନ ଚାହିଁ
ବାପ ଘରେ ନାରୀ ଦିନେ ରହିଲା
ଏଥକୁ କିପାଇଁ ଦୋଷୀ ହେଲା ?
ଶ୍ରୀ ରାମଚନ୍ଦ୍ର ଯେ ଜଗତେ ରାଜା
ଚଉଦ ଭୁବନେ ତାଙ୍କର ପ୍ରଜା
ତାଙ୍କ ଘରଣୀକି ରାବଣ ନେଲା
ବରଷେ ଦୁଇ ମାସ ବନ୍ଦ କରିଥିଲା ।
ତାଙ୍କଠାରୁ ବଳି ତୁରେ ଜାଣିଆ ହେଲୁ
ଅସତୀ ନାରୀ ତୁ ମତେ କହିଲୁ
ଆଜ କାହିଁକରେ କଳି କରୁଥିବା
ରାଜ ପାଇଲେ କାଳ ଫଂସାରେ ପଡ଼ିବା ।
ମୋହର ଦୋଷ ହୋଇଲେ ତୁ ମତେ ଛାଡ଼ିବୁ
ବିନା ଦୋଷେ କାହିଁ ପାଇଁ ଗାଳି ଦେଉଥିବୁ ?
ଧୋବଣୀ ତୁଣ୍ଡରୁ ରାମ ଏ ବଚନ ଶୁଣି
ମନେ ବିଚାର କରନ୍ତି ସେ କୋଦଣ୍ଡ ପାଣି ।

Digitized by srujanika@gmail.com

ଜାଣିଲି ସୀତାସ୍ତା ମୋର କଳଙ୍କୀ ହୋଇଲି
ଛାର ରଜକ ଘରଣୀ ଏମନ୍ତ କହିଲା ।
ଆଜଠାରୁ ନ ଚାହିଁବି ଜାନକୀ ବଦନ
ନେଇ ଘୋର ବନେ ଛାଡ଼ିଆସିବ ଲକ୍ଷ୍ମଣ ।
ଏମନ୍ତ କହିଣ ରାମ ମନ୍ଦିରେ ମିଳନ୍ତି
ଦେଖିଲେ ପଲଙ୍କେ ଶୋଇଛନ୍ତି ମହାସତୀ
ମୁଖକୁ ଚାହିଁ ଶ୍ରୀରାମ ହୁଅନ୍ତି ବ୍ୟାକୁଳ
ଝର ଝର ନୟନରୁ ବହେ ଅଶ୍ରୁଜଳ ।

Digitized by srujanika@gmail.com

# ରଙ୍ଗବତୀ ( ଅପୂର୍ଣ୍ଣ )

(ନିମାପଡ଼ା, ପୁରୀ)

ସେ ତ ପକ୍ଷିରାଜ ଘୋଡ଼ା ଶୂନ୍ୟେ ଉଡ଼ିଗଲା
ମାଳୀ ଘର ବଗିଚ୍ଚରେ ପ୍ରବେଶ ହୋଇଲା ।
ପୁଷ୍ପ ବଗିଚ୍ଚରେ ବେଣ୍ଟ ପୋଖରୀ ଯେ ଗୋଟି
ଯାଛି ନୃତ୍ୟ କମଳର ତହିଁ ଅଛି ଫୁଟି ।
ମାଧବୀ ନିଆଳୀ କୁନ୍ଦ ଚୁଆଅନା ଜାତି
ମରୁଆ ରଙ୍ଗଣି କିଆ ଅଶୋକ ସେବତୀ
ସେ ପୋଖରୀ ଗୋଟି ରାଜା ଅଛନ୍ତି ଖୋଳାଇ
ନିତି ପ୍ରତି ମାଜଣା କରନ୍ତି ନେମାଦେଇ ।
ରାଜାର ନନ୍ଦିନୀ ନାମ ଅଟେ ରଙ୍ଗବତୀ
ସେହି ପୋଖରୀରେ ସ୍ନାନ କରେ ଯାଇ ନିତି
ଦୈବ ଯୋଗେ ରଙ୍ଗବତୀ ଯାଏ ସ୍ନାନ କରି
କେତେ ଦାସୀ ପରିବାରୀ ଅଛନ୍ତି ଯେ ଘେରି
ଦେଖି କରି କୁମରର ପାଦ ନ ଚଳିଲା
ଗଣ୍ଡେ ହସ୍ତ ଦେଇ ତାକୁ ଧଣ୍ଡେ ଅନାଇଲା ।

କାହାର କୁମର ଅଟୁ ଆସିଲୁ ଏଠାରେ
ସୂର୍ଯ୍ୟ କିରଣ ନ ପଡ଼େ ଏ ଉପବନରେ

---

(୧) ଭୃଗୁରାମଙ୍କ ଭ୍ରମରବର ପାଲା ଘଟଣା ଅନୁସରଣରେ ଏହି ଗାଥା ଗୀତିକାଟି ଲେଖା ହୋଇଛି । ଏହା ଯୋଗୀମାନେ ଗାଇ ବୁଲନ୍ତି ।

Digitized by srujanika@gmail.com

ଏଥିକୁ କପଟ ତୁ ତ ଆସିଲୁ କୁମର
ସ୍ୱରୂପ ବଚନ ମୋତେ କହନ୍ତ ଉତ୍ତର ।
କୁମର ବୋଲେ ମୋ ଘର ମାଣିକ ସହର
ମୋର ପିତା ନାମ ଅଟେ ଧମା ସୌଦାଗର ।
ରଙ୍ଗବତୀ ବୋଇଲାରେ ଶୁଣ ସୌଦାଗର
ତୋର ମୋର ସତ୍ୟ ହେଲା ପୋଖରୀ କୂଳର ।
ତୁମ୍ଭେ ମୋର ପତି ହେଲ ମୁଁ ତୁମ୍ଭ ଯୁବତୀ
କୁମର ବୋଲେ ସୁନ୍ଦରୀ ଏ ମିଥ୍ୟା ଭାରତୀ
ଦେଖ ଧର୍ମ ଦେବତା ହେ ଆସୁଛନ୍ତି ଉଇଁ
ପୋଖରୀ କୂଳରେ ସତ୍ୟ କରୁଛି ଯେ ମୁହିଁ ।
ଏତେ କହି କନ୍ୟା ଗଲା ଆପଣା ମନ୍ଦିରେ
ପ୍ରବେଶ ହୋଇଲା ଯାଇ ରାଣୀହଂସ ପୁରେ
ଅଙ୍ଗରୁ ଓଦା ବସନ ପାଲଟିଲା ନାହିଁ
କବାଟ କିଳଣ କନ୍ୟା ମୁଖ ମାଡ଼ି ଶୋଇ
ଏହା ଶୁଣି ରାଣୀ ତାକୁ ଯାଇ ପଚାରଇ
ଏ କି ବିପରୀତ କଥା କହ ରଙ୍ଗଦେଈ ?
ଏହା ଶୁଣି ନୃପବର କର୍ଣ୍ଣେ ହସ୍ତ ଦେଲେ
ରଙ୍ଗବତୀ କନ୍ୟାକୁ ସେ ଝିଙ୍ଗାସି କହିଲେ
ରଜା ବୋଲୁଛନ୍ତି ଝିଅ ମୁହିଁ ପୋଡ଼ୁ ତୋର
ବଣିଆ ଟୋକାଟା ତୋର ହୋଇବ ଯେ ବର ।
ତାର ପିତା ନାମ ଅଟେ ଧମା ସୌଦାଗର
ପୋଟଳି ଦେନଣ ବାନ୍ଧି ବୁଲଇ ବଜାର ।
ରଜାର ପୁଅକୁ କାଲି ବିଭାଦେବି ମୁହିଁ
ଏହା ଶୁଣି ରଙ୍ଗବତୀ ବଚନ କହଇ ।
ସେ ଗୋପାଳ ହେଲେ ମୁହିଁ ଗୋପାଳୁଣୀ ହେବି
ସେ ବଣିଆ ହେଲେ ମୁଁ ତ ପୋଟଳି ବାନ୍ଧିବି ।
ସେ ଯୋଗୀ ହୋଇଲେ ମୁଁ ତ ଯୋଗୀଆଣୀ ହେବି
ସେ ଭିକ ମାଗିଲେ ମୁଁ ତ ଥାଳ ଦେନ ଯିବି ।

Digitized by srujanika@gmail.com

× × × ×

ରାଜବାଡ଼ି ଯଉତୁକ କିଛି ମୁଁ ନ ଦେବି
ସତ୍ୟ କରୁଅଛି ରଙ୍ଗ ମୁଖ ନ ଚାହିଁବି ।
ଏତେକ କହି ମହାରାଜା ମଣ୍ଡାଇଲେ ଘର
ଭ୍ରମରବରକୁ କରି ନେଲେ ସେ ଆଦର ।
ଗଳେ ବର୍ଣ୍ଣମାଳା ଦେଇ କରିଲେ ବରଣ
ରଙ୍ଗବତୀ କନ୍ୟାକୁ ମୁଁ କରିବି ପ୍ରଦାନ ।
ମଙ୍ଗଳର ଅଧିବାସ କରି ଚାରି ପୁରେ
ବର କନ୍ୟା ବସିଛନ୍ତି ରତ୍ନବେଦୀ ପରେ ।
ପ୍ରଥମରେ ପୂଜେ ଘଟଦେବତା ଚରଣ
ଯଉତୁକ ସୂତ୍ର କରେ ବାନ୍ଧିଲେ ବ୍ରାହ୍ମଣ ।

× × × ×

ବାଇଦ ଯେ ବରକାଠ ଶବଦ ଶୁଣିଲା
ଚାଲିଙ୍କିରେ ସାଧବାଣୀ ପୁଅକୁ ଦେଖିଲା ।
ସାଧବାଣୀ ବୋଲେ ମୋତେ ବାଟ ଛାଡ଼ିଦିଅ
ମୋ ପୁଅ ବର ହୋଇ ଆସୁଛି ରଜା ଝିଅ ।
ଏତେ କହି ବୁଢ଼ୀ ବୁଢ଼ାକୁ (୧) ଠେଲା ପେଲା ଦେଇ
ଅର୍ଘ୍ୟଥାଳୀ ନେଇ ବନ୍ଦାପନା କଲା ଯାଇ ।
ପୁଅ ବୋହୂ ଦେନ ବୁଢ଼ୀ ଆପଣା ମନରେ
ରଙ୍ଗବତୀ ରହେ ଗୃର ଜାଆଙ୍କ ପାଶରେ ।
ଶାଶୂଙ୍କୁ ଦେଖି ସେ ବୋହୂ ବଡ଼ ଭକ୍ତି କରି
ଆଗେ ଓଳଗିଲା ଚରଣକୁ ଧରି
ରଜା ଝିଅ ଏଥୁଁ କନ୍ୟା ମନେ ଗର୍ବ କଲା
ଗୃର ଜାଆ ଥିଲେ ତାଙ୍କୁ ଓଳଗି ନୋହିଲା ।

---

୧ । ବୁଢ଼ା—ଧନୀସୌଦାଗର, ଅତିକୃପଣ । ରଜାଙ୍କ ନିକଟକୁ ଟଙ୍କା ଆଦାୟ କରିବା ଲାଗି ସେ ପୁଅକୁ ପଠାଇଥିଲା । ପୁଅ ବର ହୋଇ ଆସିଲା । ଟଙ୍କାତକ ବୁଡ଼ାଇଲା ବୋଲି ଧନୀ ଆଦର କରି ପୁଅକୁ ଘରକୁ ଅଣିଲା ନାହିଁ ।

Digitized by srujanika@gmail.com

ଏକଙ୍କୁ ଆରେକ କନ୍ୟା ହେଲେ ଠଗଠର
ଏକେ ଏକେ ଚହ୍ନିଲେ ସେ ହଂସା ବାଟ ଧରି ।

× × ×

ଚଉଠୀ ଦିନରେ ବେଳ ଦୁଇଘଡ଼ି ଠାରେ
ଭ୍ରମରବରଙ୍କୁ ବୁଢ଼ା ଦେଖିଲା ଆଗରେ
ଦେଖି କରି ବୁଢ଼ା ତାଙ୍କୁ ମନେ ବିଚାରଇ
ଘରଦ୍ୱାର ବୋହି ନେବ ରଜାର ଜୁଆଁଇଁ ।
ଖଟମିଛ କହି ମୋର ସାରିବ ସମ୍ପତ୍ତି
ଭ୍ରମରବର ଚରଣେ କଲାକ ବିନତି ।
ଭ୍ରମରବର ଚରଣେ ବୁଢ଼ା ପଡ଼ି ଶୋକ
ରାଜା ଜୋଇଁ ଦୋଷ ମୋର କ୍ଷମା କର ତୁହି ।
ଏହା ଦେଖି କୁମର ଯେ କର୍ଣ୍ଣେ ଦେଲା ହାତ
ମନେ ବିଚାରିଲା ପିତା କଲେ କିସ କୃତ୍ୟ ?
କନ୍ୟାଲାଗି ପିତା ସିନା ପଡ଼ିଲେ ଚରଣେ
କନ୍ୟା ମୁଖ ନ ଚାହିଁବି ନ ରହିବି କ୍ଷଣେ ।
ଏ ଧନ ସମ୍ପଦେ ମୋର କିଛି କାର୍ଯ୍ୟ ନାହିଁ
ଦୂର ଦେଶେ ଯିବି ଆଜ କା ମୁଖ ନ ଚାହିଁ ।
ଚିଢ଼ି ଧରି କୁମର ଯେ ଲେଖିଲା ଏମନ୍ତ
ତୋର ଲାଗି ଗୋଡ଼ତଳେ ପଡ଼ିଲେ ମୋ ପିତଃ ।
ଏହି ହେତୁ ସୁନ୍ଦରୀ ଲୋ ଯାଉଛି ବିଦେଶ
ରଙ୍ଗବର୍ଣ୍ଣା ମୋର ଆଉ ନ ଦେଖିବ ଦୋଷ ।

× × ×

ଏଥୁଅନ୍ତେ କଉତୁକ ଶୁଣ ମନ ଦେଇ
ଉଠିଲାକ ରଙ୍ଗବର୍ଣ୍ଣା ରାତ ଗଲା ପାହି ।
ନିଦ୍ରା ଆଶକତ ହୋଇ ଉଠିଲା ସୁନ୍ଦରୀ
ବୋଲେ କାହିଁ ଗଲେ କାନ୍ତ ମୋତେ ଏକା କରି ?

Digitized by srujanika@gmail.com

ଶେଯରୁ ଉଠି କୁମାରୀ ଏମନ୍ତ ଭାଳଲା
ଏରୁଣ୍ଡି ବନ୍ଧରେ ତାର ଦୃଷ୍ଟି ଯେ ପଡ଼ଲା
ଯାହା ଲେଖା ହୋଇଥିଲା ତାହା ଗଲା ପଢ଼ି
ଏହା ଶୁଣି ସାଧବାଣୀ କାନ୍ଦେ ମୁଣ୍ଡ କୋଡ଼ି ।
ସାଧବାଣୀ ବୋଇଲାରେ ଶୁଣ ସୌଦାଗର
ଦେଖ କିସ ଲେଖାଅଛି ଏରୁଣ୍ଡି ବନ୍ଧର ।
ଏହା ଶୁଣି କରି ମନେ ମନେ ଗଲା ପଢ଼ି
ମରମ ଅକ୍ଷର ବୁଢ଼ା ଦେଇ ଗଲା ଛୁଡ଼ି
ଏଣୁ ପଢ଼ୁଥାଇ ବୁଢ଼ା ତେଣୁ ପଢ଼ୁଥାଇ
ମରମ ଅକ୍ଷର ବୁଢ଼ା ଦିଅଇ ଗୋଳାଇ ।
ସାଧବାଣୀ ବୋଲେ ମୁଁ ତ ପାଠ ପଢ଼ିନାହିଁ
ଏ ଅକ୍ଷରଗୁଡ଼ିକ ତୁ ଦେଉଛୁ ଗଡ଼ାଇ ।
ଗୋଟି ଗୋଟି କରି ମୋର ପୁଅ ଦେଲୁ କାଢ଼ି
ଏତେ କହି ସାଧବାଣୀ କାନ୍ଦେ ମୁଣ୍ଡ କୋଡ଼ି ।
ବୁଢ଼ା ବୋଲେ ଭ୍ରମରବରଟି ଗଲା ଯେବେ
ରଜାଝିଅଠାରେ ତୁ ନଜର ରଖ ଏବେ ।
ଯେବେ ମୋର ପାଞ୍ଚ ବୋହୂ ଥିବେ ସଦନରେ
ତାଙ୍କ ଲାଗି ପାଞ୍ଚ ପୁଅ ଆସିବେ ମନ୍ଦରେ ।

# ଗୋବିନ୍ଦଚନ୍ଦ୍ର

( ମଉଦା, କଟକ, )

— ୧ —

ରାମ ଭଜ ପ୍ରାଣୀ ଗୋବିନ୍ଦ ଭଜରେ ଦେହ ଛଡ଼ିବାରେ ମନ
ମନ ଚିହ୍ନି ରଜା ଦେଶାନ୍ତର ଗଲେ ବଙ୍ଗ ଦେଶର ରାଜନ ।
ମାତାଏ ବୋଲନ୍ତି ଗୋବିନ୍ଦଚନ୍ଦ୍ରରେ ଯାଅ କନା ଯୋଗୀ ହୋଇ ।
ମୋହ ବୋଲ ଯେବେ କରିବୁରେ ବଳା ଯୁଗ ଯୁଗେ ଥିବୁ ରହି ।
ଯୁଗ ଯୁଗେ ଥିବୁ ଗୋବିନ୍ଦଚନ୍ଦ୍ରରେ ଯମ ନ ପାରିବ ଛୁଇଁ
ଆପଣା ଦେହକୁ ବଞ୍ଚାଇ କୁମର ବୁଲୁଥିବୁ ଦେଶ ଦେଶ ।
ପୁଅ ହିଁ କହନ୍ତି ମାତା ଜନନୀ କି ଶୁଣ ଗୋ ମୁକୁତା ଦେଈ
କଥାଏ କହିବ ମାତା ଗୋ ଜନନୀ କୋପ ନ କରିବୁ ଦେହି ।
ତୋର ମନେ ଯେବେ ଥିଲାଟି ଗୋ ମାତା ଯୋଗୀ କରିଦେବା ପାଇଁ
ଅଜ୍ଞାନର ବେଳେ ବାଳୁତର କାଳେ ଯୋଗୀ ନ କଲୁ କପାଇଁ ?
ସାତ ନାହିଁ ପାଞ୍ଚ ନାହିଁଟି ମୋ ମାତା ଏକା ନାମେ ଗୋବିନ୍ଦାଇ
ମୋତେ ଯେବେ ଯୋଗୀ କରିବୁ ଗୋ ମାତା କେମନ୍ତେ ଧରିବୁ ଦେହି ?(୧)
ତୁହି ଯେବେ ଯୋଗୀ ହେବୁରେ କୁମର ମୋତେ ହେବ ବଡ଼ ସୁଖ
ଯୁଗ ଯୁଗେ ଥିବୁ ଗୋବିନ୍ଦଚନ୍ଦ୍ରରେ ରହୁଁ ଥିବ ତୋର ମୁଖ ।
ତୋହର ପିତା ଥିଲା ମାଣିକଚନ୍ଦ୍ରରେ ମାଣିକେ ଉଜଳ ଦେହି
ମରିଗଲା ବେଳେ କୁମର, ସଙ୍ଗତେ ନ ଗଲୁରେ ଆମେ କେହି ।

---

(୧) ଦେହି—ଦେହ ଅର୍ଥରେ ବ୍ୟବହୃତ ।

Digitized by srujanika@gmail.com

ଏହି ହାତୀ ଘୋଡ଼ା ଏହି ପାଟଯୋଡ଼ା ତୋହର ବାପର ଥିଲା
ମରିଗଲା ବେଳେ ଗୋବର୍ଦ୍ଧନଚନ୍ଦ୍ରରେ ଚୁଡ଼ା ପଲଙ୍କରେ ଗଲା ।
ଜନ ଗୁରୁ ପାଞ୍ଚ ମେଳ ହୋଇକରି ମଶାନ(*) ପଦାକୁ ନେଲେ
କାଠ ଯୋଡ଼ାଏକ ମଧ୍ୟରେ ପକାଇ ପିତାଙ୍କୁ ଦହନ କଲେ ।
ତିନି ଦିନେ ତେଲ କଲୁଟରେ କୁମର ସାତ ଦିନରେ ସନ୍ତୋଷ
ଦଶ ଦିନେ ଦଶା ସରିଗଲା ବାବୁ ଏଗାରେ କଲୁ ଆମିଷ ।
ବାର ଦିନେ ପୁନ ସବୁ ସରିଗଲା ତେର ଦିନେ କଲୁଁ ଦୂର
ଏହା ପାଇଁ ପୁନ ତୋ ସଙ୍ଗେ ଲାଗିଛୁ ଯାଅ କନା ଯୋଗୀଘର ।
ପୁନ ହିଁ କହନ୍ତି ମାତା ଜନନୀ କି ଶୁଣ ଗୋ ମୁକୁତାଦେଈ
କଥାଏ କହିବି ମାତା ଗୋ ଜନନୀ କୋପ ନ କରିବ ଦେହି ।
ତୋର ମନେ ଯେବେ ଥିଲାଟି ଗୋ ମାତା ଯୋଗୀ କରିଦେବା ପାଇଁ
ବାଳୁତର କାଳେ ଅଜ୍ଞାନର ବେଳେ ଯୋଗୀ ନ କଲୁ କିପାଇଁ ?
ସତର ବରଷେ ଅଠରଗଣ୍ଡା ଗୋ ବିଭା କଲୁ କାହିଁ ପାଇଁ ?
କନ୍ୟାମାନଙ୍କର ନାମନ୍ତି ଗୋ ମାତା ତୋତେ ଦେଇଥିବା କହି ।
କନ୍ୟା ନାମେ ହୀରା କନ୍ୟା ନାମେ ମାଳା କନ୍ୟା ନାମେ ଗଜମୋତି
ଯନ୍ତ୍ର ଧରି ବୀଣା ବଜାଉଥିବ ଯେ ରାଜା ଝିଅ ସରସ୍ୱତୀ ।
ଶଶିକା କଇଁତା କୁଇଳି ବଣିତା ନାମ ଯେ ନକ୍ଷତ୍ରଚନ୍ଦ୍ର
ଚମ୍ପା ନାରଙ୍ଗ ଯେ ଆଦିତ୍ୟ ମାଳତୀ ମରୁଆ କୁନ୍ଦ ମାଳତୀ ।
ମୋତି ହୀରାବତୀ କରୁଣା ସେବତୀ କନ୍ୟାଙ୍କ ନାମ ମୋହର
ବେଦନା ପୋଦନା ଏଦୁଇ କନ୍ୟା ଯେ ସର୍ଗକୁ ହିଁ ପଟାନ୍ତର ।

— ୨ —

ବେଦନା ପୋଦନା ଏ ଦୁଇ କନ୍ୟା ଯେ ଦେବ କନ୍ୟାଏ ଅଟନ୍ତି
ତାହାଙ୍କ ବଦନ ଚୁହିଁଲେ ଗୋ ମାତା ତପୀ ତପ ଭଗ୍ନ ହୋନ୍ତି ।

---

(*) ମଶାନ—ମଶାଣି ।

Digitized by srujanika@gmail.com

ବେଦନା କନ୍ୟାକୁ ସଙ୍ଗତରେ ଦେଲେ ପ୍ରଭୁ ଖାଣ୍ଡା ଶୁଣୁଥିବ
ଏହି ଶୂଦ୍ରକନ୍ୟା ଦେଲେଟି ଗୋ ମାତା କାଳି ଯୋଗୀ ଘର ଯିବ ।
ଏହି ଶୂଦ୍ରକନ୍ୟା ନ ଦେଲେ ଗୋ ମାତା କାଳେ ହେଁ ଯୋଗୀ ନୋହିବ ।
ମାତାଏ ବୋଲନ୍ତି ଗୋବିନ୍ଦଚନ୍ଦ୍ରରେ ଅଜ୍ଞାନ ହୋଇଲୁ ତୁହି
ଯେତେ ବୁଝାଇଲି ଗୋବିନ୍ଦଚନ୍ଦ୍ରରେ ନ ବୁଝିଲୁ ମନ ଦେଇ ।
ଯେଉଁ ଶୂଦ୍ର କନ୍ୟା ପାଇଁ କରେ କଲି ତୋର ଯୋଗୀଘର ବାସ
ସେହି ଶୂଦ୍ରକନ୍ୟା ନେଉଛନ୍ତି ମାଗୁଣୁ ଗଳାକୁ ହୋଇବେ ଫାଶ ।
ବେଦନା ହୋଇବ ଗୋଡ଼ର ଶାଙ୍କୁଳୀ ପୋଦନା ହୋଇବ ଖିଳ
ବେନି ଗୋଡ଼ ତୋର ବନ୍ଧା ପଡ଼ିଥିବ ମାୟା ଶାଙ୍କୁଳୀ ମଧ୍ୟର ।
ବେଦନା ପୋଦନା ନ ବୋଲରେ ବଳା ମାୟା ବାଘୁଣୀଟି ସେହି
ମନୁଷ୍ୟ ରୂପରେ ଜାତ ହୋଇଛନ୍ତି ତୋର ପ୍ରାଣ ନେବା ପାଇଁ ।
ଯେଉଁଦିନ ବସେ ସୁନ୍ଦର ଯୁବତୀ ପୁରୁଷ ଡାହାଣ ପାଶେ
ବରଷକ ଆୟୁ ଛ'ମାସେ ତୁଟଇ ସ୍ତ୍ରୀଙ୍କ ନାକ ନିଶ୍ୱାସେ ।
ତିରୀ କି ନ ବୋଲ ଶିବେଣୀରେ ବଳା ତିରୀକି ନକର ସଖା
ଏକା ତିରୀ ଲାଗି ନାଶ କଲେ ରାମ ସୁବର୍ଣ୍ଣମୂର୍ଚ୍ଛା ଲଙ୍କା ।
ଦେବୀ ଦୁର୍ଗା ଲାଗି ଗୋବିନ୍ଦଚନ୍ଦ୍ରରେ ମୈଷାସୁର ଦୈତ୍ୟ ମଲା
ତ୍ରେମାକନ୍ୟା ଲାଗି ଗୋବିନ୍ଦଚନ୍ଦ୍ରରେ ବାଳୀ ପ୍ରାଣ ହରାଇଲା ।
ପଞ୍ଚାଳ କନ୍ୟାର ପାଇଁରେ କୁମର ପାଣ୍ଡବେ ବନେ ବୁଲିଲେ
ଯୋଗ ଶେଷ ହେଲା ବେଳକୁ କୁମର ପାଞ୍ଚଭାଇଙ୍କୁ ଖାଇଲେ ।
ତାହାଙ୍କ ଚରିତ ଗୋବିନ୍ଦଚନ୍ଦ୍ରରେ କହିବ କେତେ ବୁଝାଇ
ମୋହ ବୋଲ କର ଗୋବିନ୍ଦଚନ୍ଦ୍ରରେ ଯାଅ ବଳା ଯୋଗୀ ହୋଇ ।
ତୁ ଯେବେ ବୋଲୁଛୁ ଗୋବିନ୍ଦଚନ୍ଦ୍ରରେ ଏ ଧନ ସମ୍ପଦ ମୋର
ସବୁ ମିଛ ମାୟା ବଅର୍ଥ ସଂସାର କେହି ନ ଯିବେ ସଙ୍ଗର ।
ଆସିଅଛୁ ଏକା ଯିବୁ ତୁହି ଏକା ସାହସା(୧) ନୋହିବେ କେହି
ଡାହାଣ ହସ୍ତରେ ଯେ ଧର୍ମ ଅର୍ଜିଛୁ ପଥକୁ ସଙ୍ଗାଳ ସେହି ।
ଭଜ ବଳା ରାମ ନାମରେ କୁମର ମୁଖେ ବୋଲ ରାମ ନାମ

(୧) ସାହସା—ସହାୟ ଅର୍ଥରେ ବ୍ୟବହୃତ ।

Digitized by srujanika@gmail.com

ରାମ ନାମ ପଡ ନ ବୋଇଲେ ବଳା ବାନ୍ଧିନେବ କାଳଯମ ।
ସେ ପାପୀ ଚଣ୍ଡାଳ ବଡ଼ଇ ଦୁଷ୍ଟରେ ନ ଥାଇ ତାହାର ଦୟା
ପାଚିଲା ରଖିଲ ନିଅଇ କଣ୍ଠାରେ ଏଡ଼େ ନିର୍ଦ୍ଦୟ ତା ହିୟା ।
ମାଛି ରୂପେ ଯମ ଘରେ ପଶିଯିବ ଚଉର୍ଯ୍ୟ ପଣରେ ନେବ
ସବଂରଣୀ ତୋର ବସି କାନ୍ଦୁଥିବେ କେହ୍ନି ରଖି ନ ପାରିବ ।
ତୁ ଏବେ ବୋଲୁଛୁ ଗୋବନ୍ଧଚନ୍ଦ୍ରରେ ବେଦନା ପୋଦନା ସାର
ସବୁ ମିଛମାୟା ସ୍ୱାର୍ଥ ସଂସାର କେହ୍ନି ନୋହିବେ କାହାର ।
ଅପୁତ୍ରିକ କଷ୍ଟ ନ ହୁଅରେ ବଳା ଜୀବଧନ ଗୋବନ୍ଧାଇ
ଅପୁତ୍ରିକ ନାଶ ଯେ ସ୍ଥାନ ଧରଇ ସେ ଡାଳ ଛିଣ୍ଡି ପଡ଼ଇ ।

— ୩ —

ମାତା ମୁଁ କାନ୍ଦିବି ଯୁଗ ଯୁଗାନ୍ତର ଭଉଣୀ କାନ୍ଦେ ଛ'ମାସ
ଘର ଘରଣୀ ତ ଦିନା କେତେ କାନ୍ଦେ ପୁଣି ଲୋଡ଼େ ପରବାସ ।
ମୀନ ସିନା ଜାଣେ ଗହ୍ୱର ଗମ୍ଭୀର, ପକ୍ଷୀ ସିନା ଜାଣେ ଡାଳ
ମାତା ସିନା ଜାଣେ ପୁତ୍ରର ବେଦନା, ଗର୍ଭ ପୋଡ଼େ ନିରନ୍ତର ।
ବନ ବନସ୍ତ ତ ପୋଡ଼ିଲେରେ ଭଲ, ଜନଗତର(୧) ଜାଣନ୍ତି
ମାତା ଗର୍ଭ ଧାରୀ ହୃଦୟ ପୋଡ଼ିଲେ ତାହା କେହି ନ ଜାଣନ୍ତି ।
ପୁତ୍ର ହେଁ କହନ୍ତି ମାତା ଜନନୀ କି ଶୁଣ ଲୋ ମୁକୁତାଦେଈ
କଥାଏ ଏହିବ ମାତା ଗୋ ଜନନୀ କୋପ ନ କରିବୁ ଦେହି ।

× × ×

ମାତାଏ କହନ୍ତି ଗୋବନ୍ଧଚନ୍ଦ୍ରରେ ଶୁଣ କନା ମନ ଦେଇ
ଯାହା ପଚ୍ଛିଲୁ ଗୋବନ୍ଧଚନ୍ଦ୍ରରେ କହିବି ତୋତେ ବୁଝାଇ ।
ତୋହର ପିତାର ଆୟୁଷ ଥିଲାରେ ପଞ୍ଚସହସ୍ର ବରଷ
ମୋହ ବୁଦ୍ଧି ବଳେ ବଞ୍ଚାଇ ରଖିଲି ଛଅ ସହସ୍ର ବରଷ ।

---

(୧) ଜନଗତର – ଜଗତର ଲୋକେ

Digitized by srujanika@gmail.com

ମୁହିଁ ବସିଥିଲେ ପାପୀ ଯମ କଇ, ପଶି ତ ରେ ନ ପାରଇ
ହେନେକ ସ୍ୱାହାନ ପଢ଼ିଲ ବଳାରେ ଜାହ୍ନବୀ ଗଙ୍ଗାରେ(୧) ଯାଇ ।
ସ୍ନାହାନ ନିମନ୍ତେ ଗୋବର୍ଦ୍ଧନଚନ୍ଦ୍ରରେ ଶହେ କୋଶ ଗଲା ଧାଇଁ
ଜାହ୍ନବୀ ଗଙ୍ଗାରେ ଛଡ଼ ସ୍ନାନ କଲା ପିଣ୍ଡଦାନ ଦେଲା ତହିଁ ।
ଅନ୍ନଦାନ ଦେଲା ଗୋବର୍ଦ୍ଧନଚନ୍ଦ୍ରରେ ବସ୍ତ୍ରଦାନ ଦେଲା ତହିଁ
ଅଶ୍ୱଦାନ ଦେଲା ଗୋବର୍ଦ୍ଧନଚନ୍ଦ୍ରରେ ଗଜଦାନ ଦେଲା ତହିଁ ।
ଗଜଦାନ ଦେଲା ଗଜ ମୁଁ ମୁକୁତା ବ୍ରହ୍ମଜ୍ଞାନ ଜପୁଥିଲା
ଏମନ୍ତ ସମୟେ ଗୋବର୍ଦ୍ଧନଚନ୍ଦ୍ରରେ ଉତ୍ତରବାରତା ପାଇ ।
କି ତପ କରୁଛୁ ମୁକୁତା ଦେଈ ଲୋ, ଜଳରେ ବଶିବୁ ବର
ତୋ ଗିରସ୍ତ ତେଣେ ଯମ ବାନ୍ଧିନେଲା, କି କରିବୁ ଯାଇ ଘର ।
ଉତ୍ତରର ମୁଖରୁ ଏସନ ଶୁଣିଣ ଚକିତ ହୋଇ ରହିଲା
ଆହା ସ୍ୱାମୀ ! ଆହା ସ୍ୱାମୀ ! ବୋଲିଣ ମୁଁ ଘଡ଼ିଏ ବେଦନ କଲା ।
ପିନ୍ଧିଥିଲା କରେ ସୁବର୍ଣ୍ଣର ଚୁଡ଼ି ପାଣିକି ପକାଇ ଦେଲା
ଡାହାଣ ହସ୍ତର ଶଙ୍ଖା ଚୂଡ଼ି ମୁଠା ପଥରେ ତାହା ଭାଙ୍ଗିଲା ।
କାହିଁ ଆଜ ପିବୁ ବୃଦ୍ଧ ପାପୀ ଯମ, ଯଙ୍ଗେ ସଙ୍ଗେ ଚୋଡ଼ାଇଲା
ଭ୍ରମର ଉପରୁ ତା ଭ୍ରମର ଗୁମ୍ଫା ଦଣ ଦୁହୁଜା ଖୋଳିଲା ।
କାହିଁ ନ ଭେଟିଲା ସେ ପାପୀ ଯମକୁ ସିଂହଦ୍ୱାର ଯାଏ ଗଲା
ଯମ ସିଂହଦ୍ୱାରେ ଲୁହାର କବାଟ ବାମହସ୍ତେ ପିଟାଇଲା ।
ଅନାଇ ଦେଲା ଯେ ତାର ଜଗତିକି ବୃଦ୍ଧ ଯମ ବସିଅଛି
କାଳଯମ ଫାଶ ଧେନି ବୃଦ୍ଧ ଯମ ତଳକୁ ମୁଖ କରିଛି ।
ଖାଙ୍କର କେଶ ତ ବାନ୍ଧିଛି ବଳାରେ, ଯମ ତା ନିଜ ମୁଣ୍ଡର
ବଢ଼ି ପରପଞ୍ଚ ହଣଇରେ ବଳା ସେ ମୂଢ଼ ପାପୀ ଚଣ୍ଡାଳ ।
ବାମ ଗୋଡ଼ ତାର ଘୋଦରରେ ବଳା ଡାହାଣ ଆଖିଟି କଣା
ହାଙ୍କଣି ମହଣ ଲୁହାର ଠେଙ୍ଗୁଆ (୩) ଯମ ହସ୍ତରେ ଧାରଣା ।
ତେଇଶି ମହଣ ଚର୍ମର ଦଉଡ଼ି ଯମ କାନ୍ଧରେ ପଡ଼ିଛି
ତୋହର ପିତାଙ୍କୁ ବାନ୍ଧି ନେଇ କରି ଆଗରେ ଠିଆ କରିଛି ।

---

(୧) ମାତା, ଜନନୀ, ଗଙ୍ଗା, ଜାହ୍ନବୀ ଏକାର୍ଥ ବ୍ୟବହୃତ ।
(୨) ଠେଙ୍ଗୁଆ – ଠେଙ୍ଗା

Digitized by srujanika@gmail.com

ତୋହର ପିତାର ବାଜେଣୀ ଦେଖି ମୁଁ ମନେ ମହାକୋପ କଲି
ସେହି ଚର୍ମରଜ୍ଜୁ ସେଥିରେ ତୁମର ବୃଦ୍ଧ ଯମକୁ ବାନ୍ଧିଲି ।
ବାଳ ଧରି କରି ସେ ବୃଦ୍ଧ ଯମକୁ ବ୍ରହ୍ମରନ୍ଧ୍ରେ ମାଇଲି
ଗଳଗଣ୍ଡା (୧)-ମାରି ସେ ପାପୀ ଯେମକୁ ଭୂମିତଳେ ପକାଇଲି ।
ଯମ ବୋଲୁଅଛି ମୁକୁତାଦେଈଙ୍କୁ କାହିଁକି ମାରୁଛୁ ମାଡ଼ ?
ତୋର ଗିରସ୍ତର ଆୟୁଷ ପୂରିଲା ବାନ୍ଧିଆଣିଲେ ଢଟର ।
ମୋହ ବୋଲି ଯେବେ ଅପ୍ରତେ କଲୁ ଗୋ ପାଞ୍ଜି ପତ୍ର ଦେଖ ଯାଇ
ଅନେକ ଆୟୁଷ ଥିଲେ ଗୋ ମୁକୁତା ଶହେ ବରଷ ଦେବଇଁ ।
କହୁ ଛି ଯେବେ ଗୋ ନ ଥିବ ମୁକୁତା ମୁଁ କାହୁଁ ଆଣି ଭରିବି ?
ଯେତେ ଝିଂଘାସିଲେ ମୁକୁତା ଦେଈକୁ ଗଞ୍ଜଣା ସିନା ପାଇବି ।
ଯମ ବୋଲି କରି ଗୋବିନ୍ଦଚନ୍ଦ୍ରରେ ଯମକୁ ତ ଛାଡ଼ିଦେଲି
ଚିତ୍ରଗୁପ୍ତଙ୍କର ହସ୍ତରୁ ତୁମର ପାଞ୍ଜିପତ୍ର ଛଡ଼ାଇଲି ।
ପ୍ରଘଟ ନକରି ଗୋବିନ୍ଦଚନ୍ଦ୍ରରେ ମନେ ମନେ ପଢ଼ିଗଲି
ତୋହର ପିତାର ପାଞ୍ଜି ପଢ଼ୁ ପଢ଼ୁ ତୋହର ପାଞ୍ଜି ପଢ଼ିଲି ।
ଲେଖିଛି ଅଠର ପାଞ୍ଜି ସାତମାସ ପୂରିଲାରେ ଗୋବିନ୍ଦାଇ
ଆଉ ଷଡ଼ ଦିନେ ଯମଘର ଯିବୁ କୁଳର ଚନ୍ଦ୍ରମା ତୁହି
ମୋହ ବୋଲି କରି ଗୋବିନ୍ଦଚନ୍ଦ୍ରରେ ଯାଅ କନା ଯୋଗୀ ହୋଇ
କି ପାଞ୍ଜି ପଢ଼ିବି ଗୋବିନ୍ଦଚନ୍ଦ୍ରରେ ଲଲାଟେ ମାଇଲି କରି
ଏହାପାଇଁ ତୋର ସଙ୍କଟ ଲାଗିଛି ଯାଆ କନା ଯୋଗୀ ହୋଇ ।
କଥାଏ କହିବି ମାତା ଗୋ ଜନନୀ କୋପ ନ କରିବୁ ଦେହି
ତେତେ କି ମୋ ପିତା ନିମଦୋହି କଲେ କହନ କି ବୁଝାଇ ।
ମାତାଏ ବୋଲନ୍ତି ଗୋବିନ୍ଦଚନ୍ଦ୍ରରେ ଶୁଣ କନା ମନ ଦେଇ
ଯାହା ପଚାରିଲୁ ଗୋବିନ୍ଦଚନ୍ଦ୍ରରେ କହିବି ତୋତେ ବୁଝାଇ ।
ତୋହର ପିତାର ଗୁଣଟିରେ ବନା କହୁଛି କାଟଇ ପୁଣ
ଛ'ମାସ କହିଲେ ପାସୋର ନ ଯିବ ତୋହର ପିତାର ଗୁଣ ।
ତୋହର ପିତାର ଥିଲୁଟିରେ ପୁଅ ଅନେଶ୍ୱତ ମହାଦେଈ
ଅନେଶ୍ୱତ ମହାଦେଈଙ୍କ ଗର୍ଭରେ କାହାର ତ ପୁଅ ନାହିଁ ।

(୧) ଗଳଗଣ୍ଡା—ତଣ୍ଟିଆ

Digitized by srujanika@gmail.com

ପୁତ୍ର ନ ଥିବାରେ ତୋହର ପିତା ଯେ କଲେ ମୋତେ ନମଦୋଷ୍ଟି
ଖଣ୍ଡି ଏକ ଘର ତୋଳାଇ ଦେଲେ ଯେ ନିମବଣିକାରେ ଯାଇ ।
ସେତିଏ ଶୁଣିଲ ବୋଡ଼ିଏ କଉଡ଼ି ତୋହର ପିତା ହୋଇ
ସେହି ସେତିଏକ ସେହି ବୋଡ଼ିଏକ ଖୁଦିଭାଗ ମୁଁ କରଇ ।
ତହିଁରୁ ଖାଟେକ ଗୋବର୍ଦ୍ଧନଚନ୍ଦ୍ରେ ଦଉଁ ଦେବତାଙ୍କୁ ଦେଇ
ସକାଳରୁ ବେଳ ଉଦାପାଏ ମୁହିଁ ପଞ୍ଚମୁଠି ଭିକ ଦେଇ ।
ଆରଦିନେ ବଡ଼ ପ୍ରଭାତରୁ କଳା ଶିବ ଥାଳେ ଅନ୍ନ ଦେଇ
ସେହି ମତ କରି ତୋର ପିତା ମୋତେ ବାରବର୍ଷ ଛଡ଼ି ଦେଇ ।
ଗ୍ରାମରେ ନ ରଖି ଗୋବର୍ଦ୍ଧନଚନ୍ଦ୍ରେ ନିମ ବନିକାରେ ଥୋଇ
ଅତି ସୁକୁମାରୀ ରଜାର ଝିଅ ମୁଁ କଷ୍ଟ ସହି ନ ପାରଇ ।
ମା'ଆ ବାପାଙ୍କର ରାଜ୍ୟକୁ ମୋହର ଉଗର ପେଶାଇ ଦେଲି
ଆରେ ରେ ଉଗର ! ଆରେରେ ସୁଜାନ (୧)ଆଜ୍ଞାପରମାନେ ଚଳି
ମାତା ବସିଥିବ ମଉନା ସୁନ୍ଦରୀ ତା ଆଗେ କଷ୍ଟ କହିବୁ
ପିତା ବସିଥିବା ନାଉଚନ୍ଦ୍ର ରାଜା ତା ଆଗେ କଷ୍ଟ କହିବୁ ।
ବୋଲିବୁ ଝିଅର ବଙ୍ଗଦେବନେ ରାଜ୍ୟେ ଯାଇଁ
ସେ ଝିଅ ତୁମର କଷ୍ଟ ପାଉଅଛି ନିମ୍ବବନିକାରେ ରହି ।
ଆଜ୍ଞାପରମାନେ ସୁଜାନ ଉଗର ଧାଉକାରେ(୨) ଚଳିଗଲା
ମାସକର ବାଟ ସୁଜାଣ ଉଗର ଦଶଦିନରେ ମିଳିଲା ।
ମାତା ବସିଥିଲା ମଉନାସୁନ୍ଦରୀ ତା ଆଗେ ଦୁଃଖ କହିଲା
ପିତା ବସିଅଛି ନାଉଚନ୍ଦ୍ର ରାଜା ତା ଆଗେ କଷ୍ଟ କହିଲା ।
ଉଗର ମୁଖରୁ ଏସନ ଶୁଣିଣ ମାତା ମୋ ରୋଦନ କଲେ
ଆହା ମୋ ମୁକୁତା ! ବୋଲିଣ ଜନନୀ ଭୂମିରେ ଢଳି ପଡ଼ିଲେ ।
ବୋଇଲେ ଜନମ ପିତା ଦେଇଅଛୁ, କରମ ତ ଦେଇନାହିଁ
ଯାହାର କର୍ମରେ ଯାହା ଲେଖାଥାଇ, ଅବଶ୍ୟ ତାହା ଭୁଞ୍ଜଇ ।
ରୋଦନ ତେଜିଣ ମାତା ମୋ ମଉନା ଭଣ୍ଡାରପୁରକୁ ଗଲେ
ବାହୁକରି ଲକ୍ଷ ଟଙ୍କା ଯେ ସୁବର୍ଣ୍ଣ ନଅରରୁ ଆଣି ଦେଲେ ।

---

(୧) ସୁଜାନ—ସୁଜ୍ଞାନୀ
(୨) ଧାଉକାରେ – ଶୀଘ୍ର

Digitized by srujanika@gmail.com

ଯେତେକ ସୁବର୍ଣ୍ଣ ଗୋବର୍ଦ୍ଧନଚନ୍ଦ୍ରରେ ଲେଖାରେ ତାହା ଲେଖିଲେ
ସେସବୁ ସୁବର୍ଣ୍ଣଙ୍କୁ ଘେନିଣ ଓଗର ମୋ ପୁରେ ଆସି ମିଳିଲେ ।
ତହିଁରୁ ସୁବର୍ଣ୍ଣ ଖଣ୍ଡିଏ ଘେନିଣ ବଙ୍ଗବଜାରକୁ ଗଲି
ବଙ୍ଗ ବଜାରରେ ମୁଁ ତାହା ଭଞ୍ଜାଇ (୧) ଅନେକ କଉଡ଼ି କଲି ।
ଲକ୍ଷେ ଲକ୍ଷେ ଖଣ୍ଡ ବସନ ଘେନିଣ ସେବକ ସେବକେ ଦେଲି
ଲକ୍ଷେକ କଉଡ଼ି ଲକ୍ଷେକ ଧାନ ନଗରକୁ ବୁହାଇଲି ।
ସାତ ପଞ୍ଚ ଘୋଡ଼ା କିଣିରେ କୁମର ପାଏକାରେ ଖଟାଇଲି
ତୋହର ପିତାର ମହଲକୁ ଗୃହଁ ଦୁଲହି ମହଲ କଲି ।
ତୋହର ପିତାର ଦଣ୍ଡ ଆଣି ନବ ନ ପଣତ ଝାଡ଼ିବା ବେଳ
ତୋହର ପିତାର ନଜର ପଡ଼ିଲା ମୋ ରୂପ ସୁନା ନବରେ ।
ଆରେରେ ଓଗର, ଆରେରେ ସୁଜାନ ଆଜ୍ଞା ପରମାଣେ ଯିବୁ
ମୋହସର ସମ କେ ଘର ତୋଳନ୍ତି ତା ବାଳ ଧରି ଆଣିବୁ ।
କରପଦ୍ମ ଯୋଡ଼ି ଓଗର କହଇ ଶୁଣ ତୁମ୍ଭେ ବଙ୍ଗସାଇଁ
ଯେଉଁ ରାଣୀଙ୍କ ଯେ ନମଦୋହ୍ମା ଜଲ ନମ ବଣିକାରେ ନେଇ ।
ସେ ଝିଅ କୁମ୍ଭର ଘର ତୋଳାଇନ୍ତି ଘୋଡ଼ାପାଏକାରେ ରହି
ମୁଁ ପାଇଣ କପ କରିବ ଶୁଣନ୍ତୁ ତୁମ୍ଭେପର ବଙ୍ଗସାଇଁ ।

— ୬ —

ଓଗର ମୁଖରୁ ଏସନ ଶୁଣିଣ ସନ୍ତୋଷ ହୋଇ ରହିଲେ
ସୁବର୍ଣ୍ଣ କଟାଉ ଯୋଡ଼ିଏ ମାଡ଼ିଣ ମୋ ପୁରେ ବିଜୟ କଲେ ।
ତୋହର ପିତା ଆସିବାର ଖବର ଯୋଗ ନିଦ୍ରାରେ ଜାଣିଲି
ସୁବର୍ଣ୍ଣ ଝରରେ ନୀର ପୂରାଇ ମୁଁ ସିଂହଦ୍ୱାର ଯାଏ ଗଲି ।
ବାମ ପାଦ ଧୋଇ ତୋହର ପିତାର ଗଣ୍ଡକୁ ତାହା କ୍ଷେପିଲି
ବାମ ପାଦ ଧୋଇ ତୋହର ପିତାର ମୋ ଶିରେ କଉଡ଼ି ଦେଲି ।
ତୋହର ପିତାର ହସ୍ତ ଧରି କରି ଚନ୍ଦ୍ରଶାଳା ପୁରେ ନେଲି
ତୋହର ପିତାର ଚରଣ ଧରି ମୁଁ ଦଣ୍ଡଏ ରୋଦନ କଲି ।

---

(୧) ଭଞ୍ଜାଇ—ଭଙ୍ଗାଇ

Digitized by srujanika@gmail.com

ଗୃହମାସ ଯାଏ ତୋହର ପିତା ଯେ ମୋ ସୁତରେ ରହଣି କଲେ
ସବୁ ରାଣୀଙ୍କୁ ତ ପଛକରି ଯେତ ମୋତେ ପାଟରାଣୀ କଲେ ।
ସେହ୍ନ ଦିନୁଁ ବଳା ଗୋବର୍ଦ୍ଧନଚନ୍ଦ୍ରେ ମୋ ଗର୍ଭେ ରହିଲୁ ତୁହି
ମୋହର କଷଣ ଗୋବର୍ଦ୍ଧନଚନ୍ଦ୍ରେ କହିଲେ ସରିବ ନାହିଁ ।
ତୋହର ବିହୁନେ ଗୋବର୍ଦ୍ଧନଚନ୍ଦ୍ରେ ମୋ ମନେ ନ ଥାଇ ସୁଖ
ତୋହର ପାଇଁ ମୁଁ ଗୋବର୍ଦ୍ଧନଚନ୍ଦ୍ରେ ପଣତେ ମାଗଇ ଭିକ ।
ଅଠର ବରଷ ସରିଗଲା ପୁଅ ଏବେ ହେଲା ମୋ ମରଣ
ଝିଣ୍ଟିରେ ସେବା କରରେ କୁମର ସିଦ୍ଧି ହାଡ଼ିପା ଚରଣ ।
ହାଡ଼ିପା ଚରଣେ ସେବା ନ କରିଲେ ଝିଙ୍କି ନେବ କାଳଯମ
ହାଡ଼ିପା ହାଡ଼ିପା ନ ବୋଲ ବଳାରେ ହାଡ଼ିପାଦ କରଧ୍ୟାନ ।
ସାତ ସମୁଦ୍ରରେ ବୁଲି ଆଇଲା ଯେ ପାଦରେ ନ ଲାଗେ ପାଣି ।
ପୁଅ କହଇ ତ ମାତା ଜନନୀ କ ଶୁଣ ଗୋ ମୁକୁତା ଦେଈ
କଥାଏ କହିବି ମାତା ଗୋ ଜନନୀ କୋପ ନ କରିବ ଦେହି ।
ରାଜା ଗୋଟିକର ଭାରିଯା ଗୋ ମାତା ରାଜା ଗୋଟିକର ବୋହୂ
ରାଜା ଗୋଟିକର ଝିଅ ଅଟ ମାତା ଅନେସ୍ୱର ପୁରେ ଥାଉ ।
ଶ୍ରୀ ଗୁରୁ ଗୁମ୍ଫକୁ ବିଦ୍ୟା ପଢ଼ିବାକୁ କେମନ୍ତ ପ୍ରକାରେ ଯାଉ
ଘୋଡ଼ାଶାଳ ହାଣ୍ଡି ମୁକୁତା ଜନନୀ କ ପାଇଁ ମୁଖେ ବସାଉ ।

ସାଧବର ଝିଅ ମନ୍ତ୍ରୀର ଝିଅ ଯେ କଟୁଆଳ ଝିଅ ମୁହିଁ
ଗୁରୁ ସଖୀ ଆମ୍ଭେ ବିଦ୍ୟା ପଢ଼ୁଥିଲୁ ଧର୍ମ ମଣ୍ଡପରେ ଯାଇ ।
ବିଦ୍ୟା ପଢ଼ି ଆମ୍ଭ ଲେଉଟାଣି ବେଳେ ତୋ ଝିଅ ଯୋଡ଼ି ଗୋସାଇଁ
ଆକାଶ ମାର୍ଗରେ ଯାଉଛନ୍ତି ଏକା ସଙ୍ଗରେ କେହି ନାହିଁ ।
ଆପଣ ଗୋବରେଖ ଚଢ଼ି ଦଶରଥ ଶୂନ୍ୟ ମାର୍ଗେ ଯାଉଥିଲେ
ମୋହ ସନ୍ତାପଣ ବଢ଼ିବାର ପାଇଁ ରଥ ଚକକୁ ଅଣିଲେ ।
ବୋଇଲେ ରହ ଲୋ କନ୍ୟା ରହ ମୁଁ ବୋଲଇ ତୋତେ ।
ସାରବର ଶରଧା ଲାଗୁଅଛି ଆଜ ଆଣିଦେବୁ ମୋତେ ।
ମାଗୁ ଅଛଥି ରତନ ବସନ ବୋହାଇ ଦେବଇଁ କେତେ
ଖୋଲି ପୁରାଇ ଦେବ ଅଛଥି ମୁଣ୍ଡିକୁ ଦେବଇ ଥୋକେ ।

Digitized by srujanika@gmail.com

—୭—

ଅଧିକ ତୃଷା ଯେବେ ତୁ ମଣିବୁ ଶିରକୁ ଟୋକାଏ ଦେବୁ
ଅତିଥିର ହସ୍ତଧରି ବନା ସିଂହଦ୍ୱାର ଯାଏ ମୁଁ ଗମିଲି
ସିଂହଦ୍ୱାରେ ମୁଁ ଯେ ଅତିଥି ବସାଇ ଜାହ୍ନବୀ ଗଙ୍ଗାରେ ଚଳି
ଜାହ୍ନବୀ ଗଙ୍ଗାରେ ବୁଡ଼ି ସ୍ନାନ କଲି ପିଣ୍ଡଦାନ ତହିଁ ଦେଲି ।
ମହାଦେବ ସେବା କଲାରେ କୁମର ବେଷାଇ ଘରେ ମିଳାଲି ।
ପ୍ରଥମ ଭଣ୍ଡାରେ ପଶିଲାରେ ବନା ତହିଁ ସୁବର୍ଣ୍ଣ ପାଇଲା
ଦ୍ୱିତୀୟ ଭଣ୍ଡାରେ ପଶିଲାରେ ବନା ତହିଁ ଅନ୍ନ ନ ପାଇଲା ।
ଘୋଳଦଧି ସ୍ଥରେ ପଶିଲାରେ ବନା ତହିଁ ନ ପାଇଲା ସର
କ୍ଷୀର ଭାଣ୍ଡମାନ ଖୋଜିଲାରେ ବନା ତହିଁ ନ ପାଇଲା କ୍ଷୀର ।
ଚୌଷଠୀ ଭଣ୍ଡାର ଖୋଲି ମୁଁ ଦେଖିଲି କାହିଁ ନ ପାଇଲି ଭାତ
ଅନାଇ ଦେଲି ମୁଁ ଘରୁ ବାହାରକୁ ବସିଛୁ ଗୋରଖନାଥ ।
ବୋଇଲି ଏବେ ମୁଁ କି ବୁଦ୍ଧି କରିବି କମାଇ ଅନ୍ନ ଯାଚିଲି
ଆଶା ପାଳକରି ଅତିଥି ବସିଛୁ କି ଦେଇ ତାଙ୍କୁ ତୋଷିଲି ?
ମୋହର ମନରେ ବିଚାର କରିଣ ଅନେକ ସନ୍ତାପି ହେଲି
ସୁବର୍ଣ୍ଣ କଟୋରା ପକାଇରେ ବନା ବହୁତ ରୋଦନ କଲି ।
କାନ୍ଦୁ କାନ୍ଦୁ ଅବା କି ମନେ ପଡ଼ିଲା କାଞ୍ଜିରେ ମାଇଲି ହାଥ
ବାରବର ସର କାଞ୍ଜି ପାଣି ହାଣ୍ଡି ଉଛୁଳୁ ଅଛଇ ଭାତ ।
ମୁଠି ମୁଠି କରି ଗୋବିନ୍ଦଚନ୍ଦ୍ରରେ ସାତମୁଠି ତପୁଡ଼ିଲି ।
—ବାଡ଼ରେ ଥିଲା ତ ଝଙ୍ଗସାରୁଡ଼ଛ ନିମ ମୋଞ୍ଜ୍ରିଏ ରାନ୍ଧିଲି ।
ନାନାଦି ପ୍ରକାର ରନ୍ଧନ କରିଣ ସବୁ ଏକ ଠାବ କଲି
ସୁବର୍ଣ୍ଣଥାଳୀରେ ଅନ୍ନ ପୂରାଇ ମୁଁ ସିଂହଦ୍ୱାର ଯାଏ ଚଲି ।
ଯେଉଁ ଠାବେ ବସିଥିଲା ଅତିଥି ତ ସେ ଠାବରେ ଆଜ ନାହିଁ
ଜଣେ ଜଣେ ପଚାରଇ କୁମରରେ କେହି ତ କହିଲେ ନାହିଁ ।
ହାଟ ବଜାରରେ ଖୋଜିଲେରେ କୁମର ଘାଟ ବଜାର ଖୋଜଇ
ରଙ୍ଗ ବଜାର ଖୁଜିଇଁରେ କୁମର ରଙ୍ଗ ବଜାର ଖୁଜଇଁ ।
ଯେଉଁ ଅତିଥିକୁ ଅନ୍ନ ଯାଚିଥିଲି ଦେଖିଥିଲ ଆହେ ନାହିଁ ।

Digitized by srujanika@gmail.com

ଅନାଇ ଦେଲି ଯେ ଘର ବାହାରକୁ ଗୋରେଖ ବସି ଅଛଇ ।
ଏକା ଜଣେ ବିନା ଅନ୍ନ ଯାଚିଥିଲି—ବାରକୋଟି ସିଦ୍ଧ ଠାଇଁ
ଅନ୍ନଥାଳୀ ଏକ ମୋ ହାତରେ ଥୋଇ ମୁଁ ସହସ୍ରେ ଭଡ଼ା ହୁଞ୍ଚିଲି :
ବୋଲନ୍ତେ କାହିଁକି ଘୁଞ୍ଚୁଛୁ ମୁକୁତା ଅନ୍ନ ପରଷ ତୁ ନେଇ
କି ଅନ୍ନ ପ୍ରସିବ (୧) ଗୋରେଖ ଗୋସାଇଁ କର୍ଣ୍ଣେ ମହାମନ୍ତ୍ର ନାହିଁ !
ସେହି କ୍ଷଣି ଗୋରେଖ ଗୋସାଇଁ କର୍ଣ୍ଣେ ମହାମନ୍ତ୍ର ନାହିଁ ।
କର୍ଣ୍ଣେ ମହାମନ୍ତ୍ର ଦେଇ ଗୁରୁଦେବ ଅନ୍ନ ପରଷ ବୋଇଲେ ।

—୮—

ପ୍ରଥମରେ ଭୁଞ୍ଜ ଯୋଗାଏ ଗୋ ସତ୍ତା ହର ପାର୍ବତୀଙ୍କ ପାଇଁ
ଦ୍ୱିତୀୟ ଅନ୍ନ ତୁ ଯୋଗାଅ ଗୋ ସଖୀ ମଚ୍ଛିନ୍ଦ୍ର ନାଥଙ୍କ ପାଇଁ ।
ଗୋରେଖ ସୁମରି ଅନ୍ନ ତୁ ପରଷ ବାରକୋଟି ସିଦ୍ଧ ଠାଇଁ
ଗୋରେଖଙ୍କ ଆଜ୍ଞା ଶିରରେ ଘେନିଣ ଅନ୍ନ ପରଷିଲି ନେଇ ।
ଚିତ୍ତ ଦୃଢ କରି ଗୋବିନ୍ଦଚନ୍ଦ୍ରରେ ଅନ୍ତରେ କୁଣ୍ଠ ନ ଥୋଇ
ଅନ୍ନ ଇଚ୍ଛାଏ ଅନ୍ନ ଥୁଆ ହୋଇଛି ଭୁଞ୍ଜିଣ ସନ୍ତୋଷ ହୋଇ ।
ସତ୍ତା ଅନ୍ନ ବୋଲି ସମସ୍ତେ ମୁଖେ ବୋଇଲେ
କୋଳରେ ବସାଇ ଗୋରେଖ ଗୋସାଇଁ କଲ୍ୟାଣ ମୋତେ ବାଞ୍ଛିଲେ ।
ଆଜୁଁ ଆମ୍ଭ ସଙ୍ଗେ ଜଣେ ହେଲୁ ବୋଲି ସମସ୍ତେ ମୁଖେ ବୋଇଲେ ।
ଅଗ୍ନିରେ ନ ପୋଡ଼ିବୁ ସତ୍ତା ଗୋ ମୁକୁତା ଖଡ଼୍ଗେ ନ ଛିଡ଼ିବୁ
ସାତ ଶତ ପବନ ବହିଲେ ତହିଁରେ ତୁ ନ ଉଡ଼ିବୁ ।
ଅତି କଷ୍ଟେ ତୋର ପୁତ୍ର ଜାତ ହେବ ତାକୁ ଯୋଗୀ କରିଦେବୁ ।
ଏମନ୍ତ ବୋଲିଣ ଗୋରେଖ ଗୋସାଇଁ ସେଠାରୁ ହେଲେ ଅନ୍ତର
ମୋହବୋଲ କରି ଗୋବିନ୍ଦଚନ୍ଦ୍ରରେ ଯାଅ କି ନା ଯୋଗୀ ଘର ।
ପୁତ୍ର ହିଁ କହନ୍ତ ମାତା ଗୋ ଜନମା ଶୁଣ ଗୋ ମୁକୁତା ଦେଈ
କଥାଏ କହିବି ମାତା ଗୋ ଜନମା କୋପ ନ କରିବୁ ଦେହି ।
ତୋର ମନେ ଯେବେ ଥିଲାଟି ଗୋ ମାତା ଯୋଗୀ କରିଦେବା ପାଇଁ
ବାଳୁତର କାଳେ ଅଜ୍ଞାନର ବେଳେ ଯୋଗୀ ନ କଲୁ କିମ୍ପାଇ ?

(୧) ପ୍ରସିବ—ପରଷିବ

Digitized by srujanika@gmail.com

ମାଳାନେଇ ମୋତେ ବଶ କରାଇଲୁ ମାଲ୍ୟବନ୍ତ ରଜା ଝିଅ ।
ଚନ୍ଦନ ଦେଇଣ ବଶ କରାଇଲୁ ହରିଶ୍ଚନ୍ଦ୍ର ରଜା ଝିଅ ।
ଧନ ଦେଇଣ ତୁ ବଶ କରାଇଲୁ ଧନେଶ୍ୱର ରଜା ଝିଅ
ପଦ୍ମମାଳ ନେଇ ବଶ କରାଇଲୁ ପଦ୍ମବନ ରଜା ଝିଅ ।
ଅଷ୍ଟ ଶହ ଧାରେ ବଶ କରାଇଛୁ ରୋଦନା ସାନ ଭଉଣୀ ।
ରୋଦନା କାନ୍ଦିବ ପୋଦନା କାନ୍ଦିବ, କାନ୍ଦିବ ଡାଳର ଶୁଆ
ଏଡ଼େ ମଧୁବନ କାହାକୁ ଦେବ ଗୋ କେ ହେବ ବାଡ଼ର ଶୁଆ ।
ମାଟି ଖଡ଼ ଦେଇ କଣ୍ଢି ରଞ୍ଜାଇଲ ରଜାବୋଲି ବାଡ଼ ଘର
ଏ ମୋ ଘର ଦେଖିଣ ଆସ ଗୋ ମାତା ସୁବର୍ଣ୍ଣମୟୀ ନଗର ।
ହାଣ୍ଡି ଜାତ କଲ ଗଜମୁଁ ମୁକୁତା ପୋଇଲି କଲଇଁ ଶ୍ରେଣୀ
ନବଖଣ୍ଡ କରି ମୁଁ ଘର ତୋଳିଅଛି ସବୁ ସୁବର୍ଣ୍ଣ ଛାଉଣୀ ।
ରୂପାମାନଙ୍କର ଖମ୍ବ କଲ ମାତ ସୁବର୍ଣ୍ଣ କଲଇଁ ବତା
ଗଣି ଗଣି କରି ଲାଗିଅଛି ମାତା ଛ' କୋଡ଼ି ରଞ୍ଜ ମୁକୁତା ।
ରଜା ହେବା ବଡ଼ ସୁଖ ଗୋ ଜନନୀ ଯୋଗୀ ହେବା ବଡ଼ ଦୁଃଖ
ନ ମାନନ୍ତ ଯୋଗୀ ଖରା ଗୋ ବରଷା ବୁଲି ମାଗୁଥାନ୍ତି ଭିକ !

—୯—

ରଜା ହେଲେ କି ତ ମରିବ ଜନନୀ, ଯୋଗୀ ହେଲେ କି ମରିବେ ?
ଛାର ମରଣର ପାଇଁ ଗୋ ଜନନୀ ଯୋଗୀ ଥାଳରେ ଭୁଞ୍ଜିବ ?
ଏ ସୁଖ ସମ୍ପଦ ତେଜି କରି ଗୋ ମାତା କାଳେ ତ ଯୋଗୀ ହୋଇବ ।
ମାତା ଏ ବୋଲନ୍ତି ଗୋବିନ୍ଦଚନ୍ଦ୍ର ରେ ଅଜ୍ଞାନ ହୋଇଲୁ ତୁହି
ଯେତେ ବୁଝାଇଲି ଗୋବିନ୍ଦଚନ୍ଦ୍ରରେ ନ ବୁଝିଲୁ ମନ ଦେଇ ।
ମୋହ ବୋଲି ଏବେ ଗୋବିନ୍ଦଚନ୍ଦ୍ରରେ ଯାଅ କନା ଯୋଗୀ ହୋଇ
ମାଆ ପୁଅଙ୍କର ବୁଝାମଣା ଛାଡ଼ି ଏହି ଠାବରେ ଭଣଇ ।

Digitized by srujanika@gmail.com

# ଗୋବିନ୍ଦଚନ୍ଦ୍ର

(ପରମାଣପୁର, ସମ୍ବଲପୁର)

—୨—

ମୁଖ ପଖାଳଣ ରାଜା ପାଦ ପଖାଳିଲେ
ଡାଳିମ୍ବାପୁରରେ ରାଜା ପ୍ରବେଶ ହୋଇଲେ
ସୁବର୍ଣ୍ଣ ପିଢ଼ାରେ ରାଜା ବିଜେ କଲେ ଯାଇ
ଧବଂଶାଳୀ ଅନ୍ନ ରାଣୀମାନେ ଦେଲେ ନେଇ ।
ଷାଠିଏ ବ୍ୟଞ୍ଜନ ଆଣି ରାଜା କରେ ଦେଲେ
ବର୍ଢଣ ରାଜନମଣି ଆନନ୍ଦେ ଭୁଞ୍ଜିଲେ ।
ଭୁଞ୍ଜିସାର ରାଜନ ଆଚମନ କଲେ
ଗଜ ପଲଙ୍କରେ ଯାଇ ରାଜା ବିଜେ କଲେ ।
ବଡ଼ଆ ତାମ୍ବୁଳ ରାଜା ଭୁଞ୍ଜିଲେକ ଯାଇ
ଅତର ଚନ୍ଦନ ରାଜା ଅଙ୍ଗରେ ଲେପଇ ।
କାହାକୁରେ କିଛି ରାଜା କଥା ନ କହିଲେ
ଗଜ ପଲଙ୍କରେ ରାଜା ବେଗେ ନିଦ୍ରା ଗଲେ
ରାତ ଅର୍ଦ୍ଧ ଘଡି ଥିଲ ଉଜାଗର ହେଲେ
ମାତା ଯେ ମୁକୁତା ଦେଖି କହୁଛି ବୋଇଲେ ।

Digitized by srujanika@gmail.com

ମାତା ଯେ ମୁକୁଟା ଦେଇ କହୁଛନ୍ତି ମୋହର
କାଲି ପ୍ରଭାତରୁ ଯିବୁ ମରଡ଼ା ଶାଳର ।
ରାତ୍ର ନ ପାହୁଣୁ ରାଜା ବନ୍ଧନ ଉଠିଲେ
ସୁବାସିତ ଜଳେ ରାଜା ମୁଖ ପଖାଳିଲେ ।
ସୁବର୍ଣ୍ଣ କଟାଉ ରାଜା ପଦ୍ମରେ ମାଡ଼ିଲେ
ଉେଶ ବେତକୁ ରାଜା ହସ୍ତରେ ଧରିଲେ ।
ଧୀରେ ଧୀରେ ରାଜନ କରିଲେ ଗମନ
ମରଡ଼ା ଶାଳରେ ଲୁଚି ବସିଲେ ବନ୍ଧନ ।

ଏହି ସମୟରେ ଜେଣେ ପାହିଲା ରଜନୀ
ତାମ୍ରଚୂଡ଼ ରଡ଼ ଯେ ଶୁଭିଲା ଶଙ୍ଖ ଧ୍ୱନି ।
ପ୍ରଭାତରୁ ହାଡ଼ିପା ବନ୍ଧନ ଉଠିଲେ
ସୁବାସିତ ଜଳେ ହାଡି ମୁଖ ପଖାଳିଲେ ।
ହାଡ଼ିପା ଗୋସାଇଁ ଘରୁ ବାହାରିବା ବେଳେ
ପଛରେ ଗୋଡ଼ାଇଲା ତା ବାଳୁତ କୁମରେ
ହାଡ଼ିପାର ଅଟଇ ଏକ ବାଳ ବସ୍ତ୍ରି
ନ ରହି କୁମରମଣି ଗୋଡ଼ାଇ ଆସୁଛି ।
ହାଡ଼ିପା ବୋଇଲେ ବାବୁ ଦଣ୍ଡେ ମାତ୍ର ରହ
ଏକ୍ଷଣି ଆସିବି ମୁଁ ବଳକ ତୁ ନୁହ ।
ନ ରହି କୁମରମଣି ପଛେ ଗୋଡ଼ାଇଲା
ମରଡ଼ା ଶାଳରେ ଯାଇ ପ୍ରବେଶ ହୋଇଲା ।
ଧାଡ଼ି ଧାଡ଼ି ବଙ୍ଗବାଣ ଟୋଠା ବୃକ୍ଷମାନ
ଫଳଭର ହୋଇ ବୃକ୍ଷ ହୋଇଛି ଶୋଭନ ।
ବାଏ ଲୋ ବରଡ଼ାପତ୍ର ଶବଦ ବରଇ
ପଡ଼ିଡ଼ କାନ୍ଦକ ଶୁହିଁ କୁମର କାନ୍ଦଇ ।
ହାଡପା ବୋଇଲେ ବାବୁ ରାଜାର ପଲିଡ଼
ଟୋଠାଳିଆ (୧) ଦେଖିଲେ କରିବ ମାଡ଼ଗୋଳ ।

(୧) ଟୋଠାଳିଆ—ଟୋଠା ଜଗୁଆଳୀ ।

Digitized by srujanika@gmail.com

ଶୁଣି ହାଡ଼ି କୁମର ବେଣ୍ଠା କାନ୍ଧ ଲେଉଟେ ଚଢ଼ି
ହେ ପିତା ବୃକ୍ଷରୁ ମୋତେ ଦିଅ ଫଳ ତୋଳି ।
ପୁତ୍ରର ବଚନ ହାଡ଼ି ସହି ନ ପାରିଲେ
ଆସ ବୃକ୍ଷରାଜ ବୋଲି କଣ୍ଠକ ଡାକିଲେ
ହାଡ଼ିପାର ଡାକନ୍ତେ ବୃକ୍ଷ ନଟିକାଳ (୧)
ଆକାଶର ବୃକ୍ଷ ଶୋଇ ପଡ଼ିଲା ତଳର ।
ସେ ବୃକ୍ଷରୁ ଫଳ ଗୋଟି ହାଡ଼ିପା ତୋଳିଲେ
କୁମର ହସ୍ତରେ ଫଳ ଧରାଇଣ ଦେଲେ ।
କୁମର ବୋଇଲେ ପିତା ଦିଅ ଆର ଗୋଟି
ନାସ୍ତି କଲେ ହାଡ଼ିପା ବୃକ୍ଷ ଗଲା ଉଠି
ଯେଉଁଠାରେ ବୃକ୍ଷ ଯାଇ ସେଠାରେ ରହିଲେ
ଫଳ ଦେନ କୁମର ବାହୁଡ଼ି ଘର ଗଲେ ।
ଧୀରେ ଧୀରେ ହାଡ଼ିପା ଗମନ କରିଲେ
ଝୋକାଇ କୁଣ୍ଡାଙ୍କ ହାଡ଼ିପା ଅଜ୍ଞା ଦେଲେ ।
ହାଣ୍ଡି ନେଇ ପକାଏ ଗୋମୟ ପାଣି ଗୋଳି
ପରେଡ଼ ବୃକ୍ଷର ଡାଳ (୨) ଦେଲେକ ପର୍ଣ୍ଣର(୩)
କୋଡ଼ି ଯେ କୋଦାଳ ଝାଟୁଆ ତୋଳି ଦେଲେ
ଝୋକାଇ ନେଇଣ ଗ୍ରାମ ବାହାରେ ଫିଙ୍ଗିଲେ ।
ଯେ ଯାହାର କର୍ମମାନ ନିଶ୍ଚିନ୍ତେ ସାରିଲେ
ଯେ ଯାହାର ସ୍ଥାନେ ପୁତ୍ରା ରହ ଯେ ବୋଇଲେ ।
ହାଣ୍ଡିକି ବୋଇଲେ ତୁରେ ଅମର ହୋଇବୁ
ମାଟିରେ ନ ମିଶିରେ ପାଷାଣକୁ ନ ଯିବୁ(୪) ।
କୋଡ଼ିକି ବୋଇଲେ ତୁରେ ତିନି ସାଲ ଯିବୁ
ତିନି ସାଲ ଉତ୍ତାରୁ ଠୁଣ୍ଟା ହୋଇଥିବୁ ।

---

(୧) ନଟିକାଳ—ନାରକେଳ

(୨) ପରେଡ଼ ବୃକ୍ଷର ଡାଳ—ଝଡ଼ିକା ।

(୩) ପର୍ଣ୍ଣର – ପହଁର ।

(୪) ମାଟିରେ ନ ମିଶି—ମାଟିରେ ମିଶିବୁନାହିଁ କି ପଥରରେ ଗଣା ହେବୁନାହିଁ ।

Digitized by srujanika@gmail.com

ଗୁଞ୍ଜୁଣିକ ବୋଇଲେ ରେ ଦୁଇ ମାସ ପିବୁ
ଦୁଇ ମାସ ଉତ୍ତରୁ ଠର୍ଣ୍ଣି (୧) ହୋଇଥିବୁ ।
ଖୋକାଇକ କହିଲେ ତୁ ବରଷେ ରହିବୁ
ବରଷେ ଉତ୍ତରୁ ଗ୍ରାମ ବାହାରେ ପଡ଼ିବୁ ।
ଏହିପରି ହାଡ଼ିପା କଲ୍ୟାଣ ବାଞ୍ଛିଲେ
ଆପଣା ମନ୍ଦିରକୁ ହାଡ଼ିପା ଚଳିଗଲେ ।
ତାହା ବସି ଦେଖୁଥିଲେ ଗୋବିନ୍ଦ ରାଜନ
ଯାଇ ଜଣାଇଲେ ଯେ ମାତାର ସନ୍ନିଧାନ ।
ଯାହା ତୁ କହିଲୁ ମାତ ମୋହର ଅଗ୍ରତେ
ପ୍ରତକ୍ଷରେ ଦେଖିଲି ମୋହର ବେନ ନେତ୍ରେ ।
ଏବେ ଗୁରୁ ଚରଣେ ମା ଭେଟ କର ନେଇ
ଗୁରୁର ଚରଣେ ସେବା କରିବି ଗୋ ମୁହିଁ ।
ମୁକୁତାଦେଈ ବୋଇଲେ ଶୁଣରେ କୁମର
ଛାର ହାଡ଼ି ଚରଣ କି ଛୁଇଁବୁ କୁମର ?
ଛତିଶ କୁଳରେ ଶ୍ରେଷ୍ଠ ବ୍ରହ୍ମ ଜାତି ସାର
ଶୂଦ୍ର ବୈଶ୍ୟ କ୍ଷତ୍ରୀ ଯେ ଆବର ଦ୍ୱିଜବର ।
ସବୁଠାରୁ ପାପିଷ୍ଠ ହୀନ ଜାତି ହାଡ଼ି
ତାହାର ଛାୟା ମାଡ଼ିଲେ ପାତକ ହିଁ ବଢ଼ି ।
କୁମର ବୋଇଲେ ମାତ ନ ବୋଲ ଏମନ୍ତ
ଧର୍ମ ଥିଲେ କାଳ କର୍ମ ନ ମେଣ୍ଟିବ ମାତ ।
ପାପ ବାଧା ନିମନ୍ତେ ସମର ନ ଗଛଇ
ଅପ୍ରାଧ ଅର୍ଜିବା ଲୋକ ଦୋଷ ମୁରୁଛଇ ।
ପୁରାଣ ଶୁଣଇ ମାତଗୋ ସପ୍ତ ଦଣ୍ଡ ଯାଏ
ସୂରୁଯ ଦେବତାଙ୍କୁ ମୋର ତିନିଦଣ୍ଡ ଧ୍ୟାଏ ।
ତୁ ଯେ ଗର୍ଭଧାରୀ ମାତା ଅଟୁ ଗୋ ମୋହର
ତୋର ପାଦ ରଜ ଧୂଳି ଘେନଇ ଶିରର ।

---

(୧) ଠର୍ଣ୍ଣି—ମୁଣ୍ଡା କୋଡ଼, ମୁଣ୍ଡା ଗୁଞ୍ଜୁଡ଼ି ।

Digitized by srujanika@gmail.com

ଯେତେବେଳେ ଜନନୀ କର୍ଣ୍ଣରେ ଶୁଣିଲେ
ଚମ୍ପୁର ପୂଜାକୁ ଅଷ୍ଟରମ୍ଭ ଭିଆଇଲେ
ଚମ୍ପୁର ପୂଜାକୁ ଅଷ୍ଟରମ୍ଭ ଗୁଙ୍ଗୁଡ଼ାଏ
ଫୁଲମାଳ ସଜାଡ଼ିଲେ ଥୋକାଏ ଥୋକାଏ ।
ନଶା ଘଣ୍ଟ ବାହାରିଲେ ସଙ୍ଗେ ନାହିଁ କେହି
ନଶାକାଳେ ମାଆ ପୁଅ ଗଲେକ ଚଳାଇ
ପ୍ରବେଶ ହୋଇଲେ ଯାଇ ହାଡ଼ିପାର ଦ୍ୱାର
ହାଡ଼ିପା ବୋଲିଣ ଯେ ଡାକିଲେ ସତ୍ତର
ଯେତେବେଳେ ହାଡ଼ିପା କର୍ଣ୍ଣରେ ଶୁଣିଲେ
ଏତେ ରାତି ମୋତେ କେହୁ ଡାକୁଛୁ ବୋଇଲେ ।
ମୁକୁତାଦେଈ ବୋଇଲେ ହାଡ଼ିପାକୁ ଚାହିଁ
ଏ ମୋହର ଡାକ କର୍ଣ୍ଣେ ଶୁଭିଲା ତ ନାହିଁ ।
ନଅ ନିତି ବାଜ ଛାଟି ଖଟ୍ଟରେ ମୋହର
ଏ ମୋହର ଡାକ କର୍ଣ୍ଣେ ନ ଶୁଭିଲା ତୋର ।
ତେତେବେଳେ ହାଡ଼ିପା କର୍ଣ୍ଣରେ ଶୁଣିଲେ
ମୁକୁତାଦେଈ ପାଶେ ପ୍ରବେଶ ହୋଇଲେ ।
ହାଡ଼ିପା କହଇ ଯେ ମୁକୁତା ମୁଖ ଚାହିଁ
ଏତେ ରାତକାଳେ ମାଗୋ ଡାକିଲୁ କପାଇଁ ?
ମୁକୁତାଦେଈ ବୋଇଲେ ହାଡ଼ିପାକୁ ଚାହିଁ
ଏ ପୁତ୍ର ଗୋଟିକ ମୋର ରକ୍ଷା ଦିଅ ନେଇ ।
ଏ ପୁତ୍ର ଗୋଟିକ ମୋର ତୁମ୍ଭେ ରକ୍ଷା ଦିଅ
କାଳଯୁଗେ ଅମର ହେଉ ମୋର ପୁଅ ।
ମୁକୁତାଦେଈ ବୋଇଲେ କୁମରକୁ ଚାହିଁ
ଏହାଙ୍କ ଚରଣ ସେବା କର ପୁଅ ଯାଇ
ଯେତେବେଳେ କୁମର କର୍ଣ୍ଣରେ ଶୁଣିଲେ
ଫୁଲମାଳ ନେଇ ହାଡି ଗଳେ ଲମ୍ବାଇଲେ ।
ଫୁଲମାଳ ନେଇ ହାଡ଼ି ଗଳେ ଲମ୍ବାଇଲା
ସାଷ୍ଟାଙ୍ଗ ହୋଇ ହାଡ଼ିପା ଚରଣେ ପଡ଼ିଲା ।

Digitized by srujanika@gmail.com

ହାଡ଼ିପା ବୋଇଲେ ପୃଥୀ ଅନ୍ୟାସ୍ତୁ ହୋଇଲ
ରଜାର କୁମାର ମୋର ଚରଣେ ପଡ଼ିଲ ।
ଏତେ ବୋଲି କୁମର କଲ୍ୟାଣ ବାଞ୍ଛିଲେ
କୁମରକୁ ଘେନି ସେ ହାଡ଼ିପା ଚଳିଗଲେ ।
କୁମରକୁ ଘେନି ସେ ହାଡ଼ିପା ଚଳିଗଲେ
ଭଣ୍ଡା ମଣ୍ଡପରେ ଯାଇ ପ୍ରବେଶ ହୋଇଲେ ।
ପଞ୍ଚବର୍ଣ୍ଣି ଗୁଣ୍ଡା ଆଣି କୋଟିଶାଳ କଲେ
ପୂର୍ବମୁଖା କରି ସେ କୁମର ବସାଇଲେ ।
ରଜାର କାନ୍ଧରେ ସେ ହାଡ଼ିପା ଦେଲେ କର
ମହାମନ୍ତ୍ର ଉଚ୍ଚାରିଲେ ଦକ୍ଷିଣ କର୍ଣ୍ଣର ।
ଯେଉଁ ମନ୍ତ୍ର ସେ ହାଡ଼ିପା ଥିଲେ ପାଇ
ସେହି ମନ୍ତ୍ର ରଜା କର୍ଣ୍ଣେ ଦେଲେ କହି ।
ଶୁଣରେ କୁମର ତୋତେ ମହାମନ୍ତ୍ର ଦେବୁ
ଦକ୍ଷିଣାକୁ କଣ୍ଟି ଦେବୁ କହ ସବୁ ବାବୁ ।
ଗୋବିନ୍ଦ ବୋଇଲେ ଗୁରୁ ବଙ୍ଗଦେଶ ମୋର
ଦକ୍ଷିଣାକୁ ଦେଲି ଗୁରୁ ମହା ଭୋଗ୍ୟ କର ।
ହାଡ଼ିପା ବୋଇଲେ ପ୍ରଭୁ କି କରିବ ତାହା ?
ଧନ ରତ୍ନ ମାଗୁ ନାହିଁ ଶୁଣ ନରନାହା ।
ଭିକ୍ଷା ମାଗିଲର ବେଳେ ଦ୍ୱାରେ ଯୋଗାଇବୁ
ଭିକ୍ଷା ଦେଲା କନ୍ୟାର ବଦନ ନ ଚାହିଁବୁ ।
ସ୍ତ୍ରୀଙ୍କ ଦେଖିଲେ ସେ ବୋଲିବୁ ଆଈ ମାଇଁ
ପୁରୁଷକୁ ଦେଖିଲେ ବୋଲିବୁ ବାପ ଭାଇ ।
ବାଳୁତ ଛାଡ଼ିବୁ ଭୂରେ ହିଂସା ରାଗ ତମ
କୋଟିଏ ଯୁଗ ପୁ ରୁଷ ପାଇବେ କାରଣ ।
ପାଇଲେ ଆନନ୍ଦ ମନ ନ ପାଇଲେ ତୋଷ
ତହିଁକି କୁମର ମଣି ନ କରିବୁ ରୋଷ ।
ଯେ ଯାହାର ଇଚ୍ଛାହେବ ଦେବ ତତେ ରହି
ତାହା ଘେନି କୁମର ଫିରୁରେ ଚଳାଇ ।

Digitized by srujanika@gmail.com

ଯେତେବେଳେ କୁମର କର୍ଣ୍ଣରେ ଶୁଣିଲେ
ଷତ୍ୟ ସତ୍ୟ ବୋଲି ଗୁରୁ ଶ୍ରୀଭୁଜ ଛୁଇଁଲେ ।
ବିଭୂତି ବଟୁଆ ରାଜା କାଖେ ଲମ୍ବାଇଲା
ଭଙ୍ଗା ମଣ୍ଡପରେ ରାଜା ଯୋଗଟି ସାଧିଲା ।
ଗୋବର୍ଦ୍ଧଚନ୍ଦ୍ରଙ୍କଠାରେ ମୋର ବଡ଼ ଆଶ
ଶରଣ ମାଗଇ ଗୀତେ ଲକ୍ଷ୍ମୀଧର ଦାସ ।

Digitized by srujanika@gmail.com

# ସାବିତ୍ରୀ ଚରିତ

( ଶଗଡା, ପୁରୀ )

ଛାଡ଼ ପତିଙ୍କି ତୋହର
କମ୍ପାଇ ଧରି ବସିଛୁ କୋଳର
ଏଇକ୍ଷଣି ନେବି ଯମପୁର ।
କଏ ସେ ତୁମ୍ଭେ ଦେବତା
ଏ ସମୟେ ଆସି କୁହ ଏ କଥା
ତୁମ୍ଭେ କୁହକ ଝିଅର ପିତା ?
ମୁଁ ଅଟେ ଯମ ରାଜନ
ନେବାକୁ ଆସିଛି ତୋ ପତି ପ୍ରାଣ
ଛାଡ଼ ବୃଥା କରନା ରୋଦନ ।
କପରି ଜିହ୍ୱା ତୁମ୍ଭର
ଚଳିଲା କହିବାକୁ ଏହି ଗୀର
ଶୁଣି ଛାତି ଫାଟିଗଲା ମୋର ।
ଆୟୁଷ ପୂରିଲା ତାର
ରଖିବାକୁ ସାଧ୍ୟ ଅଛି କାହାର
ରଖି ନ ପାରିବେ ହରିହର ।
କାହିଁକି ବୃଥାରେ ମାତ
ସୁକୋମଳ ପ୍ରାଣେ ଦେବୁ ଆଘାତ
କେ କାହାର ପତ୍ନୀ କେ କା କାନ୍ତ ।

Digitized by srujanika@gmail.com

ପତି ଛଡ଼ା ଅନ୍ୟ ଗତି
ନାହିଁ ଏ ସଂସାରେ ହେ ଜନ୍ତୁପତି
ତୁମ୍ଭେ ଭାଷୁଛ କେଡ଼େ ଅନୀତି !
ଯାଅ ଗୋ ସାବିତ୍ରୀ ଯାଅ
ପ୍ରେତ ଦଶାକାର୍ଯ୍ୟ ଗୃହେ କରାଅ
କୋମଳ ପ୍ରାଣେ ବାଧା ନ ଦିଅ ।
ହେ ଧର୍ମ ଦେବତା ଶୁଣ
କିଂପାଇ କରୁଛ ମୋତେ ବାରଣ
ପତି ସଙ୍ଗେ ଦେବି ମୋର ପ୍ରାଣ ।
ପତିଙ୍କ ନ ଦେବି ତୋର
ଆଜ୍ ଯାହା ମାଗ ଦେବି ମୁଁ ବର
ସତ୍ୟ କରି କହୁଛି ତିବାର ।
ଯେବେ ସୁଦୟା ମୋ ଠାର
ଏହି ବର ମୋତେ ଅର୍ପଣ କର
ପିତା ପାଆନ୍ତୁ ରାଜ୍ୟ ତାଙ୍କର ।
ଶତ୍ରୁ କରୁ ରାଜ୍ୟ ଛାର
ଏହିକ୍ଷଣି ଦେଲି ପିତାଙ୍କୁ ତୋର
ସତ୍ୟବାନଙ୍କୁ ଛାଡ଼ ତୋହର ।
ପତିଙ୍କି ତୁମ୍ଭେ ମୋହର
ଯେଉଁଠି ଆଡ଼େ ନେବ ଯିବି ସେଠାର
ପୂର୍ବ କହିଛି ତୁମ୍ଭ ଛାମୁର ।
ପତିଙ୍କି ନ ଦେବି ତୋର
ଆଜ୍ ଯାହା ମାଗ ଦେବି ମୁଁ ବର
ଏତେ ନସ୍ତୁର ନ ତଡ଼ା ମାର ।
ଶାଶ୍ୱ ଶ୍ୱଶୁରଙ୍କୁ ମୋର
ଚକ୍ଷୁ ଦାନ ଦିଅ ହେ ଧର୍ମବାର
ଯେବେ ଦୟା ରହିଲା ମୋ ଠାର ।
ଶାଶ୍ୱ ଶଶୁରଙ୍କୁ ତୋର

Digitized by srujanika@gmail.com

ଚକ୍ଷୁଦାନ ଦେଲ ଯାଅ ସତ୍ୱର
ପତିଙ୍କୁ କୋଳରୁ ଘୁଞ୍ଚ ଚେଡ଼ିର ।
ପତିଙ୍କୁ ତୁମ୍ଭେ ମୋହର
ଯେଉଁ ଆଡ଼େ ନେବ ଯିବ ସେଠାର
ସତ୍ୟ କର କହୁଛି ତିବାର ।
ପତିଙ୍କି ନ ଦେବ ଚୋର
ଆଜ ଯାହା ମାଗ ଦେବି ମୁଁ ବର
ସତ୍ୟ କର କହୁଛି ତିବାର ।
ତୁମ୍ଭେ ଅଟ ଧର୍ମ ତାତ
ପତି ଆଶା ମନୁ ତୁଟାଇଲ ତ
ଯାହା ମାଗିବି ଲୁଚିବ କୁଣ୍ଠିତ ।
ସତ୍ୟବାନ ଔରସରେ
ଶତେ ପୁତ୍ର ଧରି ବସିବି କୋଳେ
ଏହି ବର ଦିଅନ୍ତୁ ଶ୍ରଦ୍ଧାରେ ।
ସାବିତ୍ରୀ ବାକ୍ୟରେ ଭୋଳ
ଅସ୍ତୁ କରିଦେଲେ ସୂର୍ଯ୍ୟ କୁମର
ସତୀ ପାଏ ଶତସିଂହ ବଳ ।
ବୋଲନ୍ତି ଧର୍ମ ରାଜନ
ଆଜ କନ୍ୟା ଆସ ମୋ ସନ୍ନିଧାନ
ଦେଲ ପରା ଚେତେ ପୁତ୍ର ଦାନ ।
ମୋ ପତି ପ୍ରାଣକୁ ନେବ
କା ଔରସରୁ ପୁତ୍ର ଉପୁଜିବ
ସତୀ ନାମ ମୋହର ରହିବ ।
ତୁମ୍ଭେ ଅଟ ଧର୍ମ ବୀର
ଧର୍ମେ ଚଳାଉଛ ଏ ତିନି ପୁର
ତୁମ୍ଭ ବାକ୍ୟ ତୁମ୍ଭେ ରକ୍ଷା କର ।
ଚୋହର ସତୀତ୍ୱ ବଳେ
ସତ୍ୟବାନ ପ୍ରାଣ ପାଉ ଏଠାରେ

Digitized by srujanika@gmail.com

ପତିପତ୍ନୀ ଯାଆ ନିଜ ଆଳେ ।
ସ୍ୱାମୀଙ୍କି ସଙ୍ଗେ ଘେନଣ
ଗୃହେ ପ୍ରବେଶନ୍ତେ ନାଗ୍ଧ ରତନ
ଧନରତ୍ନ ଗୃହେ ପରିପୂର୍ଣ୍ଣ ।
ସତୀ ସାବିତ୍ରୀ ଚରିତ
ଏଣିଠାରୁ ହୋଇଲା ସମାପତ
ଦୋଷ ଥିଲେ କ୍ଷମିବେ ପଣ୍ଡିତ ।

Digitized by srujanika@gmail.com

# ହରିଶ୍ଚନ୍ଦ୍ର

(କମାପଡ଼ା, ପୁରୀ)

ଅଯୋଧ୍ୟା ନରେନ୍ଦ୍ର ସୂର୍ଯ୍ୟବଂଶ କୁଳଚନ୍ଦ୍ର
ବିଖ୍ୟାତ ଯା ନାମ ମହାଦାନୀ ହରିଶ୍ଚନ୍ଦ୍ର
ଦାନୀପଣେ
ସରିସମ ନୋହିବେ କେହି ଜଣେ ।
ଭୟେ କାତର ହୋଇଲେ ସ୍ୱର୍ଗେ ସୁନାସୀର
ଦାନବଙ୍କ ନିଷ୍ଠୁର ନେବେ ସ୍ୱର୍ଗପୁର
ଶଚୀପତି
ତେଣୁ ସେ ସ୍ୱଭାବେ ମନ୍ଦମତି ।
ବିଶ୍ୱାମିତ୍ରଙ୍କୁ ବୋଇଲେ ମର୍ତ୍ତ୍ୟପୁରେ ଯିବୁ
ହରିଶ୍ଚନ୍ଦ୍ର ଦାନୀପଣ ପରୀକ୍ଷା କରିବୁ
ଏହି ଆଳ
ମହାଦାନୀ ଦାନ ଦିଏ ତାଳ ।
ବାସବ ବଚନେ ବିଶ୍ୱାମିତ୍ର ଗଲେ ଚଳି
ଅଯୋଧ୍ୟା ନରେନ୍ଦ୍ର ରାଜ୍ୟ ସିଂହଦ୍ୱାରେ ମିଳି
ନୃପମଣି
ପାଦତଳେ ପଡ଼ି ବୋଲେ ବାଣୀ ।
ପବିତ୍ର ହୋଇଲା ଆଜି ଜୀବନ ଜନମ
କୁହ ହେ ତପସ୍ୱୀ କେଉଁ କାର୍ଯ୍ୟେ ଆଗମନ

Digitized by srujanika@gmail.com

କହିଦିଅ
ମୋ ମନରୁ ସନ୍ଦେହ ଛୁଟାଅ ।
ତପସ୍ୱୀ ବୋଲନ୍ତି ରାଜା ତୋର ଦାନପଣ
ଚତୁର୍ଦ୍ଦିଗେ ନରନାରୀ କରୁଛନ୍ତି ଗାନ
ଶୁଣିପାରି
କାଶୀ କ୍ଷେତ୍ରୁ ଆସିଛୁ ବାହାରି ।
ସଂକଳ୍ପ କରିଛୁ ଏକ ଯଜ୍ଞ ଅନୁଷ୍ଠାନ
ଆହୁତି ନିମନ୍ତେ କିଛି ଅର୍ଥ ପ୍ରୟୋଜନ
ଦେଲେ ତୁହି
ସଙ୍ଗତରେ ଯେନ ଯିବ ମୁହିଁ ।
ଶଙ୍ଖେ ଟେକି ଦିଅ ନୀର ଧର୍ମେ ରଖି ସାକ୍ଷୀ
ଅକୁଣ୍ଠିତ ଚିତ୍ତେ ଦେବୁ ମାଗିବି ଯେତିକି
ସତ୍ୟ କରି
ନୋହିଲେ ଫେରିବି ନିରାଧାର ।
ମହାଦାନୀ ହରିଶ୍ଚନ୍ଦ୍ର ଶଙ୍ଖେ ଧରି ନୀର
ତିନିବାର ସତ୍ୟ କରି କହୁଛି ଏ ବାର
ଏ ଜୀବନ
ମାଗିଲେ ମୁଁ ଦେଇପାରେ ଦାନ ।
ପ୍ରୟୋଜନ ନାହିଁ ରାଜା ନବାକୁ ଜୀବନ
ରାଜ୍ୟବାଡ଼ି ସମ୍ପତ୍ତିରେ ଦିଅ ସିଂହାସନ
ଯାଅ ଚାଲି
ଧନହୀନ କାଙ୍ଗାଳଙ୍କ ପରି ।
ପୁତ୍ର ପତ୍ନୀ ସଙ୍ଗେ ଯେନ ବାହାରିଣ ଯିବ
କାଣି କଉଡ଼ି କଡ଼ାଏ ସଙ୍ଗରେ ନ ନେବ
ଏହି ଦାନ
ଇଚ୍ଛାଥିଲେ ଦିଅନ୍ତୁ ରାଜନ ।
ପୁତ୍ର ପତ୍ନୀ-ମତ ଲେଉଡ଼ି ଅଯୋଧ୍ୟା ନୃପତି
ରାଜ୍ୟ ବିଭବେ ବଜାଇ ଦେଲେ ବ୍ରହ୍ମପତି

Digitized by srujanika@gmail.com

ପ୍ରଜାଗଣ
ପୁତ୍ର ପରି ପାଳିବ ଆପଣ ।
ଏ ଦୃଶ୍ୟ ଦେଖିଣ କାନ୍ଦୁଛନ୍ତି ପ୍ରଜାଗଣ
କେଣେ ଛାଡ଼ି ଯାଅ ମହାଦାନୀ ନୃପରଣ
କେଉଁ ପରି
ପ୍ରାଣବାୟୁ ନ ଯାଏ ବାହାର ?
ବିଶ୍ୱାମିତ୍ର ବୋଲେ ରାଜା ଦାନକୁ ଦକ୍ଷିଣା
ବେଗ କରି ଦିଅ ଯେବେ ଦାନପଣେ ଗଣା
ତିନ ଲକ୍ଷ
ସ୍ୱର୍ଣ୍ଣମୁଦ୍ରା ଦିଅନ୍ତୁ ପ୍ରତ୍ୟକ୍ଷ ।
ଦକ୍ଷିଣା ନ ଦେଲେ ତିନେ ଦାନେ ନାହିଁ ଲୋଡ଼ା
ଦଣ୍ଡଧର ମୁଣ୍ଡେ ବଜ୍ର ଛିଡ଼ିଣ ପଡ଼ିଲା
ଧର୍ମ ଡାକ
ଦକ୍ଷିଣା ମୁଁ ଦେବ ପ୍ରାଣ ବିକ ।
ପୁତ୍ର ପତ୍ନୀ ବ୍ରାହ୍ମଣକୁ କରିଲେ ବିକ୍ରୟ
ଚଣ୍ଡାଳ ଗୃହେ ରାଜନ ପାଇଲେ ଆଶ୍ରୟ
ଶ୍ମଶାନ
ମଡ଼ା ଜଗିବାକୁ ପ୍ରତିଦିନ ।
ଦିନେ ରୋହିତାଶ୍ୱ ବନେ ଗଲା ଫୁଲତୋଳି
ସଖା ସଙ୍ଗେ ନବରଙ୍ଗେ କଲା କେତେ କେଳି
ବୃକ୍ଷ ପରେ
ତକ୍ଷକ ଦଂଶିଲା ସେ ପତ୍ରରେ ।
ଶୈବ୍ୟାରାଣୀଙ୍କୁ ବାରତା ଦେଲେ ସଖାଗଣ
ସର୍ପାଘାତେ ରୋହିତାଶ୍ୱ ହୋଇଛି ମରଣ
ଏ ବାରତା
ଶୁଣି ରାଣୀ ବୁଡ଼ାଇଲେ ଚେତା ।
ଆରେ ଗଳାମାଳୀ କେଣେ ଛାଡ଼ି କରି ଦେଇ
ଅଭାଗିନୀ ଜନନୀକୁ ସଙ୍ଗରେ ନ ନେଇ

Digitized by srujanika@gmail.com

ଧରି କୋଟକି
ବ୍ରାହ୍ମଣ ନିକଟେ ଯାଇ ମିଳେ ।
କ୍ରୋଧେ ପ୍ରଜ୍ୱଳ ହୋଇଲା ଛଦ୍ମବେଶୀ ଦ୍ୱିଜ
ମଲା ପୁଅ ଦେଖାଉଛୁ ନ ମାଡୁଛି ଲାଜ
ଘେନି ଯାଅ
ଶମଶାନେ କରି ଆସ ଦାହ ।
ଘୋର ଅନ୍ଧାର ରଜନୀ ଚମକେ ବିଜୁଳି
ଶୃଗାଳ ଭୟେ ଶ୍ମଶାନ ପଡୁଛି ଉଛୁଳି
ଘେନିଗଲା
ଶମଶାନେ ପ୍ରବେଶ ହୋଇଲା ।
ଶବ ଥୋଇ ରାଜ ରାଣୀ ଖୋଳୁଛନ୍ତି ଗାତ
ସେହି କାଳେ ହରିଶ୍ଚନ୍ଦ୍ର ହେଲେ ଉପଗତ
ଖେଦ ବାଣୀ
କେ କହୁ ତା ଦୁଃଖର କାହାଣୀ ।
କିଏ ତୁ ଏତେ ରାତିରେ କାନ୍ଦୁଅଛୁ ନାରୀ
ଦେବୀ କି ମାନବୀ ଅଟୁ କହ ସତ୍ୟ କରି
ନାରୀ ହାରି
କି କାରଣେ କାନ୍ଦୁଅଛୁ ପରି ?
ମନରେ ଭୟ ନ କର ହେ ଶ୍ମଶାନପାଳ
ମୁଁ ମାନବୀ ଅଭାଗିନୀ ପୋଡ଼ୁ ମୋ କପାଳ
ଗଲା ସୁଖ
ବିଧାତା ଦେଇଛି ମୋତେ ଦୁଃଖ ।
ମୁଁ ତ ଶ୍ମଶାନ ରକ୍ଷକ ଚଣ୍ଡାଳ କିଙ୍କର
ମୋ ପାଖେ କାନ୍ଦିଲେ କି ତୋ ଦୁଃଖ ହେବ ପାର
ଯାଅ ଫେରି
ତୋ ଦୁଃଖରୁ ମୋର ଦୁଃଖ ଭାରି ।
ହେ ଶ୍ମଶାନବାସୀ ଶୁଣ ମୋର ନିବେଦନ
କୋଳେ ଘେନି ଆସିଛି ମୁଁ ଏକଇ ନନ୍ଦନ

Digitized by srujanika@gmail.com

ଦିଅ ପୋଡ଼ି

କହୁଛି ତୁମ୍ଭଙ୍କୁ କର ଯୋଡ଼ି ।
କଉଡ଼ି ନ ଦେଲେ ପୋଡ଼ି ନ ଦେବ ଅବଳା
ମୁଁ କିସ କରିବି ମୋର ମାଲିକର ମନା
ଦେଲେ ପୋଡ଼ି
ଗଲାକ୍ଷଣେ ମାଗିବ କଉଡ଼ି ।
କାହୁଁ ପାଇବି କଉଡ଼ି ମୋ କରମ ପୋଡ଼ା
ବ୍ରାହ୍ମଣ ଘରେ ଚାକରୀ କରି ଦିନ ଗଲା
ଗାଳି ଖାଇ
କରମ ଆଦରି ଦିନ ନେଇ ।
ତୁ ତ ରାଜରାଣୀ ପରି ଦେଖା ଯାଉଅଛୁ
ଚାକରାଣୀ କହି ମୋତେ ମିଥ୍ୟାରେ ଭଣ୍ଡୁଛୁ
ତୁ ଚତୁରୀ
ମିଥ୍ୟାବାଣୀ ଭଣୁଚ୍ଛୁ କପଟି ?
ଯାହା କହିଲ ହେ ବୀର ସତ୍ୟ ଏହି ବାଣୀ
ରାଜରାଣୀ ହୋଇ ହେଲି ପଥ ଭିକାରୁଣୀ
ରାଜ୍ୟ ଛାଡ଼ି
ଆସିଲି ମୁଁ ପତି ସଙ୍ଗେ ପଡ଼ି ।
କହ କହ ନାରୀ ଅଟେ କିଏ ସେ ତୋ ପତି
କିମ୍ପାଇ ରାଜ୍ୟ ହରାଇ ଭୋଗୁଛୁ ବିପତ୍ତି
ଏ ବାଳକ
କି କାରଣେ ହେଲା ପରଲୋକ ।
ଅଯୋଧ୍ୟା ନୃପତି ହରିଶ୍ଚନ୍ଦ୍ର ମୋର ପତି
ମୋର ନାମ ଶୈବ୍ୟା ଜାଣ ସତ୍ୟ ଏ ଭାରତୀ
ପୁତ୍ର ମୋର
ରୋହିତାଶ୍ୱ ନାମେ ବୀରବର ।
ବିଶ୍ୱାମିତ୍ରେ ରାଜ୍ୟ, ଧନ ପ୍ରତିଦାନ କରି
ଯୋଇଲି ପ୍ରାୟେ ବ୍ରାହ୍ମଣ ଘରେ ଯେ ବିକାଳି

Digitized by srujanika@gmail.com

ଛାଡ଼ି ଦେଇ
କେଉଁଣେ ଗଲେ କାନ୍ତ ଜଣା ନାହିଁ ।
ଆହା ପ୍ରାଣେଶ୍ୱରୀ ତୋତେ ଚହ୍ନି ନ ପାରିଲି
ବୃଥା ଏତେ ଯୁକ୍ତିତର୍କ ତୋ ସାଙ୍ଗେ ଖେଳିଲି
ପ୍ରିୟା ମୋର
ଛାତି ଫାଟେ ଦେଖି ଦଶା ତୋର ।
ଆରେ ବାପ ରୋହିତାଶ୍ୱ ମୋ ହୃଦ ଚନ୍ଦନ
ତୋର ମୃତ୍ୟୁ ଦେଖି ଯାହା ଧରିଛି ଜୀବନ
ଗଲୁ କାହିଁ
ଆଉ ଏ ପ୍ରାଣ ରଖିବ ନାହିଁ ।
ଚୂଳ ପ୍ରିୟେ ପୁତ୍ର ଲାଗି ସଜାଡ଼ିବା ଜୁଇ
ଅନଳେ ପଶିବା ଦୁହେଁ ପୁତ୍ର ଶବ ନେଇ
ହୁତାନଳ
ପ୍ରଜ୍ୱଳିତ ହେଲା ଅନର୍ଗଳ ।
ଚହଳ ପଡ଼ିଲା ସ୍ୱର୍ଗେ ଦେବତାମଣ୍ଡଳୀ
ରଥ ଘେନ ବେଗ ହୋଇ ଯାଅ ହେ ମାତଳୀ
ଘେନ ଆସ
ସ୍ୱର୍ଗପୁରେ ଅଯୋଧ୍ୟା ନରେଶ ।
ପ୍ରଜାଗଣେ ଘେନି ରାଜା ସ୍ୱର୍ଗପୁରେ ଗଲେ
ଅଧାସ୍ୱର୍ଗ ହୋନ୍ତେ ଗର୍ବେ ଗର୍ବକୁ ବହିଲେ
ତେଣୁ କରି
ଯାଇ ନ ପାରିଲେ ସ୍ୱର୍ଗ ପୁରୀ ।
ଧଟୁଆ ନେଟୁଆ ପଣେ ପଟୁ କେହି ଜଣେ
କର ଯୋଡ଼ି ବିବୁଧଙ୍କୁ କ୍ଷମାବାଣୀ ଭଣେ
ଜୟରାମ
ଚିତ୍ତ ରହୁ ନୀଳଗିରି ଧାମ ।

Digitized by srujanika@gmail.com

# ଖୁଲଣା ସୁନ୍ଦରୀ

(ଶଗଡ଼ା, ପୁରୀ)

ମନ ଦେଇ ଶୁଣ ସୁଜନେ ଏ ଯେ ମଙ୍ଗଳା କଥା
ପଞ୍ଚମନ ଏକ କରିଣ ତୁମ୍ଭେ ଲଗାଅ ଚିନ୍ତା ।
ଧନେଶ୍ୱର ବୋଲି ବଣିକ ଏକ ପଶ୍ଚିମ ଦେଶେ
ପାଟଣା କଟକ ତାହାର ମଙ୍ଗଳା ନାମ ଘୋଷେ ।
ଏହି କଳିଯୁଗ ଆଦ୍ୟରେ ମର୍ତ୍ତ୍ୟେ ହୋଇଲି ଜାତ
ଅନନ୍ତେଶ୍ୱର ବୋଲି କହି ଅଟେ ତାହାର ତାତ ।
ଇନ୍ଦ୍ରରେଖା ବୋଲି ଅଟଇ ମାତା ନାମ ତାହାର
କୁବେର ପ୍ରାପ୍ତ ଧନବନ୍ତ କହି ନୁହେ ଅପାର ।
ଦାସୀ ପରିବାରି ଅଛନ୍ତି ତାହା କେ ପାରେ କହି
ଘର ଯୋଜନରେ ଉଆସ ଗୋଟି ଅଟେ ତାହାର
କେ କହିପାରେ ମୁଖେ ତାହା ଅଛି ଯେତେକ ଧନ
କେବଳ ହିଁ ଚିନ୍ତା ତାହାର କୋଳେ ନାହିଁ ନନ୍ଦନ ।
ଆବର ଶତେ ଗୋଠା ରାଣୀ ଜଟିଥାନ୍ତି ନିକଟ
ନସୁନା ସୁନ୍ଦରୀ ବୋଲିଣ ପାଟ ରାଣୀ ଯେ ଶ୍ରେଷ୍ଠ ।
ତାହା କୋଳେ ସୁତ ନୋହିଲି ଧନେଶ୍ୱର ରାଜନ
ବଡ଼ ଭାବନା ମନେ କରି ସେହୁ ଥାଏ ଅପାର ।
ନିତିପ୍ରତିଦିନ ଯେ ରାଜା ବିପ୍ର ପାଦେ ଖଟଇ
ମଙ୍ଗଳା ମାତାଙ୍କ ଚରଣେ ଲସି ସର୍ବଦା ଥାଇ ।

Digitized by srujanika@gmail.com

ବହୁ ଭାବନା କରୁଥାଇ ପୁତ୍ର ନୋହିଲା ଜାତ
କି କରିବ ବୋଲି ଭାଳଇ ପାଟରାଣୀ ଅଗାଧ ।
କହ କହ ମୋତେ ସଜନୀ ମୁଁ କି ବୁଦ୍ଧି କରିବ
ଯାବୋର ନଦୀର ଜଳରେ ମୁଁ କି ବୁଡ଼ି ମରିବ ?
ପୁତ୍ର ବିନା ଏହି ଦେହକୁ ଧିକ୍କାର ଅଟଇ
ଜନ୍ମ ଆଣ୍ଠୁକୁଡ଼ା ହୋଇଛି ତହିଁ କି ସୁଖ ଥାଇ ।
କାହା ଧନ ଏଥି ରହିବ ମୋତେ କହ ସଜନୀ
ପୁତ୍ର ଚିନ୍ତା ମୋତେ ଲାଗିଲା ହବ ହବା ରଜନୀ ।
ରାଜାଠାରୁ ଏହା ଶୁଣିଣ ପାଟରାଣୀ କହଇ
ହେ ଦେବ ଆମ୍ଭର କର୍ମରେ ପୁତ୍ର ହୋଇଲା ନାହିଁ ।
ସେଥିପାଇଁ କାହିଁ ତୁମ୍ଭେ ଏ ପିଣ୍ଡୁ ପ୍ରାଣ ଛାଡ଼ିବ
ତୁମ୍ଭେ ନାଶ ଗଲେ କେମନ୍ତେ ଆମ୍ଭ ଧନ ସରିବ ।
ତୁମ୍ଭେ ଆମ୍ଭେ ଦୁହେଁ ମିଳିବା ଯେବେ ଛାଡ଼ିବା ପ୍ରାଣ
କଥା ରହିଥିବ ସଂସାରେ ରାଜା ବୃହସ୍ପୁତେଣ ।
ପୂର୍ବରେ ଯେମନ୍ତେ ଥିଲେ ଯେ ପୁତ୍ର ନୋହିଲା ଜାତ
ସେଥିଲାଗି ପ୍ରାଣ ଛାଡ଼ିଲେ ପିଳ ଯୁବତୀ କାନ୍ତ ।
ଏହିକଥା ମନେ ବିଚାର ଆହେ ମୋ ପ୍ରାଣନାଥ
ଆଜ କି ଏ ଦେହ ପାଳିବା ମର୍ତ୍ତ୍ୟେ ହୋଇବା ଜାତ ?
ଯାହା ଭୋଗ କରି ଥିବ ହେ ଏହି କ୍ଷିତି ମଣ୍ଡଳ
ଆଉ ଭୋଗ କାହିଁ ପାଇବ ନିଜ ଦେହ ହଜିଲେ ?
ଶତେଗୋଟା ରାଣୀ ଅଛନ୍ତି ଯେବେ ନୋହିଲା ସୁତ
ଆଜ ଏକ କନ୍ୟା ଲୋଡ଼ିଣ ବିଭା ହୁଅ ହେ କାନ୍ତ ।
ତାହା ଶୁଣି ରାଜା କହଇ ନଯୁନାର ଅଗ୍ରତେ
ବୃଦ୍ଧକାଳ ଆସି ହୋଇଲା କନ୍ୟା କେ ଦେବ ମୋତେ ?
ନଯୁନାସୁନ୍ଦରୀ ବୋଲଇ ରାଜା ଶୁଣ ମୋ ବାଣୀ
ମୋ ଭାଇ ବିଦ୍ୟାଧର ଠାକୁ ତୁମ୍ଭେ ଯିବ ଏକ୍ଷଣି ।
ଗଲାମାତ୍ରେ ତାର ସଙ୍ଗରେ ଚଉପାର ଖେଳିବ
ଖେଳରେ ମୋ ଭାଇ ହାରିଲେ ଝିଲଣାକୁ ମାଗିବ ।

Digitized by srujanika@gmail.com

ତାହା ଶୁଣିକରି ରାଜା ଯେ ବଡ଼ ହରଷ ହେଲା
ଯିବି ବୋଲି ସନମତ ସେ ମେଲାଣି ମାଗିଲା ।
ଆନନ୍ଦ ମନରେ ବିଦାୟ ତାକୁ ଦେଲେ ମେଲାଣି
ଛନ୍ଦ ଛନ୍ଦ ପ୍ରତିବନ୍ଧରେ ଯାନ ଉକାଗ୍ର ଭଣି ।

ମନ ଦେଇ ଶୁଣ ସୁଜନେ ଏ ଯେ ଅପୂର୍ବ ରସ
ଧନେଶ୍ୱର ରାଜା ମନରେ ହୋଇ ବଡ଼ ହରଷ ।
ଗଣକଙ୍କୁ ପାଶେ ବସାଇ ଧୀରେ ବୋଲଇ ବାଣୀ
ଶୁଭଲଗ୍ନ ଗୋଟି ବିଚାରି ଖଡ଼ି ପକାଅ ପୁଣି ।
ଆମ୍ଭ ମନରେ ଯା ବିଚାର ସେ କି ଭଲ ହୋଇବ
କାର୍ଯ୍ୟ ଯେବେ ସିଦ୍ଧି ହୋଇବ ବିଚାରିଣ କହିବ ।
ତାହା ଶୁଣିକରି ପଣ୍ଡିତେ ବସି କୋଷ୍ଠୀ କାଟିଲେ
ରାମନାମ ଆଦ୍ୟ ଅକ୍ଷର ମଧ୍ୟ ଭାବି ଲେଖିଲେ ।
ଅଷ୍ଟ ଦିଗେ ଅଷ୍ଟ ଅକ୍ଷର ଲେଖି ରଖିଲେ ଖଡ଼ି
ନୃପତି ଛାମୁରେ ପଣ୍ଡିତେ କହନ୍ତି କର ଯୋଡ଼ି ।
ଆଜ୍ଞା ଦେଲେ ଖଡ଼ିକି ବିଦ୍ୟା ନ ଜାଣେ ଯେହୁ
ଶୁଣି ନୃପମଣି ବାଳକ ଗୋଟି ଡାକିଲେ ତହୁଁ ।
ତାହା ହସ୍ତେ ଖଡ଼ି ଦିଅନ୍ତେ ସେ ଯେ ରଖିଣ ଦେଲା
ନୃପତି କାର୍ଯ୍ୟ ସିଦ୍ଧ ହେବ ଲକ୍ଷଣରେ ପଡ଼ିଲା ।
ପଣ୍ଡିତେ ବୋଇଲେ ଶ୍ରୀ ଦେବ କାର୍ଯ୍ୟ ହେବ ଏଥର
ନିଶ୍ୱାସ ବାଣ ତତକ୍ଷଣେ ରାଜା ହେଲେ ବାହାର ।
ସୂର୍ଯ୍ୟାନ୍ତ ଦେଶରେ ମିଳିଲେ ବିଦ୍ୟାଧର ମନ୍ଦରେ
ଦେଖି ବିଦ୍ୟାଧର ଆନନ୍ଦ ହେଲା ବଡ଼ ମନରେ ।
ଅତି ଯତନରେ ବସାଇ ପୂଜାବିଧି ସେ କଲା
ଦ୍ରବ୍ୟ ସମସ୍ତମାନ ଆଣିଣ ତାଙ୍କ ନିକଟେ ଦେଲା ।
ଭୋଜନ କରି ସାରି ରାଜା ତାମ୍ବୁଳ କଲେ ପାନ
ରତ୍ନ ପଲଙ୍କରେ ବସିଣ ହେଲେ କୌତୁକ ମନ ।

Digitized by srujanika@gmail.com

ଦିନ ଦଶ ବାର ଚନ୍ଦର ରାଜା ତହିଁ ରହିଲେ
ଏକ ଦିନେ ବିଦ୍ୟାଧରଙ୍କୁ ଧନେଶ୍ୱର କହିଲେ ।
ଆସ ଆସ ବିଦ୍ୟାଧର ହେ ନେଉସାର ଖେଳିବା
ଆଣିଛୁ ଲେଖଣି ପାରୁଆ କସ ପାଇଛୁ ଶୋଭା ।
ଆମ୍ଭେ ଦୁହେଁ ପଣ କରିବା ଏବେ ଖେଳ ଖେଳିବା
ତୁମ୍ଭେ ଯେବେ ଏଥେ ହାରିବ କସ ଛାଡ଼ିବ ଅବା ।
ମୁହିଁ ଯେବେ ଏଥେ ହାରିବି ଦେବି ସାତ ବୋଇତ
ଏ କଥା ଅନ୍ୟଥା ନୁହଇ ଶତବାର ଏ ସତ୍ୟ ।
ତାହା ଶୁଣି ବିଦ୍ୟାଧର ଯେ ବେଗେ କଲା ସନମତ
ବସି ନେଉସାର ଖେଳିଲେ ଯୁଦ୍ଧ ହେଲା ବହୁତ ।
କେ କହିପାରେ ମୁଖେ ତାହା ଯେତେ ଖେଳ ଲାଗିଛି
କି ଅବା ଯୁଜେଷ୍ଠି ସାଙ୍ଗରେ ଦୁର୍ଯ୍ୟୋଧନ ଖେଳୁଚି ।
ସାତ ବାଜି ଯାଏ ଜିଣିଲେ ବଣିକ ଧନେଶ୍ୱର
ତା ସଙ୍ଗେ ଜିଣି ନ ପାରିଲା ପର୍ଶୁରାମ କୁମର ।
ବିରସ ହୋଇଣ ବିଦ୍ୟାଧର ଯେ ବେଗେ ଗଲା ପୁରକୁ
ସକଳ ବୃତ୍ତାନ୍ତ ବୁଝାଇ କହିଲା ସେ ମାତାକୁ ।
ଚିତ୍ରକଳା ବୋଲି ଅଟଇ ମାତା ନାମ ତାହାର
ବୋଇଲା ଏହା କର୍ମା କଲୁ ଆରେ ତୁ ବିଦ୍ୟାଧର ।
ଏକ ଭଉଣୀ ସେ ତୋହର ବିଭା ହୋଇଛି ପର
ଆଜ ଏକ କେବେହେଁ ଦେବୁରେ କହ ମୋ ଗଳାମାଳା ।
ବିଦ୍ୟାଧର ବୋଲେ ମାତ ଗୋ ମୋର ନୁହେଁ ଆସୁତ
ଯାହାରେ ବିଧାତା ଲେଖିଛି ସେ କି ହେବ ବିଅର୍ଥ ?
ଏତେ ବିଚାରି ମନରେ ସେ ବିଦ୍ୟାଧର ସଞ୍ଚିଲେ
ବନ୍ଧୁ ବାନ୍ଧବ ତା ଯେତେକ ନିମନ୍ତ୍ରଣ ଯେ ଦେଲେ
ବିଦ୍ୟାଧର ମାମୁଁ ଅଇଲା ଧୂମାନ୍ତ ଦେଶ ରାଜା
ମଧୁକର ବୋଲି ତାହାର ବାଜୁ ତେଲିଙ୍ଗି ବାଜା
ମହା କଉତୁକ ହରଷ ଦେଶେ ଲାଗି ଅଛଇ
ବରବେଶ ହୋଇ ବେଦୀରେ ରାଜା ବସିଲା ଯାଇଁ ।

Digitized by srujanika@gmail.com

ବାଜେ ଢୋଲ୍ ଡମ ଝମ୍‌କ ଆବର ବନ୍ତଚନେ
ହୁଳହୁଳି ଦେଉ ଥାଆନ୍ତି ମିଳି ଯୁବତୀମାନେ ।
ନର୍ତ୍ତକୀଏ ନୃତ୍ୟ କରନ୍ତି ମନେ ହୋଇ ହରଷ
ଏ ସମୟେ ସହଚରୀଏ କନ୍ୟା କରନ୍ତି ବେଶ ।
ଅତି ଯତ୍ନେ ଜୁଡ଼ା ବାନ୍ଧିଲେ ଦେଲେ ସିନ୍ଦୂର ବିନ୍ଦୁ
ନୟନେ ଅଞ୍ଜନ ଖଞ୍ଜିଲେ ନିନ୍ଦେ କୋଟିଏ ଇନ୍ଦୁ ।
ରତ୍ନ ଚୂଡ଼ି ଦୁଇ ହସ୍ତରେ ଦିଶେ ଅତ୍ୟନ୍ତ ଶୋଭା
ବେନିକରେ ଦେଲେ କଙ୍କଣ ମୁନିମାନଙ୍କୁ ଲୋଭା ।
ପାଦରେ ନୂପୁର ଯୋଡ଼ିଏ ରୁଣୁ ଝୁଣୁ ବାଜଇ
କେ ଜାଣି ସିନ୍ଧୁର ଦୁହିତା ଜାତ ହୋଇ ଅଛଇ ।
ଅରୁଣିଅଧରୀ ଅଟେ ସେ ହାର କନକଗୋରୀ
ସ୍ୱର୍ଗର ନାୟିକାମାନେ ଯେ ତାକୁ ନୋହିବେ ସରି ।
ହସି ଯେତେବେଳେ ଗ୍ରୀବା ମନ୍ଦ ହେଲେ ଟଳଇ
ସର୍ବଦା ତାହାର ମୁଖରେ କିବା ସୁଧା ଗଳଇ !
କହି ବସିଲେ ତା ଶୋଭାକୁ ପୋଥି ହୋଇବ ଖଣ୍ଡେ
ଶୁଣିବାକୁ କର୍ଣ୍ଣ ଏମନ୍ତ ଯେବେ ଦେଖିବ ଦଣ୍ଡେ ।
ନାନା ବିଷୟମାନ ଥିଲେ ମନୁ ପାସୋର ଯିବ
ହରିରୂପ ଆସି ହୃଦରେ ବାସ କରି ରହିବ ।
ଗୋପୀ ଜନ ମନ ମୋହିନୀ ସେକି କନକସୁତା
କନକ ବେଧାକି ଆଣିଲେ ମନରେ ହରଷିତା
ବେଦବାକ୍ୟ ବସି ପଢ଼ିଲେ ବ୍ରାହ୍ମଣ ଗୋଟା ଗୁରୁ
ହୁଳହୁଳି ଦେଉ ଅଛନ୍ତି ମିଳି ସକଳ ନାରୀ ।
ବେଦବାକ୍ୟ କହି ପଢ଼ିଣ ହସ୍ତଗଣ୍ଠି ପକାଇ
ଯେ ବିଧି ବିଧାନ ମତରେ ଦାନ ଯୌତୁକ ଦେଇ
ଅର୍ଘ୍ୟବନ୍ଦାପନା କରିଣ ବର କନ୍ୟାକୁ ନେଲେ
ବନ୍ଧୁ ବାନ୍ଧବ ତା ବସାଇ ଦ୍ରବ୍ୟ ଭୋଜନ ଦେଲେ ।
ଗଲା ଦିନ ଦଶପନ୍ଦର ଏଥକୁ ଆନନ୍ଦିତ
ଯେ ଯାହାକୁ ଦେଲେ ମେଲାଣି ବିଦ୍ୟାଧର ନୃପତି ।

ବନ୍ଧୁ ବର୍ତ୍ତମାନ ସମସ୍ତେ ବିଦାୟ ହୋଇଗଲେ
ପୁରକୁ ଯିବ ବୋଲି କରି ଧନେଶ୍ୱର କହିଲେ ।
ବିଦ୍ୟାଧର ହେଲା ମେଲାଣି ତୁମ୍ଭେ ପୁରକୁ ଯିବ
ଖୁଲଣା ଦୋଷ ଅରଜିଲେ ତୁମ୍ଭେ କ୍ଷମା କରିବ ।
ଦୁଇ ଭଉଣୀ ଯେ ତୁମ୍ଭଙ୍କୁ ବନ୍ଧା କରାଇ ଦେଲି
ଆଜିଦିନଠାରୁ ତୁମ୍ଭର ପାଦେ ଶରଣ ଗଲି ।
ତାହା ଶୁଣି ରାଜା ହରଷ କନ୍ୟା ଯେନ ସଙ୍ଗରେ
ପ୍ରବେଶ ହୋଇଲା ଯାଇଣ ସେହିଦିନ ରାଜ୍ୟରେ ।
ଖୁଲଣା ସଙ୍ଗରେ ବିହାର ରାଜା କରଇ ନିତି
ଆଉ ଯେତେ ରାଣୀ ଅଛନ୍ତି ନ ଯାଏ କାହା କତି ।
ପାଟରାଣୀ ତାର ନପୂନା ରାଜା ତାକୁ ମୂର୍ଚ୍ଛିଲା
ଏକାନ୍ତେ ଖୁଲଣାସୁନ୍ଦରୀ ରାଜା ଦିନ ବଞ୍ଚିଲା ।
କହଇ ଧୀବର ଭକତ ମୋତେ ରଖ ମଙ୍ଗଳା
ନ ଆସିଲା ପଦ ମନରୁ କହିହିଅ ମୋ ଗଳା ।

ଏଥୁ ଅନନ୍ତରେ ଶୁଣ ସୁଜନେ
ମଙ୍ଗଳାମାତାଙ୍କ କଥା ଯତନେ
ଧନେଶ୍ୱର ଥାଇ ଆପଣା ପୁର
ଖୁଲ୍ଲଣା ସଙ୍ଗରେ କରେ ବିହାର
ଏକ ଦିନେ ରାଜା ପ୍ରଭାତୁ ଉଠି
ହାଡ଼ି ଉପରେ ଯେ ପଡ଼ିଲା ଦୃଷ୍ଟି ।
ବୋଇଲା ଆଜ ଅଛି କେଉଁ ଦୁଃଖ
ପ୍ରଭାତୁ ଦେଖିଲି ହାଡ଼ିର ମୁଖ
ତାହା ଶୁଣି ହାଡ଼ି ହେଲା ପ୍ରକୋପ
ତୋତେ ଦେଖି ମୋତେ ଲାଗିଲା ପାପ
ତୁ ଯେ ଅପୂର୍ବିକ ଅଟୁ ଜଗତେ
ତିନିଗୋଟି ପାପ ଲାଗିଲା ମୋତେ ।

Digitized by srujanika@gmail.com

"ମୁହିଁ ହୋଇଲଣି ଆପିଣ ବୁଢ଼ା
ତେବେ ନ ଗଲା ଜନ୍ମ ଅାଣ୍ଠୁ କୁଡ଼ା ।
ହାଡ଼ ଗୋଟେ ଯେବେ ଏହା କହିଲା
ଏଠାରେ କେଉଁ ପ୍ରୟୋଜନ ଭଲା ।
ନ ରହିବ ଘରେ ଯିବ ପ୍ରବାସ
କହିଲା ଯାଇଣ ଖୁଲଣା ପାଶ ।
ଏକାନ୍ତେ ମନ୍ଦିରେ ଥାଅରେ ତୁହି
ପ୍ରବାସକୁ ଯାଉଅଛୁ ଗୋ ମୁହିଁ ।"
ଶୁଣି ଖୁଲଣାର ଉଡ଼େ ସାହସ
କାହିଁ ପାଇଁ ତୁମ୍ଭେ ଏଡ଼େକ ରୁଷ ।
କେଉଁ କଥା ଊଣା ହେଲା ତୁମ୍ଭଙ୍କୁ
କାହିଁକ ତୁମ୍ଭେ ଯିବ ପ୍ରବାସକୁ ?
ଧନେଶ୍ୱର ବୋଲେ ଶୁଣ ହେ ସଖୀ
ଆଜ ପ୍ରଭାତରୁ ଉଠିଲା ମୁହିଁ ।
ସିଂହଦ୍ୱାରେ ଦେଖି ହାଡ଼ର ମୁଖ
ମୁଁ ବୋଇଲା ଆଜ ପଡ଼ିବ ଦୁଃଖ ।
ସେ ବୋଇଲା ମୁହିଁ କ କର୍ମ କଲା
ପ୍ରଭାତୁ ଅପୁତ୍ରୀ ମୁଖ ଦେଖିଲ ।
ଧେନୁ ଶତେ ଗୋଟା ଯେବେ ହୁଅନ୍ତା
ବିପ୍ରଙ୍କୁ ଦେଲେ ପାପ କ୍ଷୟ ଯାନ୍ତା ।
ଏହା ଶୁଣି ପ୍ରାଣ ରହିବା ଦୁଃଖ
ମନେ ଭଲ ଜାଣିଥିଲେ ଜନଙ୍କ ।
ତାହା ଶୁଣି ବୋଲେ ଖୁଲଣା ନାରୀ
ରୁଷନ ଗର୍ଭ ହୋଇଛୁ ମୋହର ।
କିଛି ଚିନ୍ତା ତୁମ୍ଭେ ନ କର ମନେ
ପୁତ୍ର ଜାତ ହେବ ଅଳପ ଦିନେ ।
ଧନେଶ୍ୱର ବୋଲେ ଶୁଣରେ ସଖୀ
ଆଜ ଏ ରାଜ୍ୟେ ନ ରହିବ ମୁହିଁ

Digitized by srujanika@gmail.com

ଯାଉଛୁ ଅନ୍ୟ ରାଜ୍ୟରେ ରହିବ
ପୁତ୍ର ଜାତ ହେଲେ ଶୁଣି ଆସିବ ।
ଖୁଲଣା ବୋଲେ ଶୁଣ ପ୍ରାଣନାଥ
ତୁମ୍ଭେ ଗଲେ ମୁହିଁ ରହିବ ଏଥି ।
କାହା ହେନ ମୁହିଁ ବଞ୍ଚିବ ଦିନ
କରିବେ ମୋତେ ନାନା ହୀନମାନ ।
କେମନ୍ତେ ସହିବ ତାଙ୍କର ଭାଷା
ହେ ନାଥ ବୁଡ଼ାଇଲ ମୋର ଆଶା ।
ଧନେଶ୍ୱର ବୋଲେ ଶୁଣରେ ସତୀ
ମୋ ସଙ୍ଗେ ଯିବା ଉଚିତ ନୁହଇ ।
ଶୁଣି ରାଜ୍ୟ ଲୋକେ କସ ବୋଲିବେ
ପରଜାମାନେ ପଛେ ଗାଳି ଦେବେ ।
ବୋଲିବେ ଶଠେ ରାଣୀ ଛାଡ଼ି କରି
ନେଇଗଲା ସେ ଖୁଲଣା ସୁନ୍ଦରୀ ।
ତୋର ଅପବାଦ ହେବ ବହୁତ
ଏହା ତୁ ସୁନ୍ଦରୀ ବିଚାର ଚିତ୍ତ ।
ଧନେଶ୍ୱର ବୋଲେ ଶୁଣ ରେ ସତୀ
ଆଉରି କଥାଏ କହିବ ମୁହିଁ ।
ଯଦି ତୋର ପୁତ୍ର ହେବ ଜନମ
ଶିଖୀଧର ବୋଲି ଦେବୁ ତା ନାମ ।
ନୋହିଲେ ଜନ୍ମିବ ଯେବେ ଦୁହିତା
କହିବୁ ନାମ ତାର ଚନ୍ଦ୍ରକାନ୍ତା ।
ଆହୁରି କଥାଏ ଶୁଣ ବାନ୍ଧବୀ
ପୁତ୍ର ଜାତ ହେଲେ ଶୁଣି ଆସିବି ।
ଦୁହିତା ଜନମ ଶୁଣିବି ଯେବେ
ପ୍ରବାସରେ ଥାଇ ମରିବି ତେବେ ।
ଲକ୍ଷ ଦୁହିତାରେ ନ ରହେ ଦେଶ
ଗୋଟିଏ ସୁତରେ କୋଟିଏ ଦେଶ ।

Digitized by srujanika@gmail.com

ଏହା ତୁ ସୁନ୍ଦରୀ ହୃଷ୍ଟର ଚିତ୍ତ
ଏମନ୍ତ କହି ଖୁଲଣା ଅଗ୍ରତ ।
ନସୁନା ସୁନ୍ଦରୀ ପାଖକୁ ଯାଇ
ସମର୍ପେ ଖୁଲଣା ହସ୍ତକୁ ନେଇ ।
ଏବେ ଖୁଲଣା ଲଗିଲା ସେ ଭୋଟେ
ଯେମନ୍ତେ ଦୟା ରଖିଥାଅ ମୋତେ ।
ସେହିପରି ଦୟା ରଖିବୁ ତାରେ
ଏମନ୍ତ କହି ଖୁଲଣା ପାଶରେ ।
ମନୋହର ବୋଲି ଏକ ବୋଇତ
ତତକ୍ଷଣେ ସଜକଲା ନରନାଥ ।
ଅନେକ ଦ୍ରବ୍ୟ ତା ଭିତରେ ରହି
ଶୁଣ୍ଠି ପିମ୍ପଳି ଯେ ପାନମହୁରୀ
ଗଞ୍ଜାଇ କର୍ପୂର କସ୍ତୁରୀ ଝୁଣା
ଜାଇଫଳ ବଣ୍ଡ ଜିରା ଠାଙ୍କଣା ।
ଅଷ୍ଟରତ୍ନ ଆଦି ଯେତେକ ଦ୍ରବ୍ୟ
ବୋଇତ ଭିତରେ ରଖିଲେ ସର୍ବ ।
ଶୁଭ ଅନୁକୂଳ ମନେ ବିଚାର
ସମସ୍ତଙ୍କୁ ପୁଣି କହେ ତଥାତ୍ ।
ନିଜ ମନ୍ଦିରରୁ ବାହାର ହେଲା
ଜଗନ୍ନାଥଙ୍କୁ ସୁମରଣା କଲା ।
ବୋଇଲା ଆହେ ଜଗନ୍ନାଥ ରଖ
ବାଟରେ ପଡ଼ିବ ଯେବେଠି ଦୁଃଖ
ଏମନ୍ତ ପ୍ରକାର କହନ୍ତେ ସେହି
ମଙ୍ଗଳା ଡାକିଲେ ଶୂନ୍ୟରେ ଥାଇ
କରେ ଧନେଶ୍ୱର ବାତୁଳ ହେଲୁ
ମତେ ଛାଡ଼ି ତୁ ଅନ୍ୟକୁ ଡାକିଲୁ ?
ଦେଖିବ ତୋତେ ରଖିବ କେମନ୍ତେ
ପଥରେ ବିପତ୍ତି ପଡ଼ିବ ଯେବେ ।

Digitized by srujanika@gmail.com

ସେ କାଳଆ ବଡ଼ ଦେଉଳେ ବସି
ଭୋଗ ଖାଉଅଛନ୍ତି ହୋଇଣ ଖୁସି ।
କର ଚରଣ ଯେ ନାହିଁ ତାହାର
ସେ କପର ଦୁଃଖ ଫେଡ଼ିବ ତୋର ।
କେତେ କେତେ ଲୋକ ତା ଗୁଣ ଗାଇ
ମାଟି ଭିତରେ ତ ପଶିଲେ ଯାଇ
କାହାକୁ ସେ ଯେ ନ ରଖି ପାରିଲା
ଦେଉଳେ ଭଉଣୀ ସାଥେ ରହିଲ
ଅତି କଷ୍ଟରେ ସେ ଦିଅଇ ବର
ତୁ କମ୍ପା ଡାକୁ ତାକୁ ଧନେଶ୍ୱର ।
ଧନେଶ୍ୱର ଶୁଣି କାତର ହେଲ
ମାୟାବଳେ ତା ଜାଣି ନ ପାରିଲ ।
ଚଳିଲ ହୋଇ ହରଷ ମନର
ପ୍ରବେଶ ଯାଇ ଧୂମାତ ଦେଶର ।
ଅଙ୍ଗ ବଙ୍ଗ ଜିଣି କଳିଙ୍ଗ ଦେଶ
କାହିଁ ନ ରହିଣ ଚଳେ ନରେଶ ।
ମଳିକା ଯେଣୁ ଚଳି ନରପୁର
ଯାଇଁ ମିଳିଲ ବରୂପା ଦେଶର ।
ସେଠାରେ ମଙ୍ଗଳା ମାୟା ଯେ କଲ
ଦିବ୍ୟ କନ୍ୟା ରୂପ ଗୋଟି ଧଇଲା
ପଦ୍ମଫୁଲ ପରେ ବସିଲେ ଯାଇ
ଧନେଶ୍ୱର ଦେଖି ଚକିତ ହୋଇ
ବିଶ୍ୱରେ ଏତ ବିପରୀତ ହେଲା
ସମୁଦ୍ରକୁ ପଦ୍ମ କାହୁଁ ଅଇଲ
ତହିଁକି କନ୍ୟାଏ ଅଇଲ କାହୁଁ
ଚିତ୍ତ ଅସ୍ଥିର ଶୋଭ ଗୃହୁଁ ଗୃହୁଁ ।
ଏମନ୍ତ ବିଚାରି ମନ ଉଦ୍‌ବେଗ
ବୋଇତ ଉପରୁ ଓହ୍ଲାଇ ବେଗ ।

Digitized by srujanika@gmail.com

ଯାଇଁ ମିଳଲା ରାଜାର ନଗର
ସୁଦର୍ଶନ ରଜା ଅଛି ଯହିଁର
ସେଇଠାରେ ରଜା ପ୍ରବେଶ ହେଲା
ଛାମୁରେ ଯାଇଣ ପ୍ରଣାମ କଲା ।
କର ଯୋଡ଼ ବୋଲେ ରଜା ଅଗ୍ରତ
ଅପରୂପ କଥା ଦେଖିଲି ଏଥେ ।
ସମୁଦ୍ରରେ ପଦ୍ମଫୁଲ ଫୁଟିଛି
ତହିଁରେ ଏକ କନ୍ୟା ବସିଅଛି
କି କହିବି ମୁହିଁ ତା ଗୁଣ ରଜ
ହାତ ଧରଣୀ ପ୍ରାୟେ ଶୋଭା ଦିଶି
ସିନ୍ଦୁର ଦୁହିତା ପରାୟେ ଶୋଭା
ମୁନି ମନୋହାରୀ ଜଗତ ଲୋଭା
ତାହା ଶୁଣି ରଜା ହରଷ ହେଲା
ଆମ୍ଭକୁ ନେଇ ଦେଖାଅ ବୋଇଲା ।
ଧନେଶ୍ୱର ରଜା ଚଳଲେ ଆଗେ
ରଜା ହଜେ କଲେ ତା ପଛଭାଗେ ।
ସମୁଦ୍ରତଟରେ ପ୍ରବେଶ ହୋଇଲେ
ଧନେଶ୍ୱର ମୁଖ ଚାହିଁ ବୋଇଲେ
କାହିଁ ଗଲା କନ୍ୟା ଏହି ଠାବରୁ
ଶୁଣିଣ ଭାଷା ନ ସ୍ଫୁରେ ମୁଖରୁ
ସ୍ତବ୍ଧ ହୋଇଣ କହେ ବଚନ
କନ୍ୟା ଦେଖିଥିଲି ଏହି ସ୍ଥାନେଣ ।
ଭ୍ରମର ଦେଖନ୍ତେ ଗଲେଣି କେଣେ
ଶୁଣି କରି ରଜା ପ୍ରକୋପ ମନେ
ବୋଇଲା ଆମ୍ଭଙ୍କୁ ଟାହୁଲି କଲୁ
ମିଛ କଥା କହି ଭଣ୍ଡି ଆଣିଲୁ
ମନ୍ତ୍ରୀକୁ କହିଲା ବେଗେ ଗୋ ଯାଅ
ବନ୍ଦୀଶାଳ ଘରେ ବନ୍ଦୀ କରଅ ।

Digitized by srujanika@gmail.com

ଏଥୁ ଅନନ୍ତରେ ଶୁଣ ସୁଜନେ
ମଙ୍ଗଳା ମାତାଙ୍କ କଥା ଘଟନେ
ତାହା ଶୁଣି ମନ୍ତ୍ରୀ ବେଗେ ସେ ଗଲା
ଧନେଶ୍ୱର ରାଜା ସାଙ୍ଗରେ ନେଲା ।
ତାହା ସଙ୍ଗେ ଥିଲେ ଅଠର ଜଣ
ସମସ୍ତେ ବନ୍ଦୀ ରହିଲେ ପୁଣ ।
ଧନେଶ୍ୱର ରାଜା ହସ୍ତରେ ଚଢେ
ଖୁଲଣା ମନା କରିଥିଲା ମୋତେ ।
ତା ବୋଲ ନ ମାନି ଆସିଲି ଛୁଟି
ଏବେତ ରହିଲି ବନ୍ଦୀରେ ପଡ଼ି ।
ଆଉ କି ସତେ ମୁଁ ଘର କରିବି
ତୁମ୍ଭ ଦୁହିଁଙ୍କ ନୟନେ ଦେଖିବି ।
ଏମନ୍ତ ହସ୍ତର ମନରେ ପୁଣି
ଭାଷା ଗୋଟିଏକ ଲେଖିଲେ ଜାଣି
ଅତି ସ୍ନେହରେ ନୟନା ପାଶକୁ
ଲେଖିଲେ ହେଳା ନ କରିବୁ ତାଙ୍କୁ
ସେ ତୋର ଅଟଇ ପାନ ଭଉଣୀ
ଦୟା ରଖିଥିବୁ ତା ଠାରେ ପୁଣି
ଅଣ ଆଦର କେବେ ନ କରିବୁ
ମୋ ପରି ସ୍ନେହ ତା ଠାରେ ରଖିବୁ ।
ମୁହିଁ ତ ଅଛି ଦୂର ପ୍ରଦେଶରେ
ରାଜା ରଖିଛି ମୋତେ ବନ୍ଦୀ ଘରେ ।
ସ୍ୱଦେଶକୁ ଯେ ମୁଁ ଥିଲି ଆସି
ଏଠାରେ ମୋତେ ଏତେ ଦଶା ଅଛି ।
ପୋଡ଼ପାଜ ମୋର କରମ କଥା
ତୁମ୍ଭେ ନ କରିବ ମନରେ ଚିନ୍ତା
ବିଧାତା ଯେବେ ପ୍ରାଣେ ରଖିଥିବ
ଅବଶ୍ୟ ତୁମ୍ଭ ସଙ୍ଗେ ଭେଟ ହେବ ।

Digitized by srujanika@gmail.com

ଏମନ୍ତ ପ୍ରକାରେ ଚିଠାଉ ଲେଖି
କାକପକ୍ଷୀକି ସେ ଗୋଟିଏ ଡାକି
ବୋଇଲେରେ କାକ ଶୁଣ ମୋ ବାଣୀ
ତୁ ତ ପଶୁଜନ୍ତୁ କିସ ନ ଜାଣି
ଧାବରା ବୋଲି ଏକ ଗ୍ରାମ ଅଛି
ତହିଁରେ ଥିଲା ମୋର ଅଧିପତି
ଯେଉଁଠାରେ ଉଚ୍ଚ ଘର ଦେଖିବୁ
ସେହିଠାରେ ନେଇ ଏ ଭୁଷା ଦେବୁ ।
ତାହା ଶୁଣି କାକ ହରଷ ହେଲା
ଚିଠାଉ ଗୋଟିକି ହାତେ ଧରିଲା
ଆକାଶ ମାର୍ଗରେ ଯାଉଛି ସେଇ .
ବିଶ୍ରାମ କାହିଁ ଦଣ୍ଡେ ନ ରହଇ
ନବ ଦିନେ କାକ ପ୍ରବେଶ ହେଲା
ପାଚେରୀ ଉପରେ ଯାଇଁ ବସିଲା ।
ଶୁଭ ଶୁଭ ବୋଲି ଦେଲାକ ଡାକ
ଚନେ ପଡ଼ି ହୁଅଇ ଝାଙ୍କ ଝାଙ୍କ
ନସୁନା ବୋଇଲା ସବୁ କାହିଁକି
ବିଦେଶରୁ ବା ପତି ଆସିବେ କି ।
ଦାସୀକୁ ବୋଇଲା ବେଗେ ଲୋ ଯାଅ
ଚଣ୍ଡୁଳ ମୁଠାଏ ବେଗେ ଲୋ ଦିଅ ।
ଶୁଣିଣ ଦାସୀ ଯେ ଚାଉଳ ନେଲା ।
ଭଲ ମନ୍ଦ ଭିନଠାରେ ବାଢ଼ିଲା
ଆଧାର ନ ଖାଇ କାକ ଯେ ପକ୍ଷୀ
ଚିଠାଉ ଗୋଟିଏ ଦେଲା ପକାଇ
ତାହା ଦେଖି ଦାସୀ ଧଇଲା କର
ନେଇ ଦେଲା ଯେ ନସୁନା ପାଖର ।

Digitized by srujanika@gmail.com

ନୟନା ସୁନ୍ଦରୀ ପଡ଼ି ଣ ଗଲା
ମୂର୍ଚ୍ଛୀଭୂତ ହୋଇ ଦଣ୍ଡେ ରହିଲା
ସୁମନା ବୋଇଲା ଶୁଣ ଗୋ ରାଣୀ
ସ୍ଥକତ ହୋଇଲା କମ୍ପାଏ ପୁଣି ।
ନୟନା ବୋଇଲା ଶୁଣ ଲୋ ଦାସୀ
କି କହିବି ଆମ୍ଭ ଭାଗ୍ୟରେ ଅଛି ।
ପ୍ରଥମ ସ୍ଥଦେ ସମ୍ପୂର୍ଣ୍ଣ ହୋଇଲା
ଧୀବର ଉକାସ୍ତ ଗୀତେ କହିଲେ ।

Digitized by srujanika@gmail.com

# ଢଗ ମହାଭାରତ

( ଲଇଡ଼ା, ସମ୍ବଲପୁର )

ଯୁଦେଷ୍ଠି ବଏଲେ ଶୁନ୍‌ରେ ଭୀମ କେନ୍‌ତା ବଗୃତ କର୍‌ମା ?
ଯଥାସିଲ । (୧) କର ସିନା ବନବାସଟା କାଟ୍‌ମା ।
ଭୀମ ବଏଲା ଶୁନ୍‌ରେ ଅର୍ଜୁନ ତୋର ବଗୃର କେନ୍‌ତା ?
ଦାଦା ସାହଦେବ ଯାହା କହୁଛନ୍ ବଗୃର କଲେ ବନ୍ତା ।
ଅର୍ଜୁନ ବଏଲା ଶୁନ୍‌ରେ ନକୁଲ ତତେ କେନ୍‌ତା ଦଶ୍‌ଶି ?
ନକୁଲ ବଏଲା କାଏଁ କର୍‌ମି ସହଦେବ ସବୁ ଜାନ୍‌ସି ।
ଚ୍ଛର ଭାଇ ବଗୃର ହଇ ସହଦେବକେ ଡାକଲେ
କେନ୍‌ତା ଉପାଏ କର୍‌ମା ବୋଲି ସଭେଯାକର ପୁଛଲେ ।
ସହଦେବ ବଏଲା ପାଞ୍ଚ ଭାଇ ବିରାଟ ଦେଶକେ ସିମା
କାମ୍ଭୁମାନ ଗୁପତ କର ଗୁପତ ନାମ ବହେମା ।
କୁନ୍ତ ଭେଜ ପଣ୍ଡା ହଇ ମୁଇଁ ଆଗଲ (୨) ସିମି
ନଆଏ ନଶାପ୍ ବ୍ରସାପ୍‌କତାପ୍ ମୁଇଁ ସବୁ କର୍‌ମି ।
ଭୀମ ବଏଲା ରନ୍ଧନଆଁ କାମେ ଭୁମ୍ଭର ପଛେ ଥିମି
ରନ୍ଧନଆଁ କାମଟା ପାଇଗଲେ ଭଲ କର ଖାଇମି ।

---

(୧) ଯଥାସିଲ – ଯେ କୌଣସି ମତେ ।
(୨) ଆଗଲ—ଆଗରେ

Digitized by srujanika@gmail.com

ଅର୍ଜୁନ ବଏଲେ ନାଚ ଶିଖାଇଲି ଯେଠଟା ମୋର ପୂରବା ନ
ନକୁଲ ବଏଲା ଘୁଣ୍ଡା ପାଲିଲି ମୋର କଥା ବନବାନ ।
ସହଦେବ ବଏଲା ଗାଏ ଚରାଇ ଝାର ଜଙ୍ଗଲେ ବୁଲ୍‌ମି
ଦୂପଣ୍ଡ (୧) ବଏଲେ ସଭେ ସାଏଲେ ମୁଇଁ କେନ୍‌ତା କର୍‌ମି ?
ଭୀମ ବଏଲେ ଆରେ ସହଦେବ କେନ୍‌ତା କଥା କହେସୁ
ପାଞ୍ଚ ଭାଇ ବିରାଟ ଗଲେ ତାକେ କେନ୍‌କେ ରଖସୁ ।
ଦୂପଣ୍ଡ ବଏଲେ ମୋର ଲାଗି ଯନ୍ଦ ଏତ୍‌କ ଚିନ୍ତା କରତ
ରଜାର ପୁଅ ହଇ କରି କାଏଁ ଝାରେ ଜଙ୍ଗଲେ ବୁଲ ତ ।
ହେଲେ ହେଉ ମହତ ଥାଉ ଯେନ୍ତା ପନେ ହେଲେ ରହେମି
ବର୍ଷେ ଗଲେ ଯୁଗେ ଗଲା ସୈରନ୍ଧ୍ରୀ ଦାସୀ ବନ୍‌ମି ।
ଭୀମ ବଏଲା ଶୁନ୍‌ରେ ପିଲା ଏଖେନ୍ (୨) କେନ୍‌ତା କର୍‌ମା ?
ଗଦା ମୁଦ୍‌ଗର ଧନୁକାଣ୍ଡ ଇଛେନ୍ (୩) କେନ୍‌ତା ରଖ୍‌ମା ?
ଅର୍ଜୁନ ବଏଲା ଶୁନ୍‌ରେ ଭୀମ ମୁଇଁ ଦେଖିଛେ ଗୁମ୍ଫାଟେ
ଗୁମ୍ଫାର ଭିତରେ ଭିତରେ ଅଛି ଷାଠେ ହାତର ଖୁଁଠାଟେ । (୪)
ଭୀମ ଅର୍ଜୁନ ବାହାର ହେଲେ ହାତ ହତିଆର ଧରି
ଗଦା ମୁଦ୍‌ଗର ଧନୁକାଣ୍ଡ ସବୁ ଦେଲେ ଭିତରେ ଭରି ।
ଭୀମ ବଏଲା ଶୁନ୍‌ରେ ଅର୍ଜୁନ ଯୁଜେଷ୍ଟିକେ ଡରୁଛେଁ
ନି ହେଲେ (୫) ଶଏଟା ଦୁର୍ଯ୍ୟୋଧନକେ ମୁଇଁ କେନେ ଭାଲୁଛେଁ ।
ଏତେ ବୋଲି ପାଞ୍ଚଭାଇ ଯାକର ବିରାଟ ପଥେ ଚଲ୍‌ଲେ
ଆଗେ ରାମ ପଛେ ଲକ୍ଷ୍ମଣ ସୀତା ବାଗିର ହଣ୍‌ଲେ ।
ସେମାନେ ଥିଲେ ଦୁଇଟା ଭାଇ ଏମାନେ ହେଲେ ପାଞ୍ଚ୍‌ଟା
ଦୁହିଙ୍କର ସଙ୍ଗେ ମାଏଝି ଗୁଟେ ଆଉ ସବୁ ଏକାଟା ।

---

(୧) ଦୂପଣ୍ଡ—ଦ୍ରୌପଦୀ ।
(୨) ଏଖେନ୍ } ଏକ୍ଷଣି ।
(୩) ଇଛେନ୍ }
(୪) ଖୁଁଠା—ଖୁଣ୍ଟା, ଶମୀବୃକ୍ଷ
(୫) ନି ହେଲେ—ନ ହେଲେ

Digitized by srujanika@gmail.com

# ମହାରାଜାଙ୍କ କଳାପାଣି

( ମଉଦା, କଟକ )

ଅଚଳନ୍ତ ଜଗନ୍ନାଥ ଦେଉଳେ ଅଛନ୍ତି
ଚଳନ୍ତ ପ୍ରତିମା ବନ୍ଧୁ ଚାଲି ଯାଉଛନ୍ତି
ବନ୍ଧୁ, ଚାଲିଯିବେ ଯେବେ
କାହାର ମହିମା ଆଉ ସମସ୍ତେ ଦେଖିବେ ?
ଆରଦିନ କଟକରେ ପ୍ରବେଶ ହୋଇଲେ
ଖଣ୍ଡେ ଦୂରୁ ଲୋକେ ରହିଁ ତାଟକା ହୋଇଲେ
ବନ୍ଧୁ ସାହେବ ଆସୁଚି
ବନ୍ଦୀଘରେ ନେଇ କଣ ହାଜତେ ରଖୁଚି ।
ଯେତେବେଳେ ଜର୍ଜି ଗମ୍ଭା ନେଇ ଥୋଇ ଦେଲେ
ପିନ୍ଧି ନ ଜାଣିଲାକୁ ତ କୋରଧ ହୋଇଲେ
ବନ୍ଧୁ, ଖରା ରୃତ ମାସ
ଦିହରେ ରହିଲେ ସେ ତ ପାଇବେ କଲଶ ।
ଶୁଆକୁ ତ ପଞ୍ଜରାରେ ରଖିଲ ପରାଇ
ରାଜନଙ୍କୁ ବନ୍ଦୀଶାଳେ ରଖିଛନ୍ତି ନେଇ
ବନ୍ଧୁ, ଘଟିଚି କି ଦୁଃଖ
ଗଛେ ଗଛେ ଚଢ଼ି ରହିଁଛନ୍ତି ନଗ୍ର ଲୋକ ।
ସୁନା ଥାଳୀ ରୂପା ବାଟି କାହିଁଗଲା ଏବେ ?
ଲୁହା କସାଇରେ ଭାତ ଖାଇ ନ ପାରିବେ ?
ବନ୍ଧୁ, ନୃପତି ଶରୀର
ବହୁତ କଳେଶ ନଷ୍ଟ ହୋଇବ ଏଥର ।

Digitized by srujanika@gmail.com

# ନଅଙ୍କ ଗୀତ

(ମଉଦା, କଟକ)

କି କଲେ ନବ ଅଙ୍କରେ ହରି
ହରି ନ ଶୁଣିଲେ ଦୁଃଖୀ ଗୁହାରି
କର୍ତ୍ତ୍ରିଙ୍କୁ ଡେରି ଚନ୍ଦକୁ ଡରି
ଇନ୍ଦ୍ରଙ୍କ ବରଷା ଗଲେ ପାସୋରି ? (ଘୋଷା)
ପ୍ରଥମ ଶ୍ରାବଣ ହେଲା ଅକାରଣ
ମେଘଙ୍କୁ ନ ଦେଖି ଚିନ୍ତା ସବୁରି
ନୋହିବାରୁ ଜଳ ଗୋରୁ କଲେ ମେଳ
ପଡ଼ିଆରେ ଠୁଳ କଲେ କି ଧରି
ଯେତେକ ଯାହାର ଛଡ଼ା ବାଛୁରି
ଗୋରୁଙ୍କୁ ଖୋଲିଲେ ଖେଦଢ଼ି ଖିରି ।୧।
ନାୟକ ପଣ୍ଡିତ କହୁଥିଲେ ସତ୍ୟ
ଯୋଗ ଲଗ୍ନ ଭଗ୍ନ ହେଲା ତାଙ୍କରି
ଆଗେ ହୋଇ ଠିଆ ଯେହେତୁ ଫୁଟେ କଥା
ଆଗ ରୁଆ ବୁଆ ହଳଦା ମାରି
ମୁଲକ ଭରି ହେଲା ସଂହାରି
ଜନେ ଦେଖି ହସ୍ତ କପାଳେ ମାରି ।୨।
ଭାଦ୍ରବ ମାସେ ତ ଲୋକେ ମାରି ଯନ୍ତ
ଶୁଖାଇ ରଖିଲେ ଯୋଡ଼, ପୋଖରି

Digitized by srujanika@gmail.com

କେ ଧରଣ କୋଡ଼ ହୁଙ୍କା ଦଣ୍ଡା ଛାଡ଼
ବୁଦା ବେଣାବାଡ଼ ନେଲେକ ଚର
ସେ କୃଷିକାରୀ, ହିଂସା ଆଚର
ପାଣିବୃହାଠାରେ କଲେ ଫୌଦାରୀ । ୩ ।
ହୋଇଲା ଆଶ୍ୱିନ ଅଧେ ଫୁଲ ଧାନ
ଅଧେ ଭିତରକୁ ରହିଲା ମର
ଠେଙ୍ଗ ଧାନ ମଲା ଖାଲ ହିଁ ଶୁଖିଲା
କେ ଯାଇଁ ଦେଖିଲେ ବୁଲି କଆର
ଧର୍ମ ସୁମର, ବସିଲେ ଝୁରି
ସେହି ଦିନୁ କାଳ ଅଇଲା ଘେର । ୪ ।
ହୋଇଲା କାର୍ତ୍ତିକ ଲୋକେ ଦକ ଦକ
କେଉଁ ଲୋକ ବୁଲୁଥାଏ ଯେ ଡର
ହେଲା ଲଟବନ୍ଧ, ଲୋକେ ହେଲେ ଧନ୍ଧ
କେତେ ବଡ଼ ଫଳ ରହିଲେ ହାର
ପୁରୁଷ ନାରୀ, ଚନ୍ତା ସବୁର
କେମନ୍ତେ ସହିବା ହାକମ୍ଜାର । ୫ ।
ମାର୍ଗଶୀର ମାସ ହୋଇଲା ପ୍ରବେଶ
ଯେତେ କରେ ଗ୍ରାସ ପେଟ ନ ପୂର
ପୌଷ ମାସ ହେଲା ଆଶା ନ ଛୁଟିଲା
କେତ୍ତୁ କଟିଗଲା ଧାନ ବକର
ମୂଲକ ଭର ହେଲା ଫହାର
ତାଙ୍କୁ ନ ଦିଶିଲା ମାଣ୍ଡିଆ ବର
ଅନ୍ନ ବିନା ଲୋକେ ବସିଲେ ଝୁରି । ୬ ।
ହୋଇଲାକ ମାଘ ସବୁ ଦୁରୁଯୋଗ
ପ୍ରାଣୀ କଲେ ଭୋଗ ଦିବା ଶର୍ବରୀ
କାନ୍ତାର ପଡ଼ିଲା ପେଟ କଷ୍ଟ ହେଲା
ଘର ଛାଡ଼ିକରି ଚକ ଯାନ୍ତି ଫେରି

Digitized by srujanika@gmail.com

ଚଉକ ଦାଶ୍ୱ, ଲାଗିଲା ଗେର
ଗଣେ ନପାଡ଼ି ଦେଲେ ଘର ପାଟେଶ୍ୱ ।୭।
ହୋଇଲା ଫାଲ୍‌ଗୁନ ମାସ ଯେ ଦ୍ୱିଗୁଣ
ଭଗାଚ୍ଛନ୍ଦସା ତ ହୋଇଲା ହୁର
ଦାଣ୍ଡ ଭୋଗ ପାଇଁ ନ ମିଳିଲା ଖଇ
ବିମାନ ନ ପାଇ ବୁଲି ନ ପାର
ରାଧ'ବନ୍ଧାଶ୍ୱ, ଭରସା କର
ନଆଶା ହୋଇଲେ କେତେ ପ୍ରଜାଶ୍ୱ ।୮।
ହୋଇଲା ଚଇତ ଅଧେ ବିପଶ୍ୱତ
ପ୍ରାଣୀଙ୍କି ହୋଇଲା ଦୁର୍ଗତି ଭର
ହେଙ୍ଗୁଲା (୧) ବହ୍ନିଲା, ପ୍ରାଣୀଙ୍କି ଦହ୍ନିଲା
ଦାଣ୍ଡୁଅ ହୋଇଲା କଣ୍ଠା କଆର
ତୋଟିକ ଧଣ୍ଡ, ପାଟି ବିସ୍ତାର
କାଟି ଦେଉଅଛୁ ଲଗାଇ କୁଶ୍ୱ ।୯।
ହୋଇଲା ବୈଶଖ ମାସକୁ ଦୁର୍ଭିକ୍ଷ
ହେଲା ଚନ୍ଦ୍ରକ୍ଷେ ହେଲା ତିମିର
ମାତାକୁ କୁମର ହେଲା ବଇଶ୍ୱ
ପୁତକୁ ମାଣ୍ଡ, ସଙ୍ଗରେ ନ ନେଲେ
କେହ୍ନି କାହାର ।୧୦।
ହୋଇଲାକ ଜ୍ୟେଷ୍ଠ ହେଲା ହାଣକାଟ
ଭୋକେ ଆତୁଶ୍ୱ, କୁଳବନ୍ତ ବାଳୀ ଗଲେ ଶାଗ ତୋଳି
ଘରେ ଘରେ କଳି କନ୍ଦଳ ପୂର
ଭୋକରେ ମର
ମାଇପେ ବିକଲେ ମୁଣ୍ଡ ଚଉଁଶ୍ୱ ।୧୧।
ଥାଳି କଂସା ଲୋଟା ଶରଦା ମୁକୁଟା
କେ ବିକଲେ ପାଠ ମଠା ମସୁଶ୍ୱ

(୧) ହେଙ୍ଗୁଲା—ଠାକୁରାଣୀ, ଏଠି ନିଆଁ ଅର୍ଥରେ ବ୍ୟବହୃତ ।

Digitized by srujanika@gmail.com

ଲେଖୁ ବନାଉତ, ସବୁ ହେଲା ବ୍ୟର୍ଥ
ଲୋକେ ଵକ ଦେଲେ ଦଶିଆ ଦର
ବର ଭଉଁରୀ, ଲାଗିଛୁ ଜର,
ତାକୁ ଦେଇ ନେଲେ ମାଣ୍ଡିଆ ବର । ୧୨ ।
ନୋଳ ଫୁଲଗୁଣା ମୃଦ ମୂଲ କଣା
ନୋହିଲା ଠିକଣା ଭାଉ ତାହାର
ହାତରେ ଓଜନ କଲେ ମହାଜନ
ଅଜ୍ଞାନ ହୋଇଲେ ଜ୍ଞାନ ପାସୋର
ରଖିବେ ହତ, ଏ ଭବୁଁ ପାର
ଅଙ୍ଗାର ହୋଇବ ସୁନା ପଞ୍ଜୁରୀ । ୧୩ ।
ଅନ୍ନଛତ୍ର ଭାତ ରଖିଲା ମହତ
କମ୍ପାନୀ ନେଲା ସେ ଟିକସ କର
କଲକତା, ସହର ମଧ୍ୟେ ବାଲେଶ୍ୱର
କନ୍ଦରପାଡ଼, ରହିଛି ଆବୋର
ଯେତେ ବଜାରୀ, ପତର ପାର
ଭାତ, ତରକାରୀ ଖାଉଁ ଖାଉଁ ମଲେ
କଲିଜା ଥର । ୧୪ ।
ହେଲା ଦଶଅଙ୍କ ବରତିଲେ ଲୋକ
ଜୟ ଡେଙ୍ଗୁରା ସେ ବାଜିଲା ତୁରୀ
ଲକ୍ଷ୍ମୀ ଦୟା ହେଲା, କାଳ ଘୁଞ୍ଚିଗଲା
ଗୋପାଳ କରଇ ଏତେ ଗୁହାର
ଚିତ୍ତେ ବିଚାର, ରଖ ମୁରାର
ଆଗକୁ ଲାଗିବ ଯମର ଡୋର । ୧୫ ।

# ନଅଙ୍କ ଗୀତ

(କଟକ)

ନଅଙ୍କ ମନୁ ନ ଯିବ ଚାଷୋର ହୋ ।
ଆଦ୍ୟ ମାର୍ଗଶୀର ମାସର ମୂଳ
ଶଷ୍ୟ ଗଲା ଭୁଟି ନୋହିଲାକ ବୃଷ୍ଟି
ଆଗ ହୋଇ ମଲା ଠେଙ୍ଗ ଠିକର
ଯୋଡ଼ ଆହାର
ବୋହୂଣ ମାର
ଆଠପଣ ସାଗ ହେଲା ଅମଳ ।
ଧନୁମାସେ ଧାନ ବକର ଶୁଣିଣ
ମହାଜନ ବୋଲେ ଘରେ ନ ଭର
ବକାକଣା ଭାଉ କ କରିବା ଆଉ
ସଦର ଗଉଣୀ ଏ ସୂର ସେର
ଦଶ ଏଗାର
କାଠିଆକୁ ଦେଲେ ବାରଟେଅର ।
ମକର ମାସରେ, ଶ୍ରୀ ମାଳକନ୍ଦରେ
ଜାହାଜ ଲାଗିଲା ମହୋଦଧିର
କେଉଟ ଗୁଡ଼ଆ ଚଷା ବଳନ୍ଦଆ

Digitized by srujanika@gmail.com

କେତେ କଲେ ପାଇକାର ବେପାର
ପାଇ ଫିକର
ଧାନ ଗୃଜନ
ଛତ୍ରୀଏ ବଙ୍କଲେ ଟନ ସୁନ୍ଦର ।
କୁମ୍ଭରେ କୁରଳ, ଚଙ୍ଗ ଚଣକାର
ଗ୍ରାମ ଗ୍ରାମ ହୋଇ ବୁଲଲେ ନର
ସମସ୍ତେ କହୁଲେ ସାହେବ ଅଇଲେ
ଠଙ୍କାରେ ଗୃଜନ ଏ ଷୋଳ ସେର
ହବ ଏଥର
ସାହେବ କ କଲ ସବୁ ଅନ୍ତର ।
ହେଲ ମୀନ ମାସ ଦକ୍ଷିଣ ଯେ ଦେଶ
ଯୋତିଷ ଅଇଲ ଘରକୁ ଘର !
ମାଣ୍ଡିଆକୁ ଗୃଣେ ଦେଖିଲୁ ନୟନେ
ଶୁଣା ନ ଥିଲ ଏ କର୍ଣ୍ଣ ପଥର ।
ଚବଶ କାଳ
ଯେ ବୃଦ୍ଧ ନର
ସେ ବୋଇଲେ ଏହା କ ଚମତ୍କାର !
ମେଷରେ ମନୁଷ୍ୟ ଉଡ଼ିଲ ସାହସ
ଅନ୍ଧ ଛଅ ହେଲ ହଟିର ପୁର
ସେ ଗାଆଁ ବଡ଼େଇ ଭାଇକ ଯେ କହ୍ନ
ଭୁ ଖାଇଲୁ ମୁଁ ତ ମଲ ଏଥର
ବାରଧି ଛାର, ଧଇଲ କର
ହାଣିଲ ଚଞ୍ଚଳ ଛିଣ୍ଡିଲ ଶିର ।
ହେଲ ବୃଷ ମାସ, ଛଳମାଳ ଦେଶ
ଗୋରୁ ଗାଈ ବକା ପନ୍ଧକୁ ପନ୍ଧ
କଂସା ଛାଳ ଲୋଟା, ପଳ ଦ ପଇସା
ସୁନା ମସା ବାରଅଣା ନକର

Digitized by srujanika@gmail.com

ନାହିଁଟି ଭୁଲ, ଝାଙ୍କି ହସ୍ତର
କଏ ଦେବ ହାଥ ଧାନ ଗୁଜଳ ।
ମିଥୁନେ ନିଧନ ବାଜର ଜଛନ୍ଧ
କେତେ ପଡ଼ିଗଲେ ସଡ଼କ ପର
କୁଡ଼ କୁଡ଼ ମଡ଼ା ଅବୃଣିକ ଖାଡ଼ା
ପୋଡ଼ ପୋତିବାକୁ ନାହିଁଟି ବେଳ
କାଳ ଦୁର୍ବଳ, ହେଲା ଏଥର
ନ ଖାଇଲେ ତାଙ୍କୁ ଶ୍ୱାନ ଶୃଗାଳ
ହୋଇଲା କକଡ଼ା ମଲେ ବୁଡ଼ା ବୁଡ଼ା
ଖାଇ ଖଡ଼ା ଶାଗ ସୁଆଁ ରୁଜଳ
ଏହ୍ମ କାଳ ଆଉ ନ ଦେଖିବା ସେହ୍ମ
ଭଣ୍ଡାରୀ ନ କଲା ତାଙ୍କୁ ଖିଅର
ଧୋବା ମଞ୍ଜଳ, କୁମ୍ଭାର ଘର
ମରଣୁଁ ଏ କଷ୍ଟ ହେଲା ଅପାର
ସିଂହ ମାସେ ଯାହା ହେଲା ନୂଆଖିଆ
ପଡ଼ଶା ଘରକୁ ନାହିଁ ଖବର
ଛୁର ନିଧି ଭଣେ ବଞ୍ଚିବା କି ପ୍ରାଣେ
ଏ କଷ୍ଟରୁ ହରି କରିବେ ପାର ।

Digitized by srujanika@gmail.com

# ନବାଙ୍କ ଚରିତ

ରଖିବ ନାହିଁ ଏ କାଳ ଆଉ
ଦାଉ ଉପରେ ପକାଉଛୁ ଦାଉ । ପଦ ।
କିଣିବାକୁ ଧାନ ଗୃଉଳ ନ ମିଳେ
ଋଣୀ ମାଗିଲେ ନାହିଁ କଲେ ସାହୁ ।
ଅନ୍ନକ୍ଳେଶ ହେତୁ ପଡ଼ଗଲେ ଜନେ
ଯହିଁ ନ ମିଳିଲା ମାଣ୍ଡିଆ ଜାଉ । ୧ ।

ଯେ ଯେଉଁମାନଙ୍କେ ଫନ୍ଦା ଆଗମ୍ଭିଲେ
ମଲା ସେ ନିତି ପାଣି ଦେଉ ଦେଉ ।
ଖାଞ୍ଜିବଜା ହୋଇ ପିଞ୍ଜି ହୋଇଗଲେ
କା ପ୍ରାଣ ଗଲା ମଞ୍ଜି ଭ୍ୟାଉ ଭ୍ୟାଉ । ୨ ।

ଯେ ଯେଉଁମାନଙ୍କ ଋଣ ଶୁଝିଥିଲେ
ମାଗିଲେ ଟିପ ନ ଛୁଇଁଲେ ସେହୁ ।
ଏ ବରଷ ତୁମେ ଜଞ୍ଜାଳ କରୁଛ
ଜଞ୍ଜାଳ କଲେ ଆମ୍ଭେ ଦେବୁ କାହୁଁ । ୩ ।

ଯେ ଯେଉଁମାନଙ୍କ ମୂଲ ଲଗିଥିଲେ
ମାଗିଲେ ନିତି କଲେ ହଉ ହଉ ।
ନିଦାନ ବେଳକୁ ଅତି କ୍ରୋଧ ହୋଇ
ନାକ ଫୁଲାଇ ହେଲେ ରାଉ ରାଉ । ୪ ।
ଯିବା ଆସିବାକୁ ପାଦ ନ ଚଳିଲା
କା ପ୍ରାଣ ଗଲା ବାଟେ ଯାଉଁ ଯାଉଁ ।

Digitized by srujanika@gmail.com

ମା ଖାଉଥିଲେ ପୁଅ ଝୁହୁଁ ଥାଇ
ଉଚ୍ଛିଷ୍ଟ ଅନ୍ନ ନ ପାଇଲେ କାଉ । ୫ ।

ଗ୍ରାମେ ଗ୍ରାମେ ଉପଦ୍ରବ ପଡ଼ିବାରୁ
ସେହୁ ଚିନ୍ତା ହେଲା ଗ୍ରାସ ନ ପାହୁ ।
ଯେ ଅନ୍ନ ପାଇଲେ ସେ ଅନ୍ନ ଖାଇଲେ
ତାକ ଲୁଣ୍ଠନ୍ତି ଆଣି ଦେଉ ଦେଉ । ୬ ।

ସୁନା ରୂପା ଆଦ୍ୟ ପିତ୍ତଳ ପର୍ଯ୍ୟନ୍ତେ
ହାତ ମୂଲ ହେଲେ ଭୁଲବା ଥାଉ ।
କଂସା ତମ୍ବାମାନ ମାଟିର ସମାନ
ପଚ୍ଚୁରୁଅଛି କେ ତାହାର ଭାଉ । ୭ ।

ଏକମାତ୍ର ଧାନ ହୋଇଲା ପ୍ରଧାନ
ଅଚଲ ହାତ ନଉତି ପୂରାଉ ।
ଟଙ୍କାକୁ ଏକ ନଉତି ଦଶବଶ୍ୟା
ନେଲେ ନଥ ନ ହେଲେ ଧାନ ଥାଉ । ୮ ।

ଥିଲା ଜନଙ୍କର ଏମନ୍ତ ଉତ୍ତର
ଶୁଣି କଣିଖିଆ ଆକୁଳ ଦେହୁ ।
ବୁଡ଼ିଲା ଚେତନ ହେଲେ ହତଜ୍ଞାନ
ଜୀବନ ଗଲା ନଷ୍ଟେ ଗୃହୁଁ ଗୃହୁଁ । ୯ ।

ଦୀନ ମାଲାମ୍ବର ପଟ୍ଟନାୟକର
ଅନ୍ୟ ଭରସା ନାହିଁ ମହାବାହୁ ।
ନୀଳାଦ୍ରିବିହାରୀ ଶୁଣ ମୋ ଗୁହାରି
ଦୀନବନ୍ଧୁ ନାମ ବିଫଳ ନୋହୁ । ୧୦ ।

Digitized by srujanika@gmail.com

## ମଟରଗୁ ( ଗାଥା ଗୀତିକା )

( କୋରାପୁଟ )

କୁଲ ପୂଗ୍ରଇ କାଠିଲ ଅଦା ଗୋ  କୁଲ ପୂଗ୍ରଇ କାଠିଲ ଅଦା
ପନକ ବନ୍ଧାଇ ଗ୍ରଧା, ବୁଢ଼ୀ ମାଁ, ପନକ ବନ୍ଧାଇ ଗ୍ରଧା । ୧ ।
କୁଲ ପୂଗ୍ରଇ କାଠିଲ ଲଉ ଗୋ, କୁଲ ପୂଗ୍ରଇ କାଠିଲ ଲଉ
ପନକ ବନ୍ଧାଇ ବୋଉ, ବୁଢ଼ୀମା, ପନକ ବନ୍ଧାଇ ବୋଉ । ୨ ।
ବାର ବରଷର ବାଣ୍ଟ ଗୋ କୁମ୍ଭାରୁଣୀ, ବାର ବରଷର ବାଣ୍ଟ
ଈଶ୍ୱର ଦେଉଳକୁ ଗଲ ବୁଢ଼ୀମା, ଈଶ୍ୱର ଦେଉଳକୁ ଗଲ । ୩ ।
ସନ୍ତାନ ନାଇଁ ବୋଇଲ, କୁମ୍ଭାରୁଣୀ. ସନ୍ତାନ ନାଇଁ ବୋଇଲ
ସନ୍ତାନ ଦେବ ଯା ବୋଲେ ଈଶ୍ୱର, ସନ୍ତାନ ଦେବ ଯା ବୋଲେ । ୪ ।
ପାଦକ କୁଣେ ପଡ଼ୁଚ ଗୋ, କୁମ୍ଭାରୁଣୀ ପାଦକୁ କୁଣେ ପଡ଼ୁଚ,
ଦୁଇ ମାସ ହୋଇଲ ଗୋ ଦୁଇ ମାସ ହୋଇଲ । ୫ ।
ତିନ ଯାଇକରି ଚୃଣ ପଇଲ ଗୋ, ତିନ ଯାଇକରି ଚୃଣ ପାଇଲ
ଚୃଣ ଯାଇ ପାଞ୍ଚ ମାସ ହେଲ, ଚୃଣ ଯାଇ ପାଞ୍ଚ ମାସ ହେଲ । ୬ ।
ପାଞ୍ଚ ଯାଇକରି ଛଅ ପଇଲ ଗୋ, ଛଅ ଯାଇ ସାତ ମାସ ହୋଇଲ
କୁମ୍ଭାରୁଣୀ ସାତ ଯାଇ ଆଠ ମାସ ହେଲ । ୭ ।
ଆଠ ଯାଇ ନଅମାସ ପଇଲ ଗୋ, ନ'ଯାଇ ଦଶମାସ ହୋଇଲ । ୮ ।
କାଠକୁ ଯା ବୋଇଲ, କୁମ୍ଭାରୁଣୀ, କାଠକୁ ଯା ବୋଇଲ
କାଠ ଆଣି ଛେଚେଲ ଗୋ କାଠ ଆଣି ଛେଚଲ
କୁମ୍ଭାରୁଣୀ କାଠ ଆଣି ଛେଚଲ । ୯ ।

Digitized by srujanika@gmail.com

ମାଟି କ ଯାଅ ବୋଇଲା ଗୋ କୁମ୍ଭାର ମାଟି କ ଯାଅ ବୋଇଲା
ମାଟି ଆଣି ଛେଚିଲା··· । ୧୦ ।

ମାଟି ବଚବଚଲା କୁମ୍ଭାର କୁମ୍ଭାର ମାଟି ବଚବଇ ଦେଲା
କୁମ୍ଭାରୁଣୀ ଉଆ ବସାଇଲା, କୁମ୍ଭାରୁଣୀ ଉଆ ବସାଇଲା ।
କୁମ୍ଭାରୁଣୀ କ ହାଣ୍ଡି ଗଢ଼େ ବୋଇଲା କୁମ୍ଭାର, କୁମ୍ଭାରୁଣୀ
ହାଣ୍ଡି ଗଢ଼ି ଦେଲା, କୁମ୍ଭାରୁଣୀ କ ଭୂଜ ବାନ୍ଧେ ବୋଇଲା
କୁମ୍ଭାରୁଣୀ କ ଭୂଜ ବାନ୍ଧେ ବୋଇଲା
କୁମ୍ଭାରୁଣୀ କ ଭୂଜ ବାନ୍ଧି ଦେଲା ।
ମୁଣ୍ଡେ ଟେକେ ବୋଇଲା ଯେ କୁମ୍ଭାରୁଣୀ କୁମ୍ଭାର ମୁଣ୍ଡକୁ ଯେ
ଟେକିଦେଲା ।

ପାପର ବଥା ଖାଉଛି ହାଇ ମୋର, ଶୂଳ ବଥା ଖାଉଛି ।
ପାଦରେ ଶରଣ ପଶିଲା । ଦାନ୍ତରେ ତିରଣ ଧଇଲା ।
ମୁଣ୍ଡକୁ ଭୂଜ ଟେକିଲା, କୁମ୍ଭାର ମୁଣ୍ଡକୁ ଭୂଜ ଟେକିଲା ।
ଚିଲ ଚରୁଗୁଣୀର ଶବଦ ନାହିଁ, ପିଲା ପୁଛ କୁଣୀର ଶବଦ ନାହିଁ ।
ସେହିପରି ନଶବଦ ହୋଇଛି ବାଟରେ, ସେହିପରି ନଶବଦ ହୋଇଛି
ବାଟରେ ।

ପାଦର ବଥା ଖାଉଛି ଯେ ସେ ଗାଁରେ ପାଦରେ ଶୂଳ ଖାଉଛି ।
ବେଇକ ବେଇକ ହାଣ୍ଡି ବିକିଲା କୁମ୍ଭାର, ବେଇକ ବେଇକ ହାଣ୍ଡି
ବିକିଲା

ପଣନ୍ତରେ ବାନ୍ଧିଲା ପଇସା ଘରକୁ ଆଇଁଲା ।
ଡାଳ ନଡ଼ିଆ ସବୁ ଛିଡ଼ି ପଡ଼ୁଛି ଯେ, ଆମ୍ବ ଜାମ୍ବ ସବୁ ଛିଡ଼ିପଡ଼ୁଛି ।
ସେହିପରି ନଶବଦ ହୋଇଛି ବାଟରେ, ସେହିପରି ନଶବଦ
ହୋଇଛି ବାଟ ।

କୁମ୍ଭାର ବୋଇଲା କୁମ୍ଭାରୁଣୀ କନା, କୁମ୍ଭାର ବୋଇଲା କୁମ୍ଭାରୁଣୀ କ ।
ଅଣ୍ଡିରି ପିଲା ହେଲେ ଧରି ଆସିବୁ, ମୋ ମାଇକନା ପିଲା ହେଲେ
ଛାଡ଼ି ଆସିବୁ ।

ସେହିପରି ବଚନ କହୁଛି କୁମ୍ଭାର, ସେହିପରି ବଚନ କହୁଛି ।
ମାଇକନା ପିଲାଟେ ହେଲା କୁମ୍ଭାରୁଣୀର, ମାଇକନା ପିଲାଟି ହେଲା ।

Digitized by srujanika@gmail.com

ତୋ ବାପା ଇମିତ୍ତ କହୁଛି ଲୋ ଝିଅ, ତୋ ବାପା ଇମିତ୍ତ କହୁଛି ।
ବାଘ ଭାଲୁର ଦେଶ ଲୋ ଝିଅ, ମୋର କେତେ ବାଘ ଭାଲୁ ଖାଇବ ।
ଚଲ ଚରଗୁଣୀର ଦେଶଲୋ ଝିଅ, ଚଲ ଚରଗୁଣୀର ଦେଶ ।।
ମରିଚ ବାଡ଼ରେ ଜନମିଲା ଲୋ ଝିଅ, ମରିଚ ବାଡ଼ରେ ଜନମିଲା ।
ପଣତ କାନ ଚିରିଲା କୁମ୍ଭାରୁଣୀ ପଣତକାନ ଚିରିଲା,
ମରିଗୁକୁ ଶୁଖାଇ ଯେ ।।
ଆସରେ ଆସ ଧାମୁଡ଼ିଆ, ପାଇକ ବେଣ୍ଟକୁ ଯିବା,
ବଣଯାକ ବୁଲି ହାଲିଆ ହେଲେ ଯେ, ବଣଯାକ ବୁଲି ହାଲିଆ ।
ଜନ୍ତୁ ମିଳିଲା ନାହିଁ ପାଇକକୁ ଯେ, ଜନ୍ତୁ ମିଳିଲା ନାହିଁ ।
ହାଲିଆ ହୋଇଣ ଗଲେ ପାଇକ ଯେ, ଗଛମୂଳେ ବସିଲେ ।
ରାଉ ରାଉ କାନ୍ଦୁଛି ଯେ ମରିଚ, ରାଉ ରାଉ କାନ୍ଦୁଛି ।
ପିଲା କାନ୍ଦୁଣି ଯେ ଶୁଭୁଛିରେ ପାଇକ, ପିଲା କାନ୍ଦୁଣି ଶୁଭୁଛି ।
ମରିଚ ବାଡ଼କୁ ଗଲେ ଯେ ପାଇକ, ମରିଚ ବାଡ଼କୁ ଗଲେ ।
ମରିଚ ବାଡ଼ରେ ମରିଗୁ ଅଛି ଯେ, ମରିଚ ବାଡ଼ରେ ଅଛି ।
ମରିଗୁକୁ ଧରି ଘରକୁ ଗଲେ ଯେ, ମରିଗୁକୁ ଧରି ଘରକୁ ଗଲେ ।
ମରିଗୁ ବଡ଼ ହୋଇଲା ଯେ, ମରିଗୁ ବଡ଼ ହୋଇଲା ।
ମରିଗୁ ଦିନେ ପାଣିକି ଗଲା ଯେ ମରିଗୁ ପାଣିକି ଗଲା
ରଜା ଦେଖୁଥିଲା ମେଡ଼ ଉପରୁ ଯେ, ମରିଗୁକୁ ଦେଖୁଥିଲା ।
ରଜାପୁଅ ମାକୁ କହିଲା ଯେ, ରଜାପୁଅ ମାକୁ କହିଲା ।
ମରିଗୁକୁ ବାହା ହେବି ବୋଇଲା ଯେ, ରଜା ମରିଗୁକୁ ବାହା ହେବ ।
ତା ମା ଯେ ନାହିଁ ନାହିଁ କଲା ଯେ, ତା ମାଁ ଯେ ନାହିଁ କଲା ;
ମୂଷାମାଟି ରଣ ଭଣ ଯେ ମୂଷାମାଟି ରଣ ଭଣ ।
ସେ ଘର ମୋହିଁଙ୍କ ଲେ ରଜନ, ସେ ଘର ମୋହିଁଙ୍କ ଗଲା ।
କବାଟ ପକାଇ ରହିଲା ଯେ, କବାଟ ପକାଇ ରହିଲା ।
ଛତୁଣ ନ ଭଜା ରାନ୍ଧିଲା ତା ମା ତା, ଛତୁଣ ନଭଜା ରାନ୍ଧିଲା ।
ମଣାଇ ବେଳ ହୋଇଲା ରଜନ, ମଣାଇ ବେଳ ହୋଇଲା ।
ଅଛରୁ ବୋଲି ମୋର ବେଚ ପାଇକ,
ଶୁଣ ମୋର ବୋଲ ଧାଉଡ଼ିଆ ପାଇକ ।

Digitized by srujanika@gmail.com

ମଣାଇ ବେଳ ହୋଇଲା ରାଜନର, ମଣାଇ ବେଳ ହଇଲା ।
ରାଜନକୁ ଡାକ ଆଣିବ ପାଇକମାନେ, ରାଜନକୁ ଡାକ ଆଣିବ ।
ଧାଇଁ ଧାଇଁ ଧାଇଁ ଗଲେ ପାଇକ, ଧାଇଁ ଧାଇଁ ଗଲେ ।
କଚରି କଚରି କୁଡ଼ିଲେ ପାଇକ, କଚରି କଚରି କୁଡ଼ିଲେ ।
ରାଜନ କହୁଛି ଦେଖିଲୁ ନାହିଁ ପାଇକ, ରାଜନ କହୁଛି ଦେଖିଲୁ ନାହିଁ ।
ପାଇକମାନେ ମାତାଙ୍କ ଛାମୁକୁ ଆସିଲେ,
ପାଇକମାନେ ମାତାଙ୍କ ଛାମୁକୁ ଆସିଲେ ।
କୋଠାଇ ଦେଖୁନାହିଁ ରାଜନ, କୋଠାଇ ଦେଖୁନାହିଁ ।
କଚରି କଚରି ଲୁଡ଼ିଲୁ ଆମେମାନେ କଚରି କଚରି ଲୁଡ଼ିଲୁ ।
ଆଜଲୋ ମୋର ହରି ପୋଇଲା ଲୋ;
ଆଜଲୋ ମୋର ମାଜାଦ୍ରି ପୋଇଲା ।
ଗମ୍ଭୀରା ଗମ୍ଭୀରା ଖୋଜ ରାଜନକୁ, ଗମ୍ଭୀରା ଗମ୍ଭୀରା ଗମ୍ଭୀରା ଖୋଜ ।
ଧାଇଁ ମୋର ଧପେଇଗଲେ ପୂଜକମାନେ,
ଧାଇଁ ମୋର ଧପେଇ ଗଲେ ॥
ସବୁଠାରେ ଖୁଜିଲା ମହାରାଜ, ସବୁଠାରେ ଖୁଜିଲା ।
କୋଠାରେ ଦେଖୁ ନାହାନ୍ତି ମହାରାଜ, କୋଠାରେ ଦେଖୁ ନାହାନ୍ତି ।
ହାଇ ମୋର ବାପ ବୋଇଲା ଛାମାତା, ହାଇ ମୋର ବାପ ବୋଇଲା ।
ମଣେଇ ବେଳ ହୋଇଲା ମୋ ପୁଅର, ମଣେଇ ବେଳ ହୋଇଲା ।
ଗମ୍ଭୀରା ଘରକୁ ଗଲା ଛା ମାତା, ଗମ୍ଭୀରା ଘରକୁ ଗଲା ।
ମୃଷାମାଟି ରଣଭଣ ହେଲେଇ ଦୁଆ ସଣସଣ ସେ ଘରେ,
ମୃଷାମାଟି ରଣଭଣ ।
କବାଟ ପକାଇ ରହିଛୁ ରାଜନ, କବାଟ ପକାଇ ରହିଛୁ ।
କ ପାଇଁ ରୁଷିଛୁ ମୋ ଧନ, କପାଇଁ ରୁଷି ଶୋଇଛୁ ।
ଭୋଜ ଯାଇଥିଲେ ଗଡ଼ାଇ ଦେବ ମୋ ଧନ, ହଜିଗଲେ କଢ଼େଇ ଦେବ ।
କପାଇଁ ରୁଷି ରହିଛୁ ପୁଅ ତୁ, କପାଇଁ ରୁଷି ରହିଛୁ ।
ମଣେଇ ବେଳ ହୋଇଲା ମୋ ଧନ ମଣେଇ ବେଳ ହୋଇଲା ।
ନାହିଁ ଯିବି ନାହିଁ ବୋଲେ ରାଜନ, ନାହିଁ ଯିବି ନାହିଁ ବୋଲେ ।

Digitized by srujanika@gmail.com

କବାଟ କାଢ଼ିବ ନାଇଁ ମୋ ମାତା, କବାଟ କାଢ଼ିବ ନାଇଁ ।
ସତ୍ୟ ଯେବେ ଭୁଲ କରିବୁ ମାତା, ସତ୍ୟ ଯେବେ ଭୁଲ କରିବୁ ।
ସତ୍ୟ ମୁଇଁ କଲି କୁମର ମର, ପତ୍ୟ ମୁଇଁ କଲି କୁମର ।
କବାଟ ତୁ କାଢ଼େ କୁମର ମର, କବାଟ ବେଇକି କାଢ଼େ ।
ମଇଷୁକୁ ବିଭା ହେବ ଗୋ ମାତା, ମଇଷୁକୁ ବିଭା ହେବ ।
କେତେ କଥା କହିଲୁ ପୁଅ ମର, କେତେ କଥା କହିଲୁ ।
ଲେଖାରେ ଭଉଣୀ ହେବ ପୁଅ ମର, ଲେଖାରେ ଭଉଣୀ ହେବ ।
ପଦ୍ମା ଦେଶର ଜେମା ପୁଅ ମର, ପଦ୍ମା ଦେଶର ଜେମା ।
ବିଭା କରାଇ ଦେବ ପୁଅ ମର, ବିଭା କରାଇ ଦେବ ।
ନାଇଁ ମର ନାଇଁ ବୋଲେ ରାଜନ, ନାଇଁ ମର ନାଇଁ ବୋଲେ ।
ମଇଷୁକୁ ବିଭା ହେବ ଗୋ ମାତା, ମଇଷୁକୁ ବିଭା ହେବ ।
ସତ୍ୟ ଭଗନ କରନା ମାତା ଗୋ, ସତ୍ୟ ଭଗନ କରନା ।
ହଉ ମର ହଉ ବୋଇଲା ମାତା, ହଉ ମର ହଉ ବଇଲା ।
କବାଟ କାଢ଼ି ଆସିଲା ରାଜନ, କବାଟ କାଢ଼ି ଆସିଲା ।
ମଣୋଇ ସାରି ଆସିଲା ରାଜନ, ମଣୋଇ ସାରି ଆସିଲା ।
ବାଆର ମେଲକୁ ଆସିଲା ରାଜନ ବାଆର ମେଲକୁ ଆସିଲା ।
ଶୁଣ ଆରେ ମୋର ବେତ ପାଇକରେ, ଶୁଣ ମୋର ବେତ ପାଇକ ।
ଧାଉଁଡ଼ିଆ ପାଇକମନେ ରେ, ଧାଉଁଡ଼ିଆ ପାଇକମାନେ ।
ପଣ୍ଡିତ ଡାକି ଆଣିବ ପାଇକମାନେ, ପଣ୍ଡିତ ଡାକି ଆଣିବ ।
ବେଗରେ ଗଲେ ଯେ ପାଇକମାନେ, ବେଗେ ବେଗେ ତହିଁ ଗଲେ ।
ପଣ୍ଡିତ ଡାକି ଆଣିଲେ ପାଇକମାନେ, ପଣ୍ଡିତ ଡାକି ଆଣିଲେ ।
କି ପାଇଁ ଡାକରା କଲ ରାଜନ ହେ, କି ପାଇଁ ଡାକରା କଲ ।
ମଇଷୁକୁ ବିଭା ହେବ ପଣ୍ଡିତେ, ମଇଷୁକୁ ବିଭା ହେବ ।
ଭଲ ଯୁଗ ଦେଖିବ ହେ ପଣ୍ଡିତ, ଶୁଭରେ ପାଞ୍ଜି କରିବ ।
ନବମୀ ଦିନ ହେବ ହେ ରାଜନ, ନବମୀ ଦିନ ତ ହେବ ।
ପାଞ୍ଜି ଦେଖି କହିଲେ ପଣ୍ଡିତ, ପାଞ୍ଜି ଦେଖି କହିଲେ ।
ମଥା ପୂରାଇ ପାଗ ଦେଲେ ପଣ୍ଡିତଙ୍କୁ, ଅଞ୍ଜୁଳା ପୂରାଇ ଧନ ଦେଲେ ।
ଆରେ ମୋର ଶୁଣ ବେତ ପାଇକରେ, ଆରେ ଶୁଣ ବେତ ପାଇକ ।

Digitized by srujanika@gmail.com

ବୈଠାରୁ ସାଇକ ଯିବରେ ପାଇକ, ବୈଠାରୁ ଡାକ ଆଣିବ ।
ଅଳଙ୍କାର ତିଆରି କରିବ ସେ, ସୁନା ତିଆରି କରିବ ।
ବୈଠାରୁକୁ ଡାକ ଆଣିଲେ ସେମାନେ, ବୈଠାରୁ ଡାକ ଆଣିଲେ ।
ବୈଠାରୁକୁ ଚହିଁ ବୋଲେ ରାଜନ, ଅଳଙ୍କାର ତିଆରି କରିବ ।
କି କିସ ସଜ ଗଢ଼ାଇବ ରାଜନ, କି, କିସ ସଜ ଗଢ଼ିବ ।
ନାକକୁ ହଂସ ବସଣୀ ବୈଠାରୁ, କର୍ଣ୍ଣକୁ କର୍ଣ୍ଣ କୁଣ୍ଡଳ ।
ମଥାକୁ ମଥାମଣି ବୈଠାରୁ ମଥାକୁ ମଥା-ମଣି ।
ମଝି ପିଠିକି ବେଣୀ ବୈଠାରୁ ଯେ, ମଝି ପିଠିକି ବେଣୀ ।
ବେକକୁ ହୃଦପୁ ପଦକ ବୈଠାରୁ, ବେକକୁ ହୃଦପୁ ପଦକ ।
ଦଶ ଆଙ୍ଗୁଠିକି ଦଶୋଟି ମୁଦି, ଦଶ ଆଙ୍ଗୁଠିକି ମୁଦି ।
ହାତକୁ ସୁବର୍ଣ୍ଣ ଚୁଡ଼ି ବୈଠାରୁ, ଅଣ୍ଟାକୁ କମର ପଟା ।
ଗୋଡ଼କୁ ଝୁଣ୍ଟିଆ ନେପୁର ବୈଠାରୁ, ଗୋଡ଼କୁ କଳାବ ନେପୁର ।
ଆଞ୍ଜୁଳି ପୂରାଇ ଧନ ବୈଠାରୁକୁ, ଆଞ୍ଜୁଳି ପୂରାଇ ଦେଲେ ।
ଆରେ ମୋର ଶୁଣ ଧାଉଁଡିଆ ପାଇକ, ଆରେ ଶୁଣ ଧାଉଁଡ଼ିଆ
ପାଇକ ।

ପାଠେରା ସାଇକ ଯିବ ପାଇକରେ, ପାଠେରା ଡାକ ଆଣିବ ।
ପାଠେରା ଡାକ ଆଣିଲେ ପାଇକ, ରାଜା ଛାମୁକୁ ଆସିଲେ ।
କି ପାଇଁ ଡାକରା ହେଲା ରାଜନ, କି ପାଇଁ ଡାକରା ହେଲା ।
ପାଠବଲା ବୁଣିବ ପାଠେରା ହୋ, ପାଠ ବଲା ବୁଣିବ ।
କି ପାଠ ବୁଣିବା ହେ ରାଜନ, କକ ପାଠ ବୁଣିବା ।
ବୁଣିବ ଖିରେଦର ପାଠ ପାଠେରା ହୋ, ବୁଣିବ ବସନ୍ତ ପାଠ ।
ବୁଣିବ ଜଉରଙ୍ଗ ପାଠ ପାଠେରାହୋ, ହାବା ମାଲ ସପନ୍ତ ସୁରା ।
ଆଞ୍ଜୁଳା ପୂରାଇ ଧନ ସେ ଦେଲେ, ମଥା ପୂରାଇ ପାଗ ।
ଆରେ ମୋର ଶୁଣ ହାରା ପଇଳା ଲୋ, ଆରେ ଶୁଣ ମହେନ୍ଦ୍ର ପୋଇଲା ।
ଘର ଲିପି ଚହିଁ ମଣ୍ଡଳ ଦେବ ଲୋ । ଘର ଲିପି ମଣ୍ଡଳ ଦେବ ।
ମଣ୍ଡଳ ଝୁଣ୍ଟି ଦେଲେ ପୋଇଲାମାନେ, ମଣ୍ଡଳ ଝୁଣ୍ଟି ଦେଲେ ।
ମାଣିକ ଦେଖା ପକାଇଲେ ପୋଇଲାମାନେ, ପୁଞ୍ଜି ପଇଡ଼ ବାଢ଼ିଲେ ।
ଆମ୍ବ ଗୁରୁ ଝୁଣ୍ଟି ପୋଡିଲେ ପୋଇଲା, ମାଣିକ ଧୂପ ଜାଳିଲେ ।

Digitized by srujanika@gmail.com

ଚାନର ଝୁମୁଣ୍ଡା କଲେ ଚୋଇଳା, ଚାନର ଝୁମୁଣ୍ଡା କଲେ ।
ବଡ଼ କାଠ ବାଜିଲା ବାଇଦ, ରାମଢୋଲ ବାଜିଲା ।
ତହୁଁ ବିଭା ହେଲା ରାଜନ, ତହୁ ବିଭା ହୋଇଲା ।
ସାତମଙ୍ଗଳା ସରିଲା ବିଭାରସେ, ସାତମଙ୍ଗଳା ସରିଲା ।
କେତେ ଦିନ ଗଲା ଯେ କେତେ ମାସ ଗଲା, କେତେଦିନ ଗଲା ।
ବୁଇତ ବଣିଜ ପଡ଼ିଲା ରାଜନକୁ, ବୁଇତ ବଣିଜ ଗଲା ।
ଜୀରା ଯେ ମେଥିର ବୁଇତ ରାଜନ, ନୁଣ କ ମରିଚ ବୁଇତ
ପାନଆ ଫରୁଆ ଭରିଲା ରାଜନ, ପାନଆ ଫରୁଆ ନେଲା ।
ବୁଇତ ବନ୍ଧାଇ ଆସ ମରିଗୁ, ବୁଇତ ବନ୍ଧାଇ ଆସ ।
ହାତ ଟୁଆଁଡ଼ କାନ୍ଦୁଚ ମରିଗୁ, ଗୋଡ଼ ଟୁଆଁଡ଼ କାନ୍ଦୁଛି ।
ଛ ମାସକୁ ବାଉଡ଼ି ଆସିବ ମରିଗୁ ଛ ମାସେ ଫେରି ଆସିବ ।
କପାଇଁ ରୁଦନ କରୁଚୁ ମରିଗୁ କପାଁ ରୁଦନ କରୁଛୁ ।
ବୁଇତ ବନ୍ଧାଇ ଆସିଲା ମରିଗୁ, ରାଜନ ବୁଇତ ଛାଡ଼ିଦେଲା ।
ତରର ଦେଶକୁ ନେଲା ରାଜନ, ତରର ଦେଶକୁ ନେଲା ।
ବୁଇତ ଲଗାଇ ଦେଲା ରାଜନ, ବୁଇତ ଲଗାଇ ଦେଲା ।
ଶୁଦ୍ଧ ସ୍ନାନ ଦିନ ତରର ଯେ, ଶୁଦ୍ଧ ସ୍ନାନ ଦିନ ତର ।
ସତ୍ୟ ବୋଲି କରୁଛି ତର ଯେ, ସତ୍ୟ ବଲି କରୁଛି ।
ତିନଧାର ପାଣି ଛାଡ଼ୁଛି ତରା ଯେ, ତିନଧାର ପାଣି ଛାଡ଼ୁଛି ।
ଏ ପାଣିକି ଯିଏ ଡେଇଁବ ପାଇକମାନେ ଧରି ଆଣିବେ ।
ସେହି ପାଣି ଡେଇଁଲା ଯେ ରାଜନ, ସେଇ ପାଣିକି ଡେଇଁଲା ।
ତାକୁ ଧରି କରି ନେଲେ ପାଇକେ, ତରାର ପାଶକୁ ନେଲେ ।
ସତ୍ୟ ବୋଲି କରିଚ ରାଜନ, ତରା ଯେ ସତ୍ୟ କରିଚ ।
ମତେ ବିଭା ହେବ ଆହେ ରାଜନ, ମୋତେ ଆଜି ବିଭା ହେବ ।
ହଉ ବୋଲି ତହୁଁ ବୋଲି ରାଜନ, ତରାକୁ ଯେ ବିଭା ହେଲା ।
ତଠଉଁ ସୁନ୍ଦର ଅଛି ମରିଗୁ, ତଠଉଁ ସୁନ୍ଦର ଅଛି ।
ସୂର୍ଯ୍ୟ ବୋଲଇ ମୁହିଁ ମହକ, ଚନ୍ଦ୍ର ବୋଲେ ମହକ ।
ମୋଠଉଁ ଉଜଳ ହେବ ମରିଗୁ, ମୋ ଠଉଁ ଉଜଳ ହେବ ।
ମାଳୀ ମାଉସୀ କି ଡାକିଲା ତର ଯେ, ମାଳି ମାଉସୀ ଡାକିଲା ।

Digitized by srujanika@gmail.com

ବୃଇତକୁ ସଜ କଲା ତରା ଦେଣ୍ଡ, ବୃଇତକୁ ସଜ କଲା ।
ମଚଗୃ ଦେଶକୁ ଯିବୁ ମାଳୀ ମାଉସୀ, ମଚଗୃ ଦେଶକୁ ଯିବୁ ।
ମରିଗୃକୁ ସଙ୍ଗେ ଆଣିବୁ ମାଉସୀ, ମରିଗୃକୁ ସଙ୍ଗେ ଆଣିବୁ ।
ବାଣ୍ଡ ଫରୁଆ ଧରିଲା ମାଉସୀ, ବାଣ୍ଡ ପାନଆ ଧରିଲା ।
ବୁଇତରେ ବସିଗଲା ମାଳଆଣୀ, ବୁଇତରେ ବସିଗଲା ।
ମଚଗୃ ଦେଶକୁ ଗଲ ମାଳଆଣୀ, ମଚଗୃ ଦେଶକୁ ଗଲ ।
ନଅର ଭିତରକୁ ଗଲ ମାଳଅଣୀ, ବାଇ ଫରୁଆ ଦେଲ ।
ମଚଗୃକୁ ବାଇ ପାନଆ ଦେଲ ଯେ, ବାଇ କଚ ଆଣିଲ ।
ଫରୁଆ ଭିତରେ ଭଟଲ ମଚଗୃକୁ, ଫରୁଆରେ ରଖିଲ ।
ବୁଇତରେ ବସି ଆସିଲ ମାଳଆଣୀ, ବୁଇତ ବସି ଆସିଲ ।
ଡବର ଦେଶକୁ ଆସିଲ ମାଉସୀ, ଡବର ଗ୍ଧମୁରେ ଦେଲ ।
ଫରୁଆ ବଢ଼ାଇ ଦେଲା ମାଳଆଣୀ, ଫରୁଆ ବଢାଇ ଦେଲା ।
ମଚଗୃକୁ କାଢ଼ି ଦେଖିଲା ଡବ ଯେ ମଚଗୃକୁ କାଢ଼ି ଦେଖିଲା ।
ମୁରୁଚ୍ଛା ହୋଇ ପଡ଼ଲା ଯେ, ଚେତା ପାଇ ଦେଖିଲା ।
ଚେତା ପାଇ ଦେଖିଲା ଡବ ଯେ, ମଚଗୃ ଟେକି ଧଇଲା ।
ପିନ୍ଧା ବୋଇଲେ ପିନ୍ଧାଇବୁ ମଚଗୃ, ପିନ୍ଧା ବୋଇଲେ କଚବୁ ।
ଡବକୁ କାଅଁ ପିନ୍ଧାଇବୁ ମଚଗୃ, ସଜ ବୋଳ ଲଗାଇବୁ ।
ଛ ଡୁଣ ନ ଭଜା ରାନ୍ଧିଲା ମଚଗା, ସରୁ ଗୃଉଳ ରାନ୍ଧିଲା ।
ମଣେଇ ବେଳ ହୋଇଲା ରାଜନର, ମଣେଇ ବେଳ ହୋଇଲା ।
ମନ ହୁଏ ଛନ ଛନ ରାଜନର, ମନ ହୁଏ ଛନ ଛନ ।
କାହ୍ନିଁରେ ନ ରହେ ମନ ରାଜନର, କାହ୍ନିଁରେ ନ ରହେ ମନ ।
ମଣେଇ ଯୁଗାଡ଼ ବାଢ଼ିଲା ଡବ ଯେ, ମଣେଇ ଡହୁଁ ବାଢ଼ିଲା ।
ମଣେଇ ସାରି ଆସିଲା ରାଜନ ଯେ, ମଣେଇଁ ସାରି ଆସିଲା ।
ମରିଗୃର ରନ୍ଧା ପରି ଲାଗୁଛି ଡବ, ମରିଗୃରନ୍ଧାର ପରି ।
ତୋ ଠଉଁ ଅଛି ସୁନ୍ଦର ମରିଗୃ, ତୋ ଠଉଁ ଅଛି ସୁନ୍ଦର ।
ଛୁଡଆସିଲ ଦେଶାନ୍ତର ଡବଦେଣ୍ଡ, ଛୁଡ଼ ହେଲ ଦେଶାନ୍ତର ।
ବୁଇତ ସଜ କଲା ରାଜନ, ବୁଇତ ସଜ କଲା ।
ଡବକୁ ସାଥିରେ ଧଚଲ ରାଜନ, ଡବକୁ ସଙ୍ଗେ ଧଚିଲା ।

Digitized by srujanika@gmail.com

ମଶଣ୍ଡ ଦେଶକୁ ଆସିଲା ରାଜନ, ନଅର ଭିତରକୁ ଗଲା ।
ବାଇ ହୋଇ ରଇଛି ତା ମାତା ଯେ, ବାଇ ହୋଇ ରଇଁଛି ।
ମଶଣ୍ଡ ଦଶୁନାଇ ନଅରରେ, ମଶଣ୍ଡ ଯେ ଦଶୁନାଇଁ ।
ବାଇ ପଣ ଚହ୍ନିଁ ହେଲା ରାଜନ, ବାଇପଣ ଚହ୍ନିଁ ହେଲା ।
ଚର ଯାଇ କର କହିଲା ରାଜନକୁ, ଚର ଯାଇ କଇଲା ।
ମାଳୀ ମାଉସୀ କଣଚ ରାଜନ, ମାଳୀ ମାଉସୀ କଣଚ ।
ଚରର ଦେଶକୁ ଏକା ରାଜନ, ଗଲା ଚର ନଅରକୁ ।
ମାଳି-ଆଣୀକ ସଙ୍ଗେ ଆଣିଲା, ମାଳିଆଣୀକ ନେଲା ।
ଚରର ପାଖେ ନେଲା ରାଜନ, ଚରର ପାଖେ ନେଲା ।
ଚର କହେ ମାଳୀ ମାଉସୀ ଶୁଣ, ଚର କହେ ଏଯେ ଶୁଣ ।
ମଶଣ୍ଡକୁ ଏଯେ ଦେଇ କ ଆଣ, ମଶଣ୍ଡକୁ ଏଯେ ଆଣ ।
ମାଳି-ଆଣୀ ମଶଣ୍ଡକୁ ଆଣିଲା, ମାଳିଆଣୀ ମଶଣ୍ଡକୁ ।
ରଜାପୁଅ ଶରଧା ଯେ ହୋଇଲା, ରଜାପୁଅ ଶରଧା ହେଲା ।
ବାଡ଼ ଆଡ଼େ ଖଣି ଖୁଳାଇ ରାଜା, ବାଡ଼ରେ ଖଣି ଖୁଳାଇ ।
ମାଳିଆଣୀକ ରାଜା କହିଲେ, ମାଳିଆଣୀକ କହିଲେ ।
କେତେ ଧାନ ଧଶବ ଖଣି ଖଣାରେ, କେତେ ଧାନ ଧଶବ ।
ମାଳିଆଣୀ ଯାଇ ଦେଖିଲା ବେଳେ, ପଛ ଆଡୁ ପେଲି ଦେଲେ ।
ନୂଆ କଣ୍ଟା ନେଇ ପୂରାଇ ଦେଲେ, ଖଣି ପୂରାଇ ଦେଲେ ।
ମରିଣ୍ଡ ଚରକୁ ଧରି ରାଜନ, ମରିଣ୍ଡ ଚରକୁ ଧରି ।
ସୁଖେ କାଟିଲେ ଦିନ ରାଜନ, ସୁଖେ କାଟିଲେ ଦିନ ।

Digitized by srujanika@gmail.com

# ରେ ବାଳା ଜୀଇଁଲୁ ନାହିଁ

(ଦୀଘିଶ, ପୁରୀ)

ଉଇଁ ଆସୁଥିଲା ଗୃହନରେ
ପୁଷ ପୁନିଅଁ ଦିନ
ବେଳ ଦୁଇ ଦଣ୍ଡ ଥିଲା ଲୋ
ବାଳା ହେଲୁ ଜନମ ।
ଆମର ଶାଶୂଏ ଶୁଣିଣ
ବୋଲେ ହେଉ ବାଳକ
କାଖର କୋଳର କଳରେ
ବାଳା ସକଳ ଦୁଃଖ
ହଳଦୀ ରଞ୍ଜିଲ ବାଳାରେ
ଗୋଡ଼ ବାଙ୍କରେ ଥୋଇ
କଜ୍ଜଳ ଘେନଲ ବାଳାରେ
ତୋର ମୁଖକୁ ଚାହିଁ
ଅଣ୍ଟା ଭଙ୍ଗି ଦେଇ ଚଲୁରେ
ବାଳା ଗୁଳବ ନାହିଁ
ଏତେ ଲୁଚୁଟୁଟୁ କଳରେ
ବାଳା ଜୀଇଁଲୁ ନାହିଁ ।

Digitized by srujanika@gmail.com

# କାନ୍ଦଣା

( ମଉଦା, କଟକ )

—୧—

କଳା ମେଘ ବୋଲି ମୁଁ ଗୁହେଁ ନାହିଁ          ଲୋ ବୋଉ
କଳା ହାଣ୍ଡି ବୋଲି ମୁଁ ଧୁଏନାହିଁ          ଲୋ ବୋଉ
ପେଟ ଦରଜ କ ପିଠି ଜାଣିବ ?          ଲୋ ବୋଉ
ମୋର ଦରଜ କ ପର ଜାଣିବ ?          ଲୋ ବୋଉ
ସକାଳର ଝିଅ ସଞ୍ଜ ହୋଇବ          ଲୋ ବୋଉ
ଛୋଟିରେ ଲଗିଲେ ମନେ କରିବ          ଲୋ ବୋଉ
ଯୋଉ ଦେଶେ ଜଳ ଯାଚ ନ ଖାନ୍ତି          ହେ ବାପା
ସେହି ଦେଶେ ଜଳ ମାଗି ପିଇଲି          ହେ ବାପା
ପିତା ଫଳ ବୋଲି ଗୁଞ୍ଜିଣ ଦେଲି          ହେ ବାପା
ପଚ୍ଚ ମାଛ ବୋଲି ଯାଚ ବୁଲିଲି          ହେ ବାପା
ତୋ ସୁନା ଫୁଲକୁ ଦରବ ଦେବୁ          ଲୋ ଖୁଡ଼ୀ
ଖାଲି ତୁଣ୍ଡେ ମତେ ପଚାରୁଥିବୁ          ଲୋ ଖୁଡ଼ୀ
ତୋ ସୁନାକୁ ଦେବୁ ବୋଝ ବେଖର          ଲୋ ଖୁଡ଼ୀ
ମୋ ପାଖକୁ ଦେବୁ ତୁଣ୍ଡ ଖବର          ଲୋ ଖୁଡ଼ୀ
ଝୁପୁ ଝୁପୁ ପାଣି କାନ୍ଥକୁ ଛୁଟେ          ହେ ନୂଆବୋଉ
ଝୁପୁ ଝୁପୁ କଥା କଳଜା କାଟେ          ହେ ନୂଆବୋଉ

Digitized by srujanika@gmail.com

# କାନ୍ଦଣା

(ଚକ୍ରଧର ପୁର, ସିଂହଭୂମ୍)

ସାତ ଦାନ୍ତକାଠି ବଜଲ ମେଳେ ବନ୍ଧୁ ଗୋ
ଆମ୍ଭେ ସାତ ପାଞ୍ଚ ନଈର ମେଳେ ବନ୍ଧୁ ଗୋ
ନଈରେ ପଡ଼ୁଛୁ ନବ ସାତର ,,
ଉଛୁଳ ପଡ଼ୁଛି ଗୋପ ମଥୁରା ,,
ଗୋପ ମଥୁରା ତ ନ ଜାଣି ପାରେ ,,
ଘର ଘର କଥା ନ ସହି ପାରେ ,,
ହଳଦିଆ ଲୁଗା ବନବାସକୁ ,,
ମୋ ମନ ଡାକୁଛି ବୃନ୍ଦାବନକୁ ,,
ବୃନ୍ଦାବନ ତାଗ୍ର କେ ଚିଣିଥିଲା ? ,,
ମୋର ଟେଲପଣ କେ ଜାଣିଥିଲା ? ,,
ବୃନ୍ଦାବନ ତଗ୍ର କଉଡ଼ ପେଳ (ପେଡ଼) ,,
ଆଜୁ ବାଇଗଣ ଟେକାକୁ ଟେକା ,,
କଉଡ଼ ପେଳ ମୋ ରହିଲା ଠେକା ,,
ପାଟେଲ ଆମ୍ଭକୁ ଫାଳେ କରିବ ,,
ଘାତ ବଢ଼ାବେଳେ ମନେ କରିବ ,,
ଗିନାର ହଳଦି ଗିନାରେ ଥିବ ,,
ଗାଧୁଆ ଘାଟରେ ମନେ କରିବ ,,
ସରଗି କାଠିକୁ ବେଗୁନା ରୁଆ ,,

Digitized by srujanika@gmail.com

ମତେ ନ ଆସଇ ଗୁଞ୍ଜନ ଧୂଆ ବନ୍ଧୁ ଗୋ
ଇଲସି ମାଛର କାଣ୍ଟ ଛଡ଼ାଇ ,,
ଆସୁଚି ପବନ ନେବ ଉଡ଼ାଇ ,,
ପୋଖରୀ କୂଳରେ ସରୁ କୋଇଲା ,,
ଦିନ ଗଣୁଥିଲ ଆଜ ସରିଲା ,,
ନୂଆ ଖପରାରେ କି ଭୂଜା ଭାଜ ? ,,
ମୁଠାଇ ମାଗିଲେ ଝିଙ୍କେ ଉଠ ,,
ଦୁଆର ମୁହଁରେ ଲମ୍ବ ପଥର ,,
କେହି ନ ବଲନ୍ତି ଥାଉ ଆମ୍ଭର ,,
ସାପ ଯେ ଶୋଇଚି ଘର ଚଉଡା ,,
ଏଇବେଳେ ଆସି କାମୁଡ଼ ଦେଡା ,,
ଦାଣ୍ଡର ସବାରୀ ଘୂରି ଯାଇଡା ,,
କଦଳୀ ପତର ଘର ଚଉଡା ,,
ଖଣ୍ଡେ ନ ଦେଲ ତ ପେଳ (୧) ସାଇଡା ,,

ଯେ ପାରି ସାଇରେ ନଅର ବାଳୀ ହଇରେ
ମୋତେ ଯାଚଥିଲ ଟସର ଶାଳୀ (୨) ,,
ବାଳଆ ବାଉଁଶ ବାଉଁଶ ନାଇଁ ,,
ଟସର ଶାଳୀକ ସାହସ ନାଇଁ ,,
ବାଳଆ ବାଉଁଶ ବାଉଁଶ ହେଡା (୩) ,,
ଟସର ଶାଳୀକ ସାହାସ ହେଡା ,,
ଅଲେଖା କାଗଜେ କଳା ଅକ୍ଷର ,,

---

(୧) ପେଳ—ପେଡ଼ି
(୨) ଶାଳୀ—ଶାଢ଼ୀ
(୩) ହେଡା—ହୁଅନ୍ତା

Digitized by srujanika@gmail.com

ଲେଖାର ଭଉଣୀ ନୁହେଁ ତୁମ୍ଭର ଭାଇରେ
ଲେଖାର ଭଉଣୀ ହେଇ ଥାଇନ୍ତ(୧) ”
ଲେଖି ଲେଖି ଭାର ନେଇ ଥାଇନ୍ତ ”
ମଟି ବାହାରେ ଗହ୍ୱାସ ପୋଥି ”
ପୁତ ହୋଇଥିଲେ ବସି ଖାଇନ୍ତ ”
ଲୋକେ ପଚ୍ଚରନ୍ତେ କାହାର ପୁତ ”
ବାପା ନାମ ଧରି ଉତ୍ତର ଦେନ୍ତ ”
ତମ୍ବା ଭୁଜପୀକ ଛୁଇଁ କହନା ”
କେବେ ଧୂଆଇବ ବାରେ କହନା ”
ଖରା କାଟିଲେ ତ ଛତା ଧରିବେ ”
ବାଳ ଚାଲିଲେ ତ ଜୋତା ମାଡ଼ିବେ ”
ମୁହଁ ଶୁଖିଲେ ତ ପାନ ଖାଇବେ ”
ବସିତେ ଆସନ କେହ୍ୱ ନ ଦେବେ ”
ଗାମୁଛୁ କାନରେ ବସି ଆସିବେ ”
ଖାଇତେ ପଦ କେହ୍ୱ ନ ଯାଚିବେ ”
ଅଣ୍ଟାରୁ ପଇସା ଖୋଳି ଖାଇଁବେ ”
ତେବେ ଯାଇ ଥରେ ଦେଖି ଆସିବେ ”

ମଲ୍ଲୀ ଖଣ୍ଡି ଖଣ୍ଡି ପିଉଳ ଖଣ୍ଡି କାକା ଟୋ
କାହାକୁ ଡାକବ ଘଡ଼ ନା ଘଡ଼ି ”
ନାମ ତ ଦେଇଛ ରଜତବାଲା ”
ପାଛୁଡ଼ିତେ ଦେଇଛ ସୁବର୍ଣ୍ଣ କୁଲା ”
ଖଇଚଲାରେ କି ଖଇ ନ ଗଳେ ? ”
ତୋର ସାଙ୍ଗରେ କି ବନ୍ଧୁ ନ ମିଳେ ? ”
କୁଆ ଉଡ଼ିଗଲା ପିଢ଼ାରେ ଠିଆ ”
ବନ୍ଧୁ କରିଅଛ ଜବାବନ୍ଧିଆ ”

(୧) ଥାଇତ—ଥାଆନ୍ତ

Digitized by srujanika@gmail.com

ଖାଲି ହାଣ୍ଡିରେ କି ଚଳ ବାନ୍ଧିଲ — କାକା ଗୋ
ଖୁଣ୍ଟାଖୁଣା ବୁଦ୍ଧି ଆଗେ କରିଲ — ”
ଲୁଗା ଯେ ଦେଉଛ ହାଣ୍ଡୁ (୧) ଉପର — ”
କେମନ୍ତେ ଖୁଲିବ ବନ୍ଧ ଭିତର ? — ”
ମୋତେ ପେଲି ଦେଲ ଭଲାର ଘର — ”
ଭଲା ଯେତେ ନାଇଁ କ୍ଟୁମ୍ବ ତେତେ — ”
ଧୃଆ ପାଣି ମୁଁ ଭୁଲିବ କେତେ — ”
ଭୁଲି ଭୁଲି କରି ସଞ୍ଜ ହୋଇଲା — ”
ଖା ବୋଲି ମତେ କଏ କହ୍ଲା ? — ”
ରେସୁଣ ପିଆଜ ଧାଢ଼ କି ଧାଢ଼ — ”
ମତେ ଡାକ୍ ଥାଉ ଘଢ଼ କି ଘଢ଼ — ”
ଘଢ଼ ଘଢ଼ ଡାକ ଆଜ୍ ସଇଲା — ”

ବଣାଇ ଗଡ଼ର ଚଟିକା ପାଣି — ବାପା ଗୋ
କେଭେ ଯିବ ମତେ ବାହୁଡ଼ା ଆଣି — ”
କଞ୍ଚି କଞ୍ଚି (୨) ଦୂବ ବାଲୁଙ୍ଗ ଖିଆ — ”
ଅଣ୍ଟା ଅଣ୍ଟା ଭୁଜା ସଖାଳ ଖିଆ — ”
ସଖାଳ ଖିଆଟା ଗୁଡ଼ ପାଉଚ — ”
ଏକା ଥରେ ଖିଆ ସଙ୍ଗେ ନେଉଚ — ”
ଠିକ ଠିକ ଲୁଗା ଠିକିଲି ବସା — ”
ମତେ ନ କରିବ ଭଗାରି ହସା — ”
ସମ୍ବଲପୁରିଆ ନୂଆ ଗିଲାସ — ”
ମତେ ନ ରଖିଲ ପାଞ୍ଚ ବରଷ — ”
ଡୁଙ୍କାର (୩) ସୋରିଷ ନ ଫୁଟିଥିବ — ”

---

(୧) ହାଣ୍ଡୁ—ଅଣ୍ଡୁ ।
(୨) କଞ୍ଚି କଞ୍ଚି—କଷି କଷି, କଅଁଳିଆ
(୩) ଡୁଙ୍କା—ଡଙ୍କା ବା କରଚୁଲି;

Digitized by srujanika@gmail.com

ଝିଅର ବାରତା ଆଗେ ଶୁଣିବ     ବାପା ଗୋ
ଭଗାର ଝିଅଟି ମଲା ବୋଲିବ     ,,
ସଞ୍ଜାଇ(୧) ନଈରେ ଡୁବ ପାଳିବ     ,,
ଗୁଡ଼ଆ ଆସିଚ ଗୁଡ଼ ବିକନ୍ତେ     ,,
ଭଗାରି ଆସିଚ ନେଇ ଯାଇନ୍ତେ     ,,
ପାନ ଭାଙ୍ଗି ଦେଲ ଖଇର ମିଶା     ,,
ମତେ ନ କରିବ ଭଗାରି ହସା     ,,
କରାଇ କରାଇ ନୂଆ କରାଇ     ,,
ବଡ଼ବନାଠାକୁ (୨) ଦେଲ ଧରାଇ     ,,
ଛ'କୋଶ ରାସ୍ତାକୁ କୋଶେ କରିବ     ,,
ଧାଇଁ ଯାଇ ଥରେ ଦେଖି ଆସିବ     ,,
ମଝି ବାଡ଼ାରେ କି ଲବଙ୍ଗଲତା ?     ,,
ପୋଡ଼ି ଦେବାକୁ କି ମନ ନ ଗଲା ?     ,,
ଗାଈ ମୂଲଇଲ ଗୁହାଳେ ବସି     ,,
ମତେ ଦାନ ଦେଲ ସଭାରେ ବସି     ,,
ପଡ଼ିଥିଲା ବାଡ଼ି କିଏ ଟେକିଲା ?     ,,
ଭାଙ୍ଗିଥିଲା ବନ୍ଧୁ କିଏ ଖଞ୍ଜିଲା ?     ,,

ପର୍ବତ ଉପରେ କଦଳୀ ଫେଣି     ମାଁ ଗୋ
ଖେଳ ଖାଉଥିଲୁ ଭାଇ ଭଉଣୀ     ,,
ପର୍ବତ ଉପରେ ଧୁମୁରା ବାଜେ     ,,
ମୁଁ କି ସହିବ ନଣନ୍ଦ ଜାଆ ?     ,,
ପର୍ବତ ଉପରେ ସୁନାର ଖଣି     ,,
ଘରକୁ ସାଜନ୍ତି ଭାଇ ଭଉଣୀ     ,,
ବାଳ (ବାଡ଼) କି ଗୁନ୍ଥିଲେ ଗଛ ପତର     ,,

---

(୧) ସଞ୍ଜାଇ—ସଯୋଗ ନଦୀ
(୨) ବଡ଼ବନା—ଯେ ବଡ଼ ଡଆଣ କରେ ।

Digitized by srujanika@gmail.com

ଦାଣ୍ଡକୁ ଚାହିଁଲେ ଗେଙ୍ଗଟି ପଥର  ମାଁ ଗୋ
ସେ ଘରେ ଶାଶୁଢ଼ ସେ ପାଟରାଣୀ  ”
କେତେ ସଜାଇବି ତା ପିଢ଼ା ପାଣି ?  ”
ଓଢ଼ୁଣା (୧) ଟେଳେଇ କଏ ବନ୍ଧବ  ”
ମୋର ନାମ ଧରି କାହାକେ (୨) ଡାକବ ?  ”
ତୁମ ଦାନ୍ତକାଠି ତୁମେ ଘଷିବ  ”
ଭଗାରି ଝିଅ ତ ମଲ୍ଲ ବଳାବ  ”

ସାତ ପରବତ ତେଜିଦ ଯାଟି  ଗୋ ମାଆ ମୋର
ଆଉ କି ଦେଖିବ ଜନମ ମାଟି ?  ଗୋ ମାଆ ମୋର
କଖାରୁ କାଟିଲି ଟେନ କି ଟେନ  ”
କି କରି କରିବୁ ଏ ସ୍ନାନମାନି ?  ”
ଗରିଆ ଭିତରେ ଗୋଲ ମରିଚ  ”
ଆଜଠୁ ଯାଉଟି ବେଉସା ଖିଞ୍ଚି  ”
ନାଉ ଲଗାଇଲି କେରି କି କେରି  ”
ଝିଅ ଜନ୍ମ କଲେ କୁଠା ତ ଖାଲି  ”

ବାଳ ଛାଡ଼ିଲେ ତ ଜୋତା ପିନ୍ଧିବୁ  ଭାଇ ଗୋ
ଖରା କାଟିଲେ ଯେ ଛତା ଧରିବୁ  ”
ଶୋଷ ଲାଗିଲେ ଯେ ପାନ ଖାଇବୁ  ”
ଭୋକ ଲାଗିଲେ ଯେ ଲଡ଼ୁ ଖାଇବୁ  ଭାଇ ଗୋ
ଗୋଲଆ ନଦୀରେ ଗୋଡ଼ ଧୋଇବୁ  ”
ତେବେ ଯାଇ ମତେ ଦେଖି ଆସିବୁ  ”

ବାଟର ଗିଳରି ଫୁଟି ସରିଲା  ଗୋ ବାପା
ତୁମ ଘରେ ମୋର ଅନ୍ନ ସରିଲା  ”

---

(୧) ଉଢ଼୍ଣା—ଓଢଣା;
(୨) କାହାକେ—କାହାକୁ ।

Digitized by srujanika@gmail.com

କୁଆ ଉଡ଼ିଗଲା ସାତ ସକାଳୁ ଗୋ ବାପା
ମାଆ ଛାଡ଼ିଗଲା ବାଳୁତ କାଳୁ ,,
ମାଆ ଯନ୍ତ୍ର ମୋର ବଞ୍ଚିଥାଆନ୍ତା ,,
ନଯ୍ୟନ ଧାର୍‌ କ ନାହିଁ ଯୁଆନ୍ତା ,,
ମାଆ ନାହିଁ ମୋର କେ ନେବ ପୋଛି ,,
ମାଆ ଯନ୍ତ୍ର ମୋର ବଞ୍ଚିଥାଆନ୍ତା ,,
କଉଡ଼ି ଲଗାଇ ଘର ବାନ୍ଧନ୍ତା ,,
ମାଆ ନାହିଁ ମୋର କେ ଦେବ ଘର ? ,,
କପୁର ନାହିଁ ଯେ କନା ବାସୁଛି ,,
ମାଆ ନାହିଁ ମାର ଛୁଆ ବାଡୁଛି ,,

ଟିକ ଟିକ ଶାଢ଼ୀ ନବଦଣ୍ଡିଆ ମାଆ ଗୋ
ମୋତେ କରିଦେଲ ନଣ୍ଡ ପାରିଆ ,,
ଚକୁଳି ପିଠା ଯେ କଳ ନେଉଟା ,,
ମତେ କରିଦେଲ କି ହଟହଟା ,,
ହାଣ୍ଡି ଝୁଲୁଥିଲା ବଣ ଭିତରେ ,,
ମୁହିଁ ଝୁଲୁଥିଲି ତୋହରି କୋଳେ ,,
ହାଣ୍ଡି ଖାଉଥିଲା ବଣରେ ଫଳ ,,
ଆମ୍ଭେ ଖାଉଥିଲୁ ତୁମ୍ଭର କ୍ଷୀର ,,
ଶାଶୁ ଦନ୍ତାହାଣ୍ଡି ହଟିଆ ନାଣ୍ଡ ,,
ହାଣ୍ଡିରେ ବାନ୍ଧିଲ ଛ'ମଣ ଧନ ,,
ଛ'ମଣ ଧନକୁ ତଳେ ରଖିବ ,,
ତେବେ ଯାଇ ଝିଅ ଘର କରିବ ,,

ଭଗାରି ଆଗରେ ବାଠ କାଟିଲି ଗୋ ବାପା
ଯମ ଆଗରେ ଯେ କଣ୍ଟା ଗୁଞ୍ଜିଲି ,,
ଯମ ଆସିଥିଲା ନ ଦେଲି ଛାଡ଼ି ,,

Digitized by srujanika@gmail.com

ଉଗାରେ ଆସିଛୁ ଦେଉଛ ଛୁଣ୍ଡ଼ି — ଗୋ ବାପା

କାଠି ଘଷୁଥିଲ କଦମ୍ବ ମୂଳେ — ନାମି ଗୋ
ମନେ କରୁଥିବ ଗାଧୁଆବେଳେ — ,,
ନିମ ଚତର କି ଏକ ସିରିଆ ? — ,,
ମତେ ନ କରିବ ଏକ ବାରିଆ — ,,
ଗନ୍ଧ ଶ୍ରୀ ଶାଳରେ ଷୋଳ ବେଉସା — ,,
ଷୋଳ ବେଉସାଟି ଶିଖି ଥାଇଛି — ,,
ଗୁଡ଼ିଆ ଘରର ଗୁଡ଼ ବାନ୍ଧାଣି — ,,
ସେ ଘର ଶାଶୁ ତ ଆଡ଼ି ଗୃହାଣୀ — ,,
କେତେ ସଜାଡ଼ିବ ତା ପିଢ଼ାପାଣି — ,,

ବାଡ଼କୁ ଚୁହିଁଲେ ଗଛପତର — ଗଇଁ ଗୋ
ଘରକୁ ଚୁହିଁଲେ ସମସ୍ତେ ପର — ,,
ଡେଙ୍ଗା ତାଳଗଛ ଦୂରକୁ ଚୁହିଁ — ,,
ମତେ ପର କଲେ ମଣିଆଁ ଭାଇ — ,,

Digitized by srujanika@gmail.com

## କାନ୍ଦଣା

(ଚକ୍ରଧରପୁର, ସିଂହଭୂମ)

—୩—

ବାଡ଼ ପଛ ଆଡେ କଦଳୀପୁଆ ହେ ବାପା
କାଲି କଏ ଦେବ ସକାଳଖିଆ ,,
ସକାଳ ଖିଆ ଯେ ସଞ୍ଜ ହୋଇବ ,,
ଖାଆ ବୋଲି ମୋତେ କଏ କହିବ ? ,,
ଘରକୁ କାଟିଲ ଉଗଡା ଲୁଅ ,,
ମୁଁ ଥିଲି ତୁମର ସାବତ ଝିଅ ,,
ସାବତ ଝିଅକୁ ନବାସି ଦେଲ ,,
ଗୁରୁବାର ଝୁଣ୍ଟି (୧) କାନ୍ଧେ ନ ଲେଖ ,,
ଝିଅ ଝିଅ ବୋଲି ଦଣ୍ଡେ ନ ରଖ ,,
କଂସାରେ ବୋଲିଛି କଂସା ସରୁଛି ,,
ବାପା ବୋଲୁଛନ୍ତି ମୋ ଝିଅ ସରୁଛି ,,
ପଡ଼ିଦେଲ ବାଡ଼ କେ ଯୁଡ଼ି ଦେଲ ,,
ଭାଙ୍ଗିଥିଲ ବନ୍ଧୁ ବାପା ଯୁଡ଼ିଲେ ହେ ବାପା

---

(୧) ଝୁଣ୍ଟି—ଝୋଟି

Digitized by srujanika@gmail.com

ଚଲଙ୍କ ଭିତରେ ଦୁଧ ଗିଲାସ ଏ ମାଆ
ଗର୍ଭରେ ଧରିଲ ଏ ଦଶ ମାସ ,,
ଖିର ଦାନ ଦେଲ ପାଞ୍ଚ ବରଷ ,,
କୁଳଛଡ଼ା କଲ କରିବ କସ ,,
ଖାଇ ମରିଯିବ ଜହର ବିଷ ,,
ପାଣି ଗୁଡ଼ ମୀନ ବଞ୍ଚେ କ ରୂପେ ଏ ମାଆ
ମାଛ ଗୁଡ଼ ଝିଅ ବଞ୍ଚେ କ ରୂପେ ,,
ରୁକୁଣା ନଧିକୁ (୨) ବଟେଇ ଦେବ (୨) ,,
ମୋତେ ଯାଇ ଭାଇ ଦେଖି ଆସିବ ,,

କୁଆ ଯେତେବେଳେ କାଆ କରିବ ହେ ମାଆ
କୁଆକୁ ମୁଁ ତେବେ କ କହିବି ,,
ଭଲ କ ମନ୍ଦ ମୁଁ ପଚାରିନେବି ,,
ସଞ୍ଜ ହେବା ଯାଏଁ ବାଟ ଦେଖିବି ,,
ତେଣୁ ଯାଇ ମୁହିଁ ଘରେ ପଶିବି ,,

ବାସି ପୁଡ଼ାପିଠା ସଜ ଲହୁଣୀ ହେ ଭାଇ
ତୁମର ପରି ମୁଁ ପିଠି ଭଉଣୀ ,,
ମକର ପରବ ପହଞ୍ଚିଯିବ ,,
ତୁମକୁ ଯେ ଅଳି କିଏ କରିବ ,,
ସାତ ପାଞ୍ଚ ଝିଅ ଖେଳ ବସିବେ ,,
ସେଥିରେ ଲୁନ ତ କାହିଁ ବୋଲିବେ ,,
ମକର ପରବ ପହଞ୍ଚିଯିବ ,,
କାର ଲାଗି ଶାଢ଼ୀ କିଣିତେ (୩) ଯିବ ? ,,

---

(୧) ରୁକୁଣାନଧି—ରଙ୍କନଧି
(୨) ବଟେଇ ଦେବ—ପଠେଇ ଦେବ
(୩) କିଣିତେ—କିଣିବାକୁ

Digitized by srujanika@gmail.com

ଅଦ୍ଭନ କଲର ଗଡ ଦେଉଛୁ — ହେ କାକା
ମାଆ ନାଇ ଛୁଆ ଭାସି ଯାଉଛୁ — ”
ଅଦ୍ଭନ କଲର କୁଡେଇ ରଖ — ”
ମାଆ ନାଇ ଛୁଆ ଉସେଇ ରଖ — ”
ମଠର ଭିତରୁ ଓହ୍ଲାଇ ନେବେ — ”
ଚନ୍ଦଣା ପଡର କାହ୍ନିଁ ବୋଲବେ — ”
ଛେଉଣ୍ଡ ଛୁଆଟି ବୋଲି କହିବେ — ”
ଆଜ ମୋର ପଦ୍ମ ମାଆ ଥାଆନ୍ତା — ”
ନକେ ଟିକେ କସ ସଜାଡ଼ୁ ଥାନ୍ତା — ”
ଆଜ ମୋର ମାଆ ନାହାନ୍ତି ବୋଲି — ”
କେଡ଼େ ନରଖରେ (୧) ଯାଉଛୁ ଗୃଲି — ”
ମାଆ ଖୁଡ଼ୀ ସବେ ଭରି ରହିଛ — ”
ସକଳ କୁଟୁମ୍ବ ଭରି ରହିଛ — ”
ମାଆ ନାହିଁ ବୋଲି ଫାଙ୍କା ହୋଇଛୁ — ”
ମୋତେ ଏକ ମୁର୍ହା କରିବ ନାହିଁ — ”
ଛ' ମାସରେ ଥରେ, ନେଇ, ଆସିବ — ”
ମୋର ମୁଣ୍ଡ ଧରି ନସୁମ କର — ”

ଆମ୍ବ କସି କସି ଆମ୍ବଠା ଇସି — ହେ ବୋହୂ
ଖେଳ ଖେଳୁଥିଲେ ପଲକେ ବସି — ”
ଖେଳ ଭାଙ୍ଗି ଦେଲେ ଭଗାର ଆସି — ”
ବାଡ଼ ସୁଜୁନାରୁ ଡାଳେ ଭାଙ୍ଗିବ — ”
ଖାଇଲା ଭାତରେ ମନେ କରିବ — ”
ତୁମ ବେଲ ଖଣ୍ଡ ତୁମେ ଖାଇବ — ”
ମୋର ବେଲ ଖଣ୍ଡ ଥୋଇ ରଖିବ — ”
ଭାଇକୁ ପଠେଇ ଆଣି ଆସିବ — ”

---

(୧) ନରଖ—ନରେଖ

Digitized by srujanika@gmail.com

ଗଡ଼ଆ ଥଳକୁ ବଟଇ ଦେବ — ହେ ବୋଉ
ମୋତେ ଯାଇ ଥରେ ଦେଖି ଆସିବ — ,,
ମାଆ ଯେତେବେଳେ କର ପଡ଼ିବ — ,,

ହାତ ଧଂଇ ତୁମେ ଉଠେଇ ଦେବ — ହେ ବାପା
ମାଆ ଯେତେବେଳେ କାନ୍ଦ ବସିବେ — ,,
କାଠି ଖଣ୍ଡେ ନେଇ ଧରେଇ ଦେବ — ,,

## କାନ୍ଦଣା

( ଚକ୍ରଧର ପୁର, ସିଂହଭୂମ୍ )

—୪—

ଅଣ ନେଉଟିଆ ଟେଙ୍ଗୋଉ ପିଠା — ମାଆ ଗୋ
ଆଜଠୁଁ ସରିଲା ଜନମ କୁଠା — ,,
ଆଛୁର ପାଛୁର ଝର ଟକୁଳ — ,,
ଆଜଠୁ ସରିଲା ତୁମ ବାଖୁଳି — ,,
କେତେଡ଼େ ଶରଧାରେ ଥିଲୁ ବଢ଼ାଇ — ,,
ଏବେ ତ ପାଖରୁ ଦେଲୁ ଛଡ଼ାଇ — ,,
ଆମ୍ବ ଗଛରେ ତ ପଣସ ରସ — ,,
ଅଜଣା ଘଇଜେ କରିବ ବାସ — ,,
ବାର ବରଷେ ଯେ ତେର ପରବ — ,,
ଝିଆ ବୋଲି ମୋତେ କଏ କହିବ ? — ,,

Digitized by srujanika@gmail.com

ସକାଳ ଖିଆ ଯେ ସଞ୍ଜ ହୋଇବ          ମାଆ ଗୋ
ଖାଆ ବୋଲି ମୋତେ କଏ କହିବ ?          ,,
ପେଟ କି ଜାଣିବ ପିଠିର କଥା ।          ,,
ତୋ ବିନୁ କେ ମୋର ଜାଣିବ ବ୍ୟଥା ?          ,,
କାନ ଆଙ୍ଗୁଳରେ ରେଗଡ଼ା ମୁଦ          ,,
ଯାଇ ନାହିଁ ମୋର ବାଳକ ବୁଦ୍ଧି          ,,
ହାଣ୍ଡ ବଢ଼ିଥିଲା ପଥର ଖାଇ          ,,
ମୁହିଁ ବଢ଼ିଥିଲା ତୋ କ୍ଷୀର ଖାଇ          ,,
ଗରିଆ ଭିତରେ ଲଙ୍କା ମରିଚ          ,,
ରଖି ନ ପାରିଲ ପାଞ୍ଚବରଷ          ,,
ଗରିଆ ଗରିଆ ଗୃର ଗରିଆ          ,,
ମତେ ପେଲିଦେଲ ଗୃର ଦରିଆ          ,,
ସୋରିଷ ଫୁଲ ଯେ ଫୁଟେ ଯତନେ          ,,
ମୁଁ ତ ଯାଇ ଭଉଣୀଙ୍କୁ ଦେଖେ ସପନେ          ,,

ଟେକା ପକାଇଲେ ଆଣ୍ଡ଼ ଲୁଚିବ          ଗୋ ବଡ଼ ଭାଉଜ
ଧରୁ ବାହାରିଲେ ମୁହଁ ଲୁଚିବ          ,,
ତେଲ ମାଠିଆରେ ପିତ୍ତଳ ପଳା          ,,
ନଷ୍ଟ ବୋଲୁଥିବ ମୋ ଧରୁ ପଳା          ,,
ଅଲେଖା କାଗଜ କାଳି ଅକ୍ଷର          ,,
ଅଲେଖା ନଣନ୍ଦ ମୁହିଁ ଭୁମ୍ବର          ,,
ଲେଖାର ନଣନ୍ଦ ମୁଁ ହୋଇଥାନ୍ତି          ,,
ଲେଖି ଲେଖି ଯାର ମୁଁ ନେଉଥାନ୍ତି          ,,
ବାଡ଼ ପଛଆଡ଼େ ଧୋବଲି ଘୋଡ଼ା          ,,
କଏ ବାନ୍ଧଦେବ ଲୋଟଣି ଜୁଡ଼ା ?          ,,
ତୁମ ବାଟଖଣ୍ଡି ତୁମେ ଭୁଲିବ          ,,
ଆମ ବାଟ ଖଣ୍ଡି ଦୂବ ପାଳିବ । (୧)          ,,

(୧) ପାଳିବ— ପାଳନ କରିବ ।

Digitized by srujanika@gmail.com

ତୁମ କାଠି ଖଣ୍ଡ ତୁମେ ଘଷିବ     ଗୋ ବଡ଼ ଭାଉଜ
ଆମ କାଠି ଖଣ୍ଡ ପଠାରେ ଥିବ     ,,
ତୁମ ମଳ ଶାଢୀ ତୁମେ ପିନ୍ଧିବ     ,,
ମୋର ମଳ ଶାଢ଼ୀ ଜଗି ଧରିବ ।     ;,

ସାତ ଦାନ୍ତକାଠି ବଜିଲା ମେଳେ     ବନ୍ଧୁ ଗୋ
ଆମ୍ଭେ ସାତ ପାଞ୍ଚେ ନଈରେ ମେଳେ     ,,
ନଈରେ ଦେଖିଲୁ ନବ ଯାତ୍ରା     ,,
ଉଚ୍ଚୁଳ ପଡ଼ୁଛି ଗୋପ ମଥୁରା     ,,
ଗୋପ ମଥୁରା ତ ନ ଜାଣି ପାରେ     ,,
ପର ଘର କଥା ନ ସହ୍ୟ ପାରେ     ,,
ହଳଦିଆ ଲୁଗା ବନବାସକୁ     ,;
ମୋ ମନ ଡାକୁଛି ବୃନ୍ଦାବନକୁ     ,,
ଯାହା ଘରେ ନାହିଁ ସଞ୍ଜ ବଳିତା     ବନ୍ଧୁ ଗୋ
ସେ କାହୁଁ ଜାଣିବ ବନ୍ଧୁ ବ୍ୟବସ୍ଥା ।     ,,
ଯାହା ଘରେ ନାହିଁ ଧାନ ଅମାର     ,,
ସେ କାହୁଁ ଜାଣିବ ବନ୍ଧୁ ବେଭାର ।     ,,
ଆଞ୍ଚରେ ପାଞ୍ଚରେ ବୁଞ୍ଚରେ ଘର     ,,
ସୀମା ବାହାରିଲେ ବୋଲିବେ ପର     ,,

ବାଠ ବରଗଛ ବହଳ ଛାଇ     ଲୋ ସାଙ୍ଗ
ଯେତେ ଦୂର ଗଲେ ଭୁଲିବ ନାହିଁ     ,,
ବାଡ଼ ପଛ ଆଡ଼େ କଦଳୀ ପୁଆ     ,,
ଆଜଠୁଁ ସରିଲା ସକାଳ ଖିଆ     ,,
ଶିଳ ତଳେ ଗଲା ହଳଦୀ ପାଣି     ,,
ମା'ଡାକୁଥିଲେ ମହୁଡ଼ ମଣି     ,,
ଟିପି ଟିପି ପାଣି ବାଠ ଖସର     ,,
ତୁମ ଛତା ବାଡ଼ ଆମ ଆଡର     ,,

Digitized by srujanika@gmail.com

ନୂଆ ଖଡ଼ଖଡ଼ (୧) ଚୁଆ ଗଉଡ଼ — ଲେ ସାଙ୍ଗ
ମୋତେ ନେଇ ଯିବେ କେଝେଁର ଗଡ଼ (୨) ,,
ଟୁକଲା (୩) ଭିତରେ କୁଣ୍ଢାଇ ଟିକ ,,
କହିଲେ ବୋଲିବେ ଚୁହାଳ (୪) ଟିକ ,,

ଆଷାଢ଼ ମାସରେ ଗୁଣ୍ଡି ବରଷା — ନାମ ଗୋ
ସାତେ ପାଞ୍ଚେ କରି ଖେଳିବା ପଶା ,,
ପଶା ଖେଳ ଗୁଟି ତୋ ହାତେ ଥାଉ ,,
ରୋଷଇ-ଶାଳରେ ମୋ ଜୀବ ଯାଉ ,,
ରୋଷେଇଶାଳ ତ ଷୋଳ ବ୍ୟବସ୍ଥା ,,
ଷୋଳ ବ୍ୟବସ୍ଥା ଯଦି ଶିଖି ଥାଇଛ ,,
ପର ଘର କଥା ଟେକ ଧରିଛ ,,
ପର ଘର ନାହିଁ ଯମର ଘର ,,
ତା ବୁଦ୍ଧି ସୁଦ୍ଧି କ ବନ୍ଦାସ୍ତୁ କର ,,

ବୃନ୍ଦାବନ ତାସ୍ତ କେ ଗଣି ଥିଲା — ବନ୍ଧୁ ଗୋ
ମୋର ଗେଲ୍ଲା-ପଟ କେ ଜଣିଥିଲା ,,
ବୃନ୍ଦାବନ ତସ୍ତ କଉଡ଼ି ପେଲ (୫) ,,
କଉଡ଼ି ଦେଲେ ମୋ ରହିଲା ପଡ଼ି ,,
ଗିନାର ହଳଦୀ ଗିନାରେ ଥିବ ,,
ଗାଧୁଆ ତୁଠରେ ମନେ କରିବ ,,
ସରଗି କାଠିକୁ (୬) ବେଗୁନା (୭) ରୁଆ ,,

---

(୧) ଖଡ଼ଖଡ଼—ସୂଅ'ର;
(୨) କେଝେଁର—କେଉଁଝର
(୩) ଟୁକଲି — ଟୋକେଇ;
(୪) ଚୁହାଳ—ମୁଖର,
(୫) ପେଲ—ପେଢ଼ି,
(୬) ସରଗି — ଶାଳ ଗଛର ଦାନ୍ତକାଠି
(୭) ବେଗୁନା—ବେଗୁନିଆ,

Digitized by srujanika@gmail.com

ମୋତେ ନ ଆସଇ ଗୃଞ୍ଜଳ ଧୂଆ — ବନ୍ଧୁ ଗୋ
ପୋଖରୀ କୂଳରେ ସରୁ କୋଇଲା — ,,
ଧନ ଗଣୁଥିଲ୍ ଆଜ ସରିଲା — ,,
କଦଳୀ ପତର ଗୃହ ଚଉତା — ,,
ଖଣ୍ଡେ ନ ହେଲ ସେ ପେଜ ସଇଥା — ,,
କଦଳୀ ଗଛରେ ମୂଷା ଲାଗିଲା — ,,
ବାବୁର ବାନ୍ଧାକୁ ଆଶା ରହିଲା — ,,
ସେ ଆଶା ମୋହର ବୁଡ଼ିବ ନାହିଁ — ,,
ବଛର (୧) ଛ'ମାସ ରଖିବ ନାହିଁ — ,,
ବଛର ଛ'ମାସ ପନ୍ଦ ରଖିବ — ,,
ଭୁଣ୍ଡିର ବଚନ ପଠାଇ ଥିବ — ,,
ପର୍ବତ ଉପରେ ପାଚିଲା କେନ୍ଦୁ — ,,
ଘର ଜାଣି କରି କରିଛ ବନ୍ଧୁ — ,,
ଏମନ୍ତ ଘରେ ସେ ମାନ ତ ନାହିଁ — ,,
ଗଲେ ତ ଆସନ ଦେବେ ତ ନାହିଁ — ,,

ଗାଁ ମୁଣ୍ଡରେ ତ ଗୁଡ଼ିଆ ଘର — ମାମୁଁ ଗୋ
ମୋତେ ଯାଉଥିଲ ମିଠାଇ ଭାର — ,,
ମିଠାଇ ଭାରକୁ ମୁର୍ଦ୍ଦାସ କଲ — ,,
ବାତାସା ଭାରକୁ ବିଦାୟ ଦେଲ — ,,
ଇନ୍ଦ୍ର ପନ୍ଦ ଥରେ ମନେ କରିଥା — ,,
ବାତାସା ଭାରକୁ ଉଡ଼ାଇ ନେଥା — ,,

କୁଆ କାଆ କଲେ ମନ୍ଦ ବୋଲିବ — ହେ ଭାଇ
ସଞ୍ଜ ହୋଇଲେଟି ଡୁବିଟି ଦେବ — ହେ ଭାଇ
ପାଞ୍ଚ କୋଶ ବାଟ କୋଟେଣ କରିବ — ହେ ଭାଇ
ଛେଟେ ସିନା ମତେ ଡାକ ଆଣିବ — ହେ ଭାଇ

(୧) ବଛର — ବର୍ଷ

Digitized by srujanika@gmail.com

ଖଗ୍ କାଟିଲେ ତ ଛତା ଧରିବ — ହେ ଭାଇ
ବାଳ ଛାଣ୍ଡିଲେ ତ ଜୁଡ଼ା ମାଡ଼ିବ — ହେ ଭାଇ
ଗୋରୁ ବନ୍ଧୁଥିଲି ଗୁହାଳ ଘରେ — ହେ ବାପା
ଝିଅ ବିକ ଦେଲ ସଖ୍ୟ ଲୋକରେ — ହେ ବାପା
ଏତେ ଏତେ ବଂଧୁ ଫେରାଇ ଦେଲ — ହେ ବାପା
ଏମିତି ଗାଁଆରେ ଜବାବ ଦେଲ — ହେ ବାପା
ସାପ ମରିଗଲେ ଉଗର ନାହିଁ — ହେ ବାପା
ମୁହିଁ ମରିଗଲେ ଖବର ନାହିଁ — ହେ ବାପା
ଖବର ପାଇବ ଦାଣ୍ଡ ଦୁଆରେ — ହେ ବାପା
ଛ'ମାସେ ନ ମାସେ ଉଡ଼ା ଖବର — ହେ ବାପା
ବଚ୍ଛରେ ପାଇବ ମରା ଖବର — ହେ ବାପା

## ଭୁଆସୁଣୀ ପଠଣି କାନ୍ଦ

(ଶରସୁଆଁ, ସିଂହଭୂମ୍)

ଆଜୁ ଲହ ଲହ ପାନ ପତର — ଆଈ ଗୋ
କାହିଁ ଶୁଣିଥିଲୁ କର୍ଣ୍ଣ ମନ୍ତର — ଆଈ ଗୋ
କର୍ଣ୍ଣମନ୍ତର କି ଧରି ବସିଲ — ଆଈ ଗୋ
ଆଷାଢ଼ ମାସରେ ଦେବ ବୋଇଲ — ଆଈ ଗୋ

ସରୁ ସରୁ ଧାନ ଅଗିତର ଶିଷା — କାକୀ ଗୋ
ମା' ସିନା ତୁମ ଭଗାରି ହସା — କାକୀ ଗୋ
ମୁହିଁ ତ ତୁମର ଝିଅ ସରିଶା — କାକୀ ଗୋ

Digitized by srujanika@gmail.com

ଫୁଲ ଫୁଟି ନାହିଁ ବାସନା କେତେ          ମାଆ ଗୋ
ଝିଅ ଯାଇ ନାହିଁ ଠିକଣା କେତେ          ମାଆ ଗୋ ।

ଆମ ବାଡ଼ିଆଡ଼େ କଳା ତୁଳସୀ          ବାପା ଗୋ
ମୁହିଁ ହୋଇଥିଲି ହାତ ବାଉସି          ବାପା ଗୋ ।
ଯେବେ ବସିଥିବ ନଗଣ ହୋଇ          ବାପା ଗୋ
କୁଆ କା' କଲେ ଥିବ ଅନାଇ          ବାପା ଗୋ ।
ବେଳ ବୁଡ଼ିଗଲେ ନସଖା ହେବ          ବାପା ଗୋ
ମନ ଦୁଃଖ କଥା କାକୁ କହିବ          ବାପା ଗୋ ।

ଦଉଡ଼ି ଫିଙ୍ଗିଲେ ପାଣି କାଢ଼ିବ          ବୋହୂ ଗୋ
ମୋର ନଣନ୍ଦ ଖୋଜିଲେ କାହୁଁ ପାଇବ          ବୋହୂ ଗୋ ।

ଥାଳୀ ଫିଙ୍ଗିଦେଲ ମଞ୍ଚା ତଳକୁ          ମାଆ ଗୋ ମୋର
ମୋତେ ଫିଙ୍ଗିଦେଲ ଯମ ପୁରକୁ          ମାଆ ଗୋ ମୋର ।
ଯମପୁର ପାଣି ହିମ କାକର          ମାଆ ଗୋ ମୋର
ଛାତିରେ ଲେଖିଲ କଳା ଅକ୍ଷର          ମାଆ ଗୋ ମୋର ।

Digitized by srujanika@gmail.com

# ଭୁୟାଁଙ୍କ କାନ୍ଦଣା

(କେଉଁଝର)

ପୋଖରୀ ହୁଡାରେ କଇଁତ (୧) ଗଛ
ସେ ଫୁଲ ଫୁଟଇ ଚଇତ ମାସ ।
ଚଇତାଳ ପୁଅ ହେଇ ଥାଆନ୍ତି
ଖଡ଼ି ଧରି ପାଠ ପଢ଼ି ଥାଆନ୍ତି
ରଜାଙ୍କ ଦାଣ୍ଡରେ ଗୁଲି ଥାଆନ୍ତି
ବାପ ନାମ ପଚ୍ଚରିଲେ ଉତ୍ତର ଦେନ୍ତି ।

ସଲପ ସେପାରି ତାଳ ବଢ଼ିଛି
କସ ଖାଇ ଶାଶୂ ଘର କରିଛି
ଆଠଣି ଗୁରଣି ଧରି ଆସିଛି
ଆଠଣି ଗୁରଣି ଫେରାଇ ନେଉ
ପୋଦଲା କଣ୍ଢିରେ ମୋ ଦନ ଯାଉ
ତେନ୍ତୁଳି ପତର ରୁଖିଲି ମୁଠେ
ଯୋଉ ଅଛି ମୋର ନଣନ୍ଦ ଗୋଟେ
ଭଜି ଖାଇଦେବ ଗୁଞ୍ଜଲି ମୁଠେ ।
ଚଟିକ ଜଡ଼ାର ତେଲ ପାଣିଆ
ନିମନ ମୁହାଁର ଲୁଗା ଟାଣୁଆ
ଫୁଲ ଫୁଟି ଫୁଲ ମଉଳି ଯିବ
ତୁମକୁ ଦେଖିତେ ସପନ ହବ ।
କାନ୍ଥରେ ପୁତୁଳା (୨) ଲେଖି ରଖିବ
ରଜନୀ ପାହିଲେ ତାକୁ ଦେଖିବ ।

---

କଇଁତ—କଇଥ    ପୁତୁଳା—ପିତୁଲା;

Digitized by srujanika@gmail.com

ଘରୁ ବାହାରିଲି ମାଡ଼ିଲି ଜଉ
ଶଶୁର ପୁଅକୁ ଡଙ୍କୁଣୀ ଖାଉ
ଘରୁ ବାହାରିଲି ମାଡ଼ିଲି ଚୂଷ
ଶଶୁର ପୁଅର ପାଚିଲ୍ ନଶ ।

## କାନ୍ଦଣା

(ଚକ୍ରଧରପୁର, ସିଂହଭୂମ୍)

ପର୍ବତ ଉପରେ ଲାଲ୍ କେଶରୀ
ଗେଲଖିଆ ଭାତ ଦେଲ ପାସୋର । ବୋଉ ବୋ
ପିତାଡ଼ି ମାଛକୁ ଫାଡ଼େ (୧) ରଖିବେ
ଭଗାର ଝିଅକୁ ଡଲେ ରଖିବେ ,, ,,
ଗରିଆ ଗରିଆ ଗୁର ଗରିଆ
ମୋତେ ଠେଲିଦେଲ ମଝି ଦରିଆ । ,, ,,
କରେଇ କରେଇ ଲାଲ୍ କରେଇ
କେଡ଼ାଚରୀ (୨) ଠାକୁ ଦେଲ ଧରେଇ ,, ,,
ଚୂଲାରେ ବସିଛୁ ଝିଅ ପଲମ
ଆଜହୁଁ ସରିଲା ଝିଅ ଜନମ ,, ,,
ଲାଉ ଫୁଲ ଫୁଟେ ରଙ୍ଗ ଡାଳରେ
ମୁହିଁ ବଢ଼ିଥିଲି କେତେ ଗେଲରେ ,, ,,
କଇଁ ଫୁଲ ଫୁଟେ ବନ୍ଧ ଭିତରେ
ମୁହିଁ ବଢ଼ିଥିଲି କେତେ ଦୁଖରେ ,, ,,

ଫାଡ଼େ—ଫାଳେ; କେଡ଼ାଚରୀ—ମଇଁଷିଚରା ।

Digitized by srujanika@gmail.com

ଗୃହରଟି ଆଙ୍ଗୁଠି ଗୃହରଟି ମୁଦ
ଘୁଡ଼ ତାହାଁ ମତେ ପିଲାର ବୁଦ୍ଧି — ବୋଉ ବୋ
କଞ୍ଚ କଞ୍ଚ ଦୂବ ବାଛୁଗାଖିଆ
ଆଜଠୁ ସରିଲା ସକାଳ ଖିଆ — ,, ,,
କଞ୍ଚ କଞ୍ଚ ଦୂବ ନେମ୍ବୁ ଆଗୃର
କଞ୍ଚାଖିଆ ଘରେ ନାହିଁ ଖଗୃର — ,, ,,
କାଞ୍ଚନ ଥାଳୀରେ ବାସି ଚନ୍ଦନ
ସବୁ ଝିଅଠାରୁ ମୁହିଁ ନନ୍ଦନ — ,, ,,

ବାଉଁଠ ବରଗଛ ପାନେର ବଠା — କାକା ଗୋ
କାନ କାନଫୁଲ ଝିଞ୍ଜର ଫିଠା — ,, ,,
କାନେ କାନ ଫୁଲ ମୋ କାନେ ଅଛୁ
ଘର ଦେବେ ବୋଲି ମୋ ମନେ ଅଛୁ — ,, ,,
ନାକ ସୁନା ମାଛୁ ସୁବର୍ଣ୍ଣ ବେଣୀ
କ ଦବ ଦେଉଛ ମୋ ମନ ଜାଣି — ,, ,,
କଛୁ ଦବ (୧) ମୁଇଁ ମାଗଇ ନାହିଁ
ତୁଣ୍ଡର ବଚନ ମାଗୁଛି ମୁହିଁ — ,, ,,
ତୁଣ୍ଡର ବଚନ ତୁଣ୍ଡରେ ଥାଉ
ତୁମ ପାଦ ତଳେ ଜୀବନ ଯାଉ — ,, ,,

କାକୁଡ଼ ଗଛରେ କାକୁଡ଼ ନାହିଁ
ମୋତେ ନେଇ ଘୁଡ଼ ଯିବ କ ନାହିଁ — ଦଦା ଗୋ
ଝାଡ଼ୁଆ (୨) ସାଇରେ କାଳିଆ ଘୋଡ଼ା
କଏ ବାନ୍ଧ ଦେବ ଲେଝୁଣି ଜୁଡ଼ା — ଭଜନରେ (୩)
ବାଡ଼ର କଦଳୀ ପାକ ପଡ଼ିଲା
ତୁମ ଘରେ ମୋର ଧନ ସରିଲା — ଭଜନରେ

---

ଦବ—ଦ୍ରବ୍ୟ; ଝାଡ଼ୁଆ—ଗହଡ଼; ଭଜନ—ଭଉଣୀ;

Digitized by srujanika@gmail.com

# କାନ୍ଦଣା

(ଚକ୍ରଧରପୁର, ସିଂହଭୂମ୍)

| | |
|---|---|
| ସାତ ପରବତ ଚଉଦ ଘାଟି | ଏ ମାଆ ମୋର |
| ଆଉ କି ଦେଖିବି ଜନମ ମାଟି | „ „ |
| କଖାରୁ କାଟିଲି ଚେନକ ଚେନ | „ „ |
| କି କରି କରିବୁ ଏ ସ୍ୱାନମାନ | „ „ |
| ଗରିଆ ଭିତରେ ଗୋଲ ମରିଚ | „ „ |
| ଆଜଠୁ ଯାଉଛୁ ବେଉସା ଶଖି | „ „ |
| ନାଉ ଲଗାଇଲି କେରିକ କେରି | „ „ |
| ଝିଅ ଜନ୍ମ କଲେ କୁଠା ତ ଗାଲି | „ „ |
| ଲୁଗା ତ ଦେଇଛ କାନମୂଳିଆ | „ „ |
| ଖୁଣ୍ଟା ଯେ ଶୁଣିବି ସଞ୍ଜବେଳିଆ | „ „ |
| ଲୁଗା ଯେ ଦେଇଛ ଆଣ୍ଠୁ ଉପରେ | „ „ |
| କେମନ୍ତେ ଗୁଳିବ ବନ୍ଧ ଉପରେ ? | „ „ |
| ଗାଆଁ ମୁଣ୍ଡରେ ଯେ ନମ କୁଟିଲ୍ | „ „ |
| ଗାଆଁ ପାରିହେଲେ ନାମ ଲୁଚିଲ୍ | „ „ |
| ବରି ବାଟିଥିଲି ବରି ଚକୁଳି | „ „ |
| ଖେଳା ସରିଗଲ୍ ଭୁନ୍ତୁ ବାଗୁଳି | „ „ |
| ବଡ଼ ଘର ଝିଅ ବଡ଼ ହଟିଆ | „ „ |
| ସଙ୍ଗରେ ଆଣିଛୁ ଯୋଡ଼ା ଖଟିଆ | „ „ |
| ଯୋଡ଼ା ଖଟିଆରେ ବସାଇ ଦେବେ | „ „ |
| ପବନ ଆସିଲେ ଉଡ଼ାଇ ନେବେ | „ „ |
| ଯୋଡ଼ ବନ୍ଧରେ ଯେ ଠିଆ କରିବେ | „ „ |

Digitized by srujanika@gmail.com

ଯୋଡ଼ଏ କଳସୀ ଧରାଇ ଦେବେ    ଏ ମାଆ ମୋର
ସେରେଇ ବୃଉଳ ବାନ୍ଧରେ ଦେବେ    ,,    ,,
କୁଟୁମ୍ବ ହିସାବେ ବାଣ୍ଟି ଯେ ଦେବ    ,,    ,,
ତେବେ ଯାଇ ଝିଅ ଘର କରିବ    ,,    ,,

ଗାଡ଼ିଆ ଭିତରେ ଫୁଟିଲି କଇଁ    ମାଆ ଗୋ ମୋର
କିଛି ଅଳି ଦଳି ପାରିଲି ନାହିଁ    ,,
ଏରୁଣ୍ଡି ପିଠାଯେ ଛେରୁଣ୍ଡି ଗଲି    ,,
ଘର କଲି ଝିଅ ବାହୁଡ଼ି ଗଲି    ,,
ଠିକ ଠିକ ଶାଢ଼ୀ ନହ ଦରିଆ    ,,
ମୋତେ କରିଦେଲ ନଦୀ ପାରିଆ    ,,
ଚକୁଳି ପିଠାଯେ କଲ ନେଉଟା    ,,
ମୋତେ କରିଦେଲ କ ହଟହଟା    ,,
ହାଣ୍ଡି ଝୁଲୁଥିଲି ବଣ ଭିତରେ    ,,
ମୁହିଁ ଝୁଲୁଥିଲି ତୋହରି କୋଳେ    ,,
ହାଣ୍ଡି ଖାଉଥିଲି ବଣର ଫଳ    ,,
ମୁହିଁ ଖାଉଥିଲି ତୋହରି କ୍ଷୀର    ,,

କୁଆ ଉଡ଼ିଗଲା ସାତ ସକାଳୁ    ହେ ବାପା
ମାଆ ଛାଡ଼ିଗଲା ବାଳୁତ କାଳୁ    ,,
ମାଆ ଯଦ୍ଦ ମୋର ବଞ୍ଚି ଥାଆନ୍ତା    ,,
କଉଡ଼ି ଲଗାଇ ଘର ଢିଅନ୍ତା    ,,
ମାଆ ନାହିଁ ମୋର କେ ଦେବ ଘର    ,,
ଗାଡ଼ିଆ ଭିତରେ ଖେଳେ ପୋହଳା    ,,
ତୁମ ଘର ଝିଅ ଖୋଜେ ଗହଣା    ,,
କପୂର ନାହିଁ ଯେ କନା ବାସୁଛି    ,,
ମାଆ ନାହିଁ ତାର ଛୁଆ ଦିଶୁଛି    ,,

Digitized by srujanika@gmail.com

ବାଲି ତାତିଲେ ତ ଜୂତା ପିନ୍ଧିବୁ  ହେ ଭାଇ
ଖରା କାଟିଲେ ଯେ ଛତା ଧରିବୁ  ”
ଭୋକ ଲାଗିଲେ ଯେ ଲଡ଼ୁ ଖାଇବୁ  ”
ଶୋଷ ଲାଗିଲେ ଯେ ପାନ ଖାଇବୁ  ”
ଗୋଳିଆ ନଦୀରେ ଗୋଡ଼ ଧୋଇବୁ  ”
ତେବେ ଯାଇ ମୋତେ ଦେଖି ଆସିବୁ  ”

କାଠ ଘସୁଥିଲି କଦମ୍ବ ମୂଳେ  ନାମି ଗୋ
ମନେ କରୁଥିବୁ ଗାଧୁଆ ବେଳେ  ”
ନିମ ପତ୍ରର କି ଏକ ସିରିଆ  ”
ମତେ ନ କରିବ ଏକ ବାରିଆ  ”
ରୁକ୍ମୁଣି ଶାଳରେ ଷୋଳ ବେଉସା  ”
ଷୋଳ ବେଉସାଟି ଶିଖି ଥାଇତ  ”
ଗୁଡ଼ିଆ ଘରର ଗୁଡ଼ ବାହାଣି  ”
ସେ ଘର ଶାଶୂତ ଆଡ଼ ରୁହାଣି  ”

ଝୁରି ପରବତ ଚଉଦ ଘାଟି  ଗଇଁ ଗୋ
ଆଜି କି ଦେଖିବ ଜନମ ମାଟି  ”
ମିଠାଇ ଦନାକୁ ନାଇଁ ଦେଇବ  ”
ପଛକୁ ଚାହିଁଲେ ଢକା ପଥର  ”
ବାଡ଼କୁ ଚାହିଁଲେ ଗଛ ପତର  ”
ଘରକୁ ଚାହିଁଲେ ସମସ୍ତେ ପର  ”

Digitized by srujanika@gmail.com

# କାନ୍ଦଣା

(ଖୋର୍ଦ୍ଧା)

ଶିଙ୍ଘୁ ଗଳ ଗଳ ପତର ଗଳି
ଆଜଠାରୁ ଗଲୁ ଆମ୍ଭର ଅଳ ।
କରଞ୍ଜ ପତର ଥାଳ ତଳକୁ
ମତେ ପେଲିଦେଲୁ ରସାତଳକୁ
କୋଇଲି ରାବଇ କରଞ୍ଜ ଡାଳେ
ମୋ ମାତା ରାବଇ ଭୋଜନ ବେଳେ ।
କୋଇଲି ରାବଇ ଚୋଠାକୁ ଚାହିଁ
ମୋ ମାତା ରାବଇ କୋଠାକୁ ଚାହିଁ ।
ନଡ଼ିଆ ପତର କଳାଗୁମର
ମଲୁ ତିନି ଦିନେ ଉଡ଼ା ଖବର
ଉଆସ ଭିତରେ ପାଚିଲୁ ବେଲ
ପୋଖରୀ ତୁଠରେ ପହଡ଼େ ଗେଲୁ
ସନ୍ଧ୍ୟା ଦେଉଥିବ ବୃନ୍ଦାବତୀକ
ମରମ ଲେଖିବ ତୁମ୍ଭ କନ୍ତକ
ସନ୍ଧ୍ୟାବେଳେ ସନ୍ଧ୍ୟା ମନ୍ଦରୁ ବାଜେ
ବେଳ ଦି ଘଡ଼ିକ ମୋ ନିଦ ଭାଜେ ।
ଚଲ ଉଡ଼ିଗଲେ ପାଣିକ ଛୁଇ
କି ମାୟା ରଖିଲୁ ମୋହର ଠାଇଁ ।
ଚଲ ଉଡ଼ିଗଲେ ମଞ୍ଚ ମଣ୍ଡଳେ
ନେଇ ପୁରାଇଲୁ ଚଣ୍ଡାଳ ଘରେ ।

Digitized by srujanika@gmail.com

କବାଟରେ କଣ୍ଟା ନ ଧାଡ଼ିଆ
ପୀଖେ ସମୁଦର ପାଖେ ଦରିଆ
ମଝି ସମୁଦରେ କି ବନ୍ଧ ଦେବ ?
ମାଳିଆଣୀ ସଙ୍ଗେ କି ଧନ ନେବ ?
ପୋଖରୀ ଭିତରେ ଓଲଟ କଇଁ
ଫିଟିଗଲା କେଶ ପଡ଼ଇ ନାଇଁ ।
ପୋଖରୀକୂଳିଆ ପାନ ବରଜ
ପର କି ଜାଣିବେ ଦେହ ଦରଜ ?
ଠିଆ ଜହ୍ନ ପଡ଼େ ପିଣ୍ଡା ତଳକୁ
କାହା ନାମ୍ବୁଁ ଧରି ଯିବ ଘରକୁ ?
ଢିଙ୍କିଶାଳେ ଯୋଉ ଫାଳିଆ ଚକ୍ଷୁ
ଜାଣି ଶୁଣି ଦେଲ ସାବତ ଶାଶୁ ।
କାହୁଁ ଆସିଲ ଏ ମାଟିଆ ଶିଳ
ବାଛି ନେଇଗଲା ସୋରିଷ ଫୁଲ ।
ପାଚିଲା କଦଳୀ ଫେଣିରେ ପାଚେ
ତୁମ୍ଭ କଥାମାନ ହୃଦରେ ନାଚେ ।
ପାଚିଲା କଦଳୀ ଗଛ ବେଣର
ଛାଡ଼ି ମୁଁ ଯାଉଛି ସୈନ୍ୟ-ସାଗର ;
ସାପ ଖେଳୁଥିଲେ ଧୂଳି ଉଡ଼ଇ
ମୁହିଁ ଖେଳୁଥିଲେ ବେଳ ବୁଡ଼ଇ ।
ମାଟିଆ ଫଙ୍ଗରେ ବାଇଶି ମହୁ
ସତେ ଖଣ୍ଡାଖାଇ ପାଳିବ ବୋହୂ !

ସଜ ମଲ୍ଲୀଫୁଲ ସିଂହାସନକୁ
ମୋ ବୋଉ ଲଗିଲା ତୁମ୍ଭମାନଙ୍କୁ
କାଉ ବୋବାଇଲେ ଆହାର ଦେବ
ମୋ ବୋଉ କାନ୍ଦିଲେ ବୁଝାଉଥିବ ।
ଆମ୍ବ ଥୋଲ ଥୋଲ ଗଛକୁ ଭର

Digitized by srujanika@gmail.com

ମୁହିଁ ହୋଇଥିଲି ତୁମ୍ଭକୁ ଘର ।
ଜଳ ବରଷଇ ଶ୍ରୀର କଣକୁ
ସେ ଜଳ ପଡ଼ଇ ଗଙ୍ଗା ଦେହକୁ
ଗଙ୍ଗା ଜଳ ସତେ ଗସ୍ଥା ମାଡ଼ିବ
ଗୋପପୁରେ ସତେ ପାଦ ପଡ଼ିବ !
ସୁନା ଛାଟିଆରେ ଖଣ୍ଡେ ନଡ଼ିଆ
ସବୁ ଝିଅଠାରୁ ମୁହିଁ ବଢ଼ିଆ ।
ରସ ଛାଟିଆରେ ରୂପା ବଣଣୀ
ସବୁ ଝିଅଠାରୁ ମୁହିଁ କଷଣୀ ।
ଆସିଲେଣି କଂସ କମର ଭଡ଼
ବସିଲେଣି ଦାଣ୍ଡ ଦରଜା ମାଡ଼ ।
ସମସ୍ତେ ସମସ୍ତେ କର ଗୁହାରି
ଫେରିଯାଉ ଆଜ କଂସ ସୁଆରି ।
ଝିଙ୍କିରିରୁ ସତେ ଖିଲ ଖସିବ
କାଶୀ ବୃନ୍ଦାବନ ମତେ ଦିଶିବ
ବାଉଁଶ ଆଗରେ ଡାହୁକ ପକ୍ଷୀ
କେଲା ଘରେ ନେଇ ଦେଉଛ ରଖି ।

Digitized by srujanika@gmail.com

# କାନ୍ଦଣା

(ଦୀଘିର, ପୁରୀ)

ନୂଆ ଅଣ୍ଟାସୂତା ଖିଲ ଭଉଁଣୀ      ମଝିଆଁ ନନା
ଏତକ ବେଳରେ ଯାଆନ୍ତ ମର      ,,
ଆସନ୍ତା ସବାର ଯାଆନ୍ତା ଫେର      ,,
ଆସିଲା ସବାର ବାଜଲା ଶଙ୍ଖ      ,,
ବାଡ଼ପଡ଼ାଙ୍କର ଧାଉଡ଼ ଦେଖ      ,,
ଗପ୍ପା ତୁଳସୀର ପତର ଯେତେ      ,,
ନନାଙ୍କୁ ବୁଝାଇ କହିବ କେତେ      ,,
ନନା ବୁଝିଲେଟି ମୋତେ ଆଣିବେ      ,,
ଚକୁଳି ପିଠାର ବନ୍ଧ ଗଣିବେ      ;;
ମୁହିଁ ମରଗଲେ ଦିନ ଗଣିବେ      ,,

Digitized by srujanika@gmail.com

# କାନ୍ଦଣା

(ଦାଣ୍ଡମୁକୁନ୍ଦପୁର, ପୁରୀ)

ବାଡ଼ୁଅପାଣି ଗାଧୋଇବାବେଳେ—

| | |
|---|---|
| ଝୁଡ଼ ଝୁଡ଼ ମୋର ସୁନ୍ଦର କେଶ | ମୋ ମାଆମାନେ |
| ସଖୀ ଡାକୁଚନ୍ତି ଖେଳଯିବାକୁ | ,, |
| ଖେଳିଯିବା ମୋର ହେଲା ଉଚ୍ଛୁର | ,, |
| ତରଳ ମର୍ଦ୍ଧନ କାହିଁକି କଲ ? | ,, |
| ରଜ ହେଇଛି କି ସଜ କରୁଚ ? | ,, |
| ରୁଷି ବସିଛ କି ବୋଧ କରୁଚ | ,, |
| କେତେ ସ୍ନେହ କରି ବଢ଼ାଇ ଥିଲ | ,, |
| କାନି ପଣତରେ ବାନ୍ଧି ରଖିଲ | ,, |
| ଏବେ ସବୁ ସ୍ନେହ ପାସୋରି ଦେଲ | ,, |
| କାନି ପଣତରୁ ଫିଙ୍ଗାଇ ଦେଲ | ,, |

ଜୋଇଁ ଆସିବାବେଳେ—

| | |
|---|---|
| ମଥୁରା ଦେଶରୁ ଆଣିଲ ଡାକ | ମୋ ବାପା, ନନା |
| ସାଜି ଆସିଛନ୍ତି ରତ୍ନ ପାଲିଙ୍କି | ,, |
| ରତ୍ନ ପାଲିଙ୍କିରେ କଂସ ଅସୁର | ,, |
| ଆସି ଜୁରି କଲା ମଥୁରା ପୁର । | ,, |

ଝିଅ ବେଦୀକି ଯିବାବେଳେ—

| | |
|---|---|
| ଅମଡ଼ା ଗହ୍ୱରେ ବାଜୁଙ୍ଗା ଘାସ | ହେ ଭାଇ |
| ଭୁଲି ଯାଇଥିଲି କଂସର ଦେଶ | ,, |

Digitized by srujanika@gmail.com

କଂସର ଦେଶକୁ ଦଉଡ଼ିଗଲ — ହେ ଭାଇ
ଗଜ ବୋଲି ଗଧ ବାନ୍ଧିଆଣିଲ — ”
ଯେ’ ଯୋଗ୍ୟ ନୁହେ ପାଦ ତଳକୁ — ”
ତାକୁ ଦେଲ ରତ୍ନ ସିଂହାସନକୁ — ”
ବାଲି ହୁଙ୍କାକୁ ପର୍ବତ ମଣିଲ — ”
ଚରଣର ଧୂଳି ତିଳକ କଲ — ”

ହାତ ଗଣ୍ଠି ପଡ଼ିବାବେଳେ—

ହରିଶ୍ଚନ୍ଦ୍ର ରାଜା ଦ୍ୱାପରେ ଦାନୀ — ହେ ବାପା
କି ତିନି ଭୁବନ ନ ଥିଲେ ଜଣି — ”
ମାୟାରେ ତପସ୍ୱୀ କାହିଁ ଆସିଲା ? — ”
ବଳି ରାଜାଦ୍ୱାରେ ଦାନ ମାଗିଲା — ”
ମାୟା ନ ଜାଣିଲେ ସେ ରାଜାସୁତ — ”
ଶରୀର ମାରି ଦେଇ କରିଲେ ସତ୍ୟ — ”
ରାଜ୍ୟ ଧନ ସବୁ କରିଲେ ଦାନ — ”
ଶେଷକୁ ଭୋଗିଲେ କେତେ କଷଣ — ”
ସେପରି ରାକ୍ଷସ ମାୟା କରିଛ — ”
ଏ ରାଜ୍ୟ ସଭାରେ ଦାନ ମାଗୁଛ — ”
ତୁମ ପଞ୍ଚପ୍ରାଣ ଭୁଲାଇ ଅଛୁ — ”

ପିତୃ ସତ୍ୟ ପାଳି ରାମ ଲକ୍ଷ୍ମଣ — ”
ସୀତା ସହ ଗଲେ ଘୋର ଅରଣ୍ୟ — ”
ଭାଗ୍ୟ ବଳରୁ ସେ ଗୃହେ ,ଫେରିଲେ — ”
ସତେ କି ସେପରି ମୋ ଭାଗ୍ୟ ହେବ ? — ”
ଅଶୋକ ବନରୁ — ”
ରାକ୍ଷସୀ ମେଳରୁ — ”
ସତେ କି ମତେ ଫେରାଇ ଆଣିବ ? — ”

Digitized by srujanika@gmail.com

ସତ୍ୟ ତ୍ରେତୟାରେ
ଦ୍ୱାପର ଯୁଗରେ
ଯେତେକ ରଜା — ହୋ ବାପା
ସମସ୍ତଙ୍କ ସଙ୍ଗେ ତୁମେ ସଙ୍ଗାତ ,,
ଏବେ କଂସେଇର ସଙ୍ଗେ ବସିଲ ମିତ । ,,
ରାମ ଯେଉଁପରି ରାବଣକୁ ମାରି ,,
ବିଭୀଷଣ ମୁଣ୍ଡେ ବାନ୍ଧିଲେ ଶାଢ଼ୀ ,,
ତୁମେ ସେହିପରି ମୋତେ ମାରୁଛ ,,
ଶତ୍ରୁଙ୍କ ମୁଣ୍ଡରେ ଶାଢ଼ୀ ବାନ୍ଧୁଛ ,,
ଶତ୍ରୁଙ୍କ ସଙ୍ଗରେ ମିତ୍ର ହୋଇଲ ,,
ମୋର ପାଇଁ ତୁମେ କୂଟ ପାଞ୍ଚିଲ ,,
କେଳା କୁଢ଼ଆରେ ଭେଳା ବାନ୍ଧିଲ ,,
ପୁରୀ ଶାରଚନ୍ଦ୍ର ଝିଅ ମୁଁ ହୋଇଥିଲି ,,
ପର କୁଢ଼ଆକୁ କରିଲ ସର ,,
ବଡ଼ ଅଭାଗିନୀ ମୁଁ ହୋଇଅଛି ,,
ଅଭାଗ୍ୟ କରମ ବସି ଭୁଞ୍ଜୁଛି ,,
ବଡ଼ ଅଭାଗିନୀ ହୋଇଛି ମୁହିଁ ,,
ଚୋଟି ଚପି ନ ମାରିଲ କପାଇଁ ? ,,
ଯେବେ ଯାଇଥିବ ପରୁଶ କୋଶ ,,
ଆସି ମୋ ପାଖେ ମାରିବ ଖର ନିଃଶ୍ୱାସ ,,
କାଳକୂଟ ସର୍ପ ବେକେ ବାନ୍ଧିଲ ,,
କରଞ୍ଜିକୁ ଗଳା ମାଳା କରିଲ ,,
ହସ୍ତୀ ହୋଇ ମଶା ବରି ଆଣିଲ ,,
ଅଜ ହୋଇ ଗଧ ପାଦ ଧରିଲ ,,
କୁକୁରକୁ ଦେଲ ମନ୍ଦାର ମାଳ ,,
କି ଶୋଭା ପାଉଛି ମଞ୍ଚ ମଣ୍ଡଳ ,,
ପର୍ବତ ପଦ୍ମରେ ଭୁଲ ନ ଥିଲ ,,
ଡେପୋଟି ସାହେବ ଦେଖି ଭୁଲିଲ ,,

Digitized by srujanika@gmail.com

କୃଷ୍ଣ ଯେତେବେଳେ ହସ୍ତିନା ଗଲେ ହୋ ବାପା
ବିଦୁର ଘରେ ସେ ଭୋଜନ କଲେ ,,
ତୁମେ ସେହିପରି ମୋହର ପାଇଁ ,,
ଚଣ୍ଡାଳ ଦୁଆରେ ଗ୍ରାସିଲ ଯାଇ ,,
ତେନ୍ତୁଳ ପତରେ ବଗଡ଼ା ଭାତ ,,
କଳସିର ଶାଗ ଡାଲି କୋଳଥ ,,
ଏହି ମାନହୀନ ଦ୍ରବ୍ୟକୁ ଖାଇ ,,
ଅସୁର ମୁହଁରେ ଝାସୁଚ ନେଇ ,,

ଖୁଡ଼ୀଙ୍କୁ ବାହୁନ—

ରାମଚନ୍ଦ୍ର ଦେଶରେ ଷୋଳପୁର ଉଆସରେ ଛଳି ବାଡ଼
ଧରି ମୋର ଜନମ ଲୋ ଖୁଡ଼ୀ
ଏବେ ଅତଳ ଜଳରେ କାଟିବ ଦିନ ଲୋ ଖୁଡ଼ୀ ।
ପୁରୁଷ୍ଣ ଅଞ୍ଚଳ ଚନ୍ଦନ ଅର୍ଗଳ ମକରବେଢ଼ାରେ
ମୋର ଜନମ ଲୋ ଖୁଡ଼ୀ
ଏବେ ଗହନ ବନରେ ପର କୁଡ଼ିଆରେ କାଟିବ ଦିନ ଲୋ ଖୁଡ଼ୀ ।
ସତେ ଆଉ ତୁମ ମୁଖ ଦେଖିବି ଲୋ ଖୁଡ଼ୀ ।
ସୀତା ଠାକୁରାଣୀ ଅଯୋଧ୍ୟାର ରାଣୀ, ରାମଙ୍କ ଘରଣୀ
ସେ ତ ଯେଉଁପରି, ଅଶୋକ ବନରେ, ଅସୁରୀ ମେଳରେ
ଅଯୋଧ୍ୟା, ମିଥିଳା ଭାଳିବସିଲ ଲୋ ଖୁଡ଼ୀ
ମୁଁ ତ ସେହିପରି ତୁମମାନଙ୍କର କଥା ଭାଳି ବସିବି ଲୋ ଖୁଡ଼ୀ ।

ମାଉସୀକି ବାହୁନ—

ତୁମ ହସ ହସ ମୁଖକମଳ ଲୋ ମାଉସୀ
ଏବେ ସିନା ସବୁ ହେବ ବିଫଳ ଲୋ ମାଉସୀ
ତୁମ ପାଖେ ଯଦି ଆସିବି ସଇ ଲୋ ମାଉସୀ
ସରଗ ଭୁବନ ପାରିଜାତ ବନ ପ୍ରାୟେ ଲାଗଇ ଲୋ ମାଉସୀ

Digitized by srujanika@gmail.com

ଭଣୋଇଙ୍କ ବାହୁନ—

ବଦେଶରେ ରହି କ୍ଷୀର ସର ଖାଇ ମନ ବଢ଼ିଲ ହୋ ନନା
ଭଉଣୀ ବୋଲି କି ମନେ ଭାବିଲ ହୋ ନନା
ଯେଉଁଠାରେ ସ୍ନେହ ଶ୍ରଦ୍ଧା ପାଇଲ ହୋ ନନା
ସେହିଠାରେ ବନ୍ଧୁ ବାନ୍ଧ ଆସିଲ ହୋ ନନା
ଶ୍ରୀକୃଷ୍ଣ ଅଟନ୍ତି କପଟୀ ଗୁରୁ ହୋ ନନା
ତୁମ ତାଙ୍କଠାରୁ ବଳି ପଡ଼ିଲ ହୋ ନନା
ତୁମ ମନେ ଯଦି ଥିଲା କପଟ ହୋ ନନା
କମ୍ପା ବାନ୍ଧୁଥିଲ ମୋ ସ୍ନେହତଟ ହୋ ନନା

ବଡ଼ ଭଉଣୀଙ୍କ ବାହୁନ—

ଜାଣିଥିଲ ବୋଲି ଗ୍ରହ ଗୁଣକୁ ଲୋ ଅପା
ମୁଁ ତ ଜାଣି ନ ପାରିଲି ନିଜ କର୍ମକୁ ,,
ଯେବେ ଜାଣିଥାନ୍ତି ନିଜ କର୍ମକୁ ,,
ଇନ୍ଦ୍ର ଖଟିଥାନ୍ତେ ପାଦ ତଳକୁ ,,
ଚନ୍ଦନ ବନରେ ପୁଷ୍ପ ଫୁଟିବ ,,
ବନ ମାଳତୀ କି ଚମ୍ପା ହୋଇବ ? ,,
ପଶ୍ଚିମରୁ ସୂର୍ଯ୍ୟ ଉଦୟ ହେବ ,,
ତେବେ ତୋର ଡାକ କର୍ଣ୍ଣେ ଶୁଭିବ ,,
ପୁତ୍ରର ମରଣ ଯେବେ ଦେଖିଲା ,,
ଯେସନ୍ତେ ଉଗ୍ରସେନ ଆନନ୍ଦ ହେଲା ,,
ସେହି ପରକାରେ ମୋର ମରଣ ,,
ଅତି ଆନନ୍ଦିତ ହୋଇବ ମନ ,,

ଦଦାଙ୍କୁ ବାହୁନ—

ଦୁର୍ଯ୍ୟୋଧନ ଯେଉଁପରି ଗର୍ବ କରିଥିଲା
ଆକାଶମଣ୍ଡଳ ଜାଣିବା ପାଇଁ ହୋ ଦଦା

Digitized by srujanika@gmail.com

ତୁମେ ସେହିପରି ଗର୍ବ କରିଥିଲ
ଭାରତ ମଣ୍ଡଳ ଜିଣିବା ପାଇଁ ହୋ ଦାଦା
ଭାରତ ମଣ୍ଡଳ ବ୍ୟର୍ଥ ହେଲା ,,
ଚଣ୍ଡାଳ ଦୁଆରେ ଯାଇ ବସିଲ ,,
ଲେମ୍ବେଇ ଅଣି କୋଣ ତୁମ୍ଭଙ୍କୁ ଜଣା ,,
ଚଣ୍ଡାଳ ଘର କି ହେଲା ଅଜଣା ,,
ଚୂନ ଗୋଳି ପାଣି ଠକଦେଲା ଆଣି ,,
ଖୀର ସର ବୋଲି କଣି ଭଖିଲ ,,
ଚିନ ଦେଇ ଇଡ଼ି ବ୍ୟର୍ଥ କଉଡ଼ି
ଲଙ୍କାରେ କି ମଥା ପୋତି ବସିଲ ,,
ଯେଉଁ ଡାଳ ପାଣି ଛୁଇଁଲେ ଛୁଆଁ ,,
ସେହି ଡାଳ ପାଣି ଶ୍ରୀଅଙ୍ଗେ ଥୁଆ ,,
ଯେଉଁ ତୁଠ ପାଣି ଲୁଣି ଜହର ,,
ସେହି ତୁଠ ପାଣି କଲ ଆହାର ,,

ଭରତଙ୍କ ବାହୁନ—

ନନ୍ଦ ବାରବାଙ୍କେ ଅତଡ଼ ବାଙ୍କେ ହୋ ନନା
ମତେ ତମେ ଦେଖି ଆସିବ ଟିକେ ,,
ଲେଡ଼ା ନାହିଁ ଖଜା ମିଠାଇ ଭରି ,,
ମୋ' ପାଇଁ ଥାଉ ତୁଣ୍ଡ ମଧୁରି ,,
ସତେ ଆଉ ମୁହିଁ ମନେ ପଡ଼ିବ ? ,,
ଅଯୋଧ୍ୟା ନଗର ସତେ ଫେରିବ ,,
ତୁମ କୁଟ ପଦ ଜାଣି ଥାଆନ୍ତି ,,
ଆଉ ଏ ଜୀବନ ରଖି ନ ଥାନ୍ତି ,,
ନଦଙ୍ଗା ମଞ୍ଜି ସହିତ କୋଶଲା ମଞ୍ଜି କି ମିଶାଇ ଦେଲ ,,
ଚମ୍ପାଫୁଲ ସଙ୍ଗେ କରଞ୍ଜ ଫୁଲକୁ କଲ ସମାନ ,,
ଯଦି ସେ ଠାବରେ ପାଦ ପଡ଼ିବ ,,
ଅପବିତ୍ର ପୃଥ୍ୱୀ ପବିତ୍ର ହେବ ,,

Digitized by srujanika@gmail.com

ନନା ନନା ବୋଲି ମନ ଅସ୍ଥିର ହୋ ନନା
ଗୃହେଁ ବସିଥିବ ତୁମ ଦର୍ଶନ ,,
ତେବେ ଯାଇ ପିଣ୍ଡେ ପଶିବ ପ୍ରାଣ ,,
ପାଶରୁ ଉଡ଼ିଲ ବୋଲି ମନରୁ ପାସୋର ନ ଦବ ,,
ଖାଲି ହାତେ ଯାଇ ଛୁଡ଼ା ହୋଇବ ,,
ନନା ନନା ବୋଲି କେତେ ଯେ ଅଳି ,,
ସବୁ ଆଜଠାରୁ ଗଲା ମଉଳି ,,
ପାଶେ ଥିଲି ବୋଲି ଦେଖୁଣ ଥିଲ ,,
ଏବେ ଯାଇ ମୁହିଁ ଦୂରେ ରହିବ ,,
ମରଗଲେ ମୁହିଁ କାହୁଁ ଜାଣିବ ? ,,
ମଲା ଉନଦନେ ତୁମେ ଶୁଣିବ ,,
ମୋ ପାଇଁ ଟିକଏ କାନ୍ଦବ ନାଇଁ ,,

ବୋଉ ପାଖେ କାନ୍ଦବା—

ତରଣ ଶଯ୍ୟାରେ ତୁ ଶୋଉଥିଲୁ ଲୋ ବୋଉ
ସ୍ତନ ଭଙ୍ଗି କ୍ଷୀର ତୁ ଖୋଉଥିଲୁ ,,
ଯଦ ଜର ରୋଗ କରଇ ମୋତେ ,,
ନ ରହଇ ଲୁହ ତୋହର ନେତ୍ରେ ,,
ରାତ୍ରିରକୁ ପୁଳସି ଜଗିଲୁ ପର ,,
ଜଗି ଥାଉ ମୋତେ ଦବା ଶବ୍ଦରେ ,,
ଗ୍ରୀଷମ ତାପକୁ ଘୁଞ୍ଚୁ ନ ଥିଲୁ ,,
ଅଗ୍ନି ପ୍ରତାପକୁ ଘୁଡ଼ ଦେଉଛୁ ,,
ଶୋଷ କଲେ କିଏ ପାଣି ପିଇବ ,,
ଭୋକ କଲେ ମୁହିଁ ମାଡ଼ ଶୋଇବ ,,
ମନେ ଉଠି ମୋର ମନ ବେଦନା ,,
ମନର ଭିତରେ ମରିବ ସିନା ,,
କାହା ଆଗେ ଦୁଃଖ ଯାଇ କହିବ ,,
କେଉଁ ଦୋଷ ଅବା କଲି ତୋହର ,,
ଗର୍ଭେ ଧରି କଲୁ ଏଷ୍ଟ ବଡ଼ର ,,

Digitized by srujanika@gmail.com

ଫୁଲ ଝାଉଁଳିଲେ ମାଳୀକି ଚିନ୍ତା ଲୋ ବୋଉ
ମୁହଁ ଶୁଖିଗଲେ ତୋହର ଚିନ୍ତା ,,
ଫୁଲ ଖସିଗଲେ ମାଳୀ ଅଚିନ୍ତା ,,
ମୋତେ ବଡ଼ା କରି ହେବୁ ଅଚିନ୍ତା ,,
ତୋହର ମୁଁ ଯାହା ଦୋଷ କରିଚି ,,
ମୋ ଦୋଷକୁ ସବୁ ଦେବୁ ମୁରୁଚ୍ଛି ,,
ହାତରେ ତ ଭାତ ମୁଁ ଖାଇନାହିଁ ,,
କପରି ଚଳିବ ସେ ଘରେ ମୁହିଁ ? ,,
ଜନ୍ମେ ଜନ୍ମେ ମିଳୁ ତୋ ପରି ମାତା ,,
ନ ମିଳୁ ତତେ ମୋ ପରି ଦୁହିତା ,,

ବାପାଙ୍କ ପାଦ ଧରି କାନ୍ଦିବା—

ଦାଣ୍ଡରୁ ଆସିଲେ ମୋ ନାମ ଧରି ହେ ବାପା
ଡାକିବ ଭାତ ଆଣ ବୋଲି କରି ,,
ପୁଷି କଷ୍ଟକରୁ ଭଲ ଦରବ ,,
କାହା ପାଇଁ ଆଉ କଣା ହୋଇବ ? ,,
ରକ୍ଷକ ଯେବେ ଭକ୍ଷକ ହୋଇବ ,,
ନିରେଖ ପ୍ରାଣୀ କାହାକୁ କହିବ ? ,,
ଦୋଷ କରିଥିଲି ଅଜ୍ଞାନ ବେଳେ ,,
ସେ ଦାଉ ସାଧିଲ ଏତକ ବେଳେ ,,
ଆମ୍ବ ପେନ୍ଥି ପେନ୍ଥି ଗଛକୁ ଭରି ,,
ମୁଁ ତ ହୋଇଥିଲି ତୁମକୁ ଭରି ,,
ଏଥର ଅଚିନ୍ତା ଭାତ ଖାଇବ ,,
ଏଥର ଅଚିନ୍ତା ନିଦ ଶୋଇବ ,,
ଗୋପପୁର ଆଜ ଶାନ୍ତ ହୋଇବ ,,
ଭୋଜନ ଅମୃତ ପରି ଲଗିବ ,,
ଗୋପପୁରରେ ଗେହ୍ଲା ମୁଁ ହୋଇଥିଲି ,,
ଯମ ଜଉଶାଳେ ପଶିବ ବୋଲି ,,

Digitized by srujanika@gmail.com

ଯେଉଁ ପୁରେ ଘୁଡ଼ ଆସିବ ନେଇ ହେ ବାପା
ଦୟାପଦ ଗୋଟି ସେ ପୁରେ ନାହିଁ ”
କପଟ ଚଳିବ ସେଠାରେ ମୁହିଁ ”

ନୂଆ ବୋଉଙ୍କୁ ବାହୁନା—

ତୁମେ ନୂଆବୋଉ ନାରୀ ଜନମ
କପଟ ହୋଇଲ ନିଷ୍ଠୁର ମନ ? ହେ ନୂଆ ବୋଉ
ବାଇଙ୍କ କାନରେ କି ମନ୍ତ୍ର ଦେଲ ?
ଘରୁ ଛଡ଼ିବାକୁ ଉଛନ୍ନ ହେଲ ହେ ନୂଆ ବୋଉ
ଆଜ ପୋଡ଼ ପୋଡ଼ ଯାଉଚି ମୁହିଁ ହେ ନୂଆ ବୋଉ
ମୋର ଲଗି ଦୟା କଲ ନାହିଁ ହେ ନୂଆ ବୋଉ
ବୋଉଠାରେ ମୋର ସ୍ନେହ ରଖିବ ହେ ନୂଆ ବୋଉ
ଦଣ୍ଡେ ନମିଷେ ତା ପାଶେ ବସିବ ହେ ନୂଆ ବୋଉ
ବୋଉ ଦେଖି କରି ତୁମର ମୁଖ ହେ ନୂଆ ବୋଉ
ପାସୋରିବ ମୋର ମରିବା ଦୁଖ ହେ ନୂଆ ବୋଉ
ଆଉ କିଛିଦିନ ରହି ଥାଆନ୍ତି ହେ ନୂଆ ବୋଉ
ଅପୂର୍ବ ନିଧିକି ଧରିଥାଆନ୍ତି ହେ ନୂଆ ବୋଉ
ମନର କାମନା ପୂରିଥାଆନ୍ତା ହେ ନୂଆ ବୋଉ
ତେବେ ମୋର ଦୁଃଖ ହୋଇ ନ ଥାନ୍ତା ହେ ନୂଆ ବୋଉ

ମାମୁଁଙ୍କ ପାଦଧରି—

କୃଷ୍ଣ ଜନମିଲେ କଂସ ବିନାଶ
ଏ ଦଇବ ବାଣୀ ହେଲା ପ୍ରକାଶ ହେ ମାମୁଁ
ତାହା ଶୁଣି କଂସ ହୋଇଲା ରୋଷ ,,
ଦେବକୀ ଛ'ପୁଅ କରିଲା ନାଶ ,,
ବିଜୁଳି କନ୍ୟାକୁ କଂସ ଯେପରି ,,
ଦେବକୀ କୋଳରୁ ଆଣିଲା ଭିଡ଼ି ,,
ଶିଳାପରେ ଦେଇଥିଲା କଚାଡ଼ି ,,

Digitized by srujanika@gmail.com

ମୋ ବୋଉ କୋଳରୁ ମୋତେ ସେପରି    ହେ ମାମୁଁ
ନିଷ୍ଠୁର ମନରେ ନିଅ ଉଠାଇ    ,,
ଯମ କାରାଗାରେ ଦେବ କଉଡ଼ି    ,,
ଏକୋଇର ବଳା ବଶିକେସନ    ,,
ଅଭିମନ୍ୟୁ ସୁଭଦ୍ରାଙ୍କ ନନ୍ଦନ    ,,
ତାଙ୍କ ମାତୁଳ ଶ୍ରୀକୃଷ୍ଣ ଯେପରି    ,,
ଅଭିମନ୍ୟୁକୁ ଦେଇଥିଲେ ମାରି    ,,
ଅର୍ଜ୍ଜୁନକୁ ନେଲେ ସଙ୍ଗରେ ଧରି    ,,
ତୁମେ ସେହିପରି କପଟ କଲ    ,,
ଘରୁ ତଡ଼ିଦେଇ ନିଶ୍ଚିନ୍ତ ହେଲ    ,,

ସାଙ୍ଗସାଥୀମାନଙ୍କୁ ବାହୁନା —

ରଜ ତିନି ଦିନ ଟିବ ଜାଗର    ସାଙ୍ଗ ଭଉଣୀ
ହସିଖେଳ ଦିନ ଯିବ ତୁମର    ,,
କାନ୍ଦିଲେ ଦିନ ନ ସରିବ ମୋର    ,,
ଖୁଦୁରୁକୁଣୀ ଉପବାସ ଦିନ    ,,
ମୋ ପାଇଁ ବାଲୁଙ୍କା କରିବ ଦାନ    ,,
ତୁମେ ଦଶ ଝିଅ ରହିଛ ପୂରି    ,,
ଗୋଟିଏ ଝିଅ ମୁଁ ଯାଉଚି ମରି    ,,
ବୋଉ ଦେଖିକରି ତୁମରି ମୁଖ    ,,
ପାସୋରିବ ମୋର ମରିବା ଦୁଃଖ    ,,
ବୋଉକୁ ମୋହର ପଚାରୁଥିବ    ,,
ଦଣ୍ଡେ ନିମିଷେ ତା ପାଶେ ରହିବ    ,,

ସାନବାପାଙ୍କୁ ବାହୁନା —

ସଞ୍ଜ ମଲ୍ଲୀ ଫୁଲ ଦୂରେ ଫିଙ୍ଗିଲ
ପୋକସୁଙ୍ଘା ବଣେ ମତେ ଥୋଇଲ    ହେ ସାନ ବାପା
ଯାହାକୁ ତରଣ ଛୁଇଁଲେ ଛୁଆଁ    ,,

Digitized by srujanika@gmail.com

ତାଙ୍କ ପାଦତଳେ ପହରେ ଠିଆ ହେ ସାନବାପା
କାଠକୁ ଜୁଣ ଯେ ବକଣ୍ଡ ଲୁଣ ,,
ସେ କାହୁଁ ଜାଣିବେ ମର୍ଯ୍ୟାଦା ଗୁଣ ? ,,
ସଡ଼କଡଳଆ ଛପଗ୍ର ପିଣ୍ଡା ,,
ସେ କାହୁଁ ଜାଣିବେ ମର୍ଯ୍ୟାଦା କଥା ? ,,
ମୁଁ ହେବ ଘୋଡ଼ା ସେ ହେବେ ସିପାହି ,,
ମୋ ଧୈର୍ଯ୍ୟ ଦନ୍ତ ରଖିବେ ନାହିଁ । ,,

ଭାଇକ ବାହୁନ —

ଦେବକୀକ କଂସ ଯେପରି ନେଇ ହେ ଭାଇ
ବନ୍ଦୀଘରେ ନେଇଥିଲା ପକାଇ ହେ ଭାଇ
ସେହିପରି ମୋତେ ସଙ୍ଗରେ ନେବ ହେ ଭାଇ
ଯମ ଯନ୍ତ୍ରଣାଲେ ଛାଡ଼ି ଆସିବ ? ହେ ଭାଇ
ମନ କଥା ଆଉ କଏ ଜାଣିବ ? ହେ ଭାଇ
ଭଲ ଭଲ ଶାଢ଼ୀ କଏ ଆଣିବ ହେ ଭାଇ
ବାଢ଼ ହୋଇ ଯନ୍ଦ ଖେତ ଖାଇବ ହେ ଭାଇ
ସେ କଥାକୁ ଆଉ କଏ ସହିବ ? ହେ ଭାଇ
ଗୋପ ଦାଣ୍ଡରେ କ ମାଲୁଣୀ ଥିଲା ହେ ଭାଇ
ପାନ ଖଣ୍ଡକରେ କ ଚୂନ ଦେଲା ? ହେ ଭାଇ
ପଢ଼ାଇଲା ମନଛଡ଼ା ପତର ହେ ଭାଇ
ଦୟା ମାୟା ସବୁ କଲା ଅନ୍ତର ହେ ଭାଇ
ଯୋଉ ହୃଦୟରୁ ଦୟା ଜନମ ହେ ଭାଇ
ମୋ କର୍ମକୁ ଆଜ ହେଲା ପାଷାଣ ହେ ଭାଇ

ବୋଉକୁ ବାହୁନ —

ଅଗ୍ନିର ଦଗ୍‌ଧନ ଚୁଲି ଭିତରେ ଲୋ ବୋଉ
ମୋର ଦଗ୍‌ଧନ ତ କଂସେଇ ଘରେ ,,
ଅଗ୍ନି ମଣ୍ଡଳଲେ ହେବ ପାଉଁଶ ,,

Digitized by srujanika@gmail.com

ମୁହିଁ ମଉଳାଚଲ କିଏ ଜାଣିବ — ଲୋ ବୋଉ
ସରଗରେ ତାରା କରୁଣି ପଡ଼େ — ”
ତୋର ମନ ଡାକ ଉଚ୍ଛୁଳି ପଡ଼େ — ”
ଲକ୍ଷେ ତାରା ଥିଲେ ଚନ୍ଦ୍ରମା ନ ଥିଲେ
ପୃଥିବୀ ଯେତେରେ ଦିଶେ ଅନ୍ଧାର — ”
ଲକ୍ଷେ ଲୋକ ଥିଲେ ତୋ ଚନ୍ଦ୍ରମା ବଦନ — ”
ନ ଦେଖି ପୃଥିବୀ ସେପରି ଦିଶେ ଅନ୍ଧାର — ”
ଗୃହଆଡ଼େ ଯେଉଁ ଦଳ ଗଡ଼ଆ — ”
କଂସେଇ ଘରକୁ ବୋହୂ ଅଡ଼ୁଆ — ”
ପିଠି କି ଜାଣିବ ପେଟ ଦରଦ — ”
ପର କି ଜାଣିବ ମୋ ମନ କଥା ? — ”
ବନସ୍ତ ଭିତରୁ ଓସ୍ତ ବାହାର — ”
ସଂସାର ଝିଅରୁ ମୁହିଁ ବାହାର — ”

ବାପାଙ୍କୁ ବାହୁନ —

ସମୁଦ୍ର ସାଙ୍ଗରେ ଶଙ୍ଖ ସଙ୍ଗାତ — ହେ ବାପା
ଗୁଲ ଗେଣ୍ଡା ଦେଖି ବସିଲ ମିତ — ହେ ବାପା
ଗୁଣ୍ଡି ଚୁଡ଼ାଘଷା କର୍ପୂରମିଶା — ହେ ବାପା
ତାକୁ ଖାଇକରି ଲାଗିଲା ନିଶା — ହେ ବାପା
ତେମେ ଜାଣିବାକୁ କାନରେ କଲମଖୋସି ଆସିଛ — ହେ ବାପା
ମୁଁ ତ ଜାଣିବାକୁ ଗହ୍ୱର ବିଲରୁ ଆସିଛି ଉଠି — ହେ ବାପା
ଯେ ଚିହ୍ନି ନାହିଁ ଧାନର ମୂଳ — ହେ ବାପା
ତା ବେକକୁ ଦେଲ ଚେଏନ ମାଳ — ହେ ବାପା
କଣ୍ଟକ କଟୁସ୍ୱ ସାହାଣଦିଆ — ହେ ବାପା
ତାଙ୍କର ବଚନ ଜହରଦିଆ — ହେ ବାପା

Digitized by srujanika@gmail.com

କୁଆ ତ ଆହାର ଗୁଡ଼ଇ ନାହିଁ — ଲୋ ବୋଉ
ବାପା ତ ଜବାବ ଭାଙ୍ଗନ୍ତି ନାହିଁ — ,,
ଲୁହା ଜନମ ତ କୁଞ୍ଚିରୁ ଶେଷ — ,,
ମୋହ୍ର ଜନମ ତ ଏକଠୁ ଶେଷ — ,,
କାନ୍ଥ ଝାଟିମାଟି ପିନ୍ଧାଯିମିଣ୍ଟ — ,,
ଦୁଆରେ ଡେଗଚ ପଥର ଖୁଣ୍ଟ — ,,
ବାଡ଼·ଗଡ଼ଆରେ ପୋଲ୍ଭ ଥାଆନ୍ତି — ,,
ତା ଘରକୁ ଝିଅ ଦେଇ ନଥାନ୍ତି

ଟେଁାକ ବୁଲୁଥିଲେ ନକୁଆ କେଳା — ହେ ଭାଇ
ତା ବେକରେ ଦେଲ ବରଣମାଳା — ,,
ଦାଣ୍ଡେ ଗଲ ତୁମେ ଦାଣ୍ଡେ ଅଇଲ — ,,
ତା ଘରର ଗୁଣ କାହୁଁ ବୁଝିଲ — ,,

ମେଘ ଘଡ଼ଘଡ଼ ଗୃଳ ଉପରେ — ଲୋ ମୋ ଭାଉଜ
ସବୁ ଅଳିଝଳି ମୋ ଉପରେ — ,,
ଗାଧୋଇଗଲେ ତ ମନେ ପଡ଼ିବ — ,,
ଭାତ କଂସା ଘେନ କିଏ ବସିବ — ,,

ତୁମେ ତ ଦେଖିବ ଦୋଳ ଯାତରା — କି ମୋ ସାଙ୍ଗମାନେ
ମୁହିଁ ତ ଦେଖିବ ଯମ ଯାତରା — ,,
ରଜ ଦୋଳିଗୀତ ମନେ ପଡ଼ଇ — ,,
ସତେ ଫେର ରଜ ଦୋଳି ଖେଳିବି — ,,

Digitized by srujanika@gmail.com

# କାନ୍ଦଣା

(କଟକ ଜିଲ୍ଲା)

ଲଗ୍ନଧର ସମୟରେ

ପାହିଲା ରଜନୀ ରାବିଲା କାକ
ସରିଗଲା ମୋର ଅଲିଅଳ ସୁଖ;
ଅଯୋଧ୍ୟାରେ ଯେଉଁ ଦନକ ସୁଖ
ନ ପାଇବ ସାର ଜୀବନଯାକ ।
ଖାଇବା ସରିଲା ମହଣ ପାନ
ବୁଲିବା ସରିଲା ଶ୍ରୀ ବୃନ୍ଦାବନ
ପିନ୍ଧିବା ସରିଲା ସରୁ ବସନ
ବସିବା ସରିଲା ଚେକା ଆସନ ।
ଶୋଇକି ଉଠିଲେ କୁମ୍ଭରେ ପାଣି
ଯାକୁ ପର ଖଞ୍ଜେ ମୋ ମାତା ରାଣୀ
ଆଉ କି ଖଞ୍ଜିବ ପର ମାଲୁଣୀ ?
ଖଞ୍ଜିଲେ ଖଞ୍ଜିବେ ଷଣ ଗୋଟାଇ
ପଦ ତଳେ କେଶ ଦେବେ ଲୋଟାଇ
ମୁଁ ବୁଲୁଥିଲି ଅଳିଅଳ ହୋଇ
ଅଳିଅଳ ଗୁଣ ମୋ ରଖିଲ ନାହିଁ ।

ମଙ୍ଗୁଳେଇ ହେବା ସମୟରେ

ଶଙ୍ଖ ହୁଳହୁଳି ବଜେଇ ଦେଇ
ତୁମ ପାଖେ କିଏ କହିଲା ଯାଇ ?

Digitized by srujanika@gmail.com

ସବୁ ମାଆମାନେ ଆସିଲେ ଧାଇଁ
ହଳଦୀ ଲେପନ କରିବା ପାଇଁ ।
ଗୁଡ଼ ଗୁଡ଼ ମୋର କେଶ ବାଳକୁ
ଟାକଲେଣି ସଖୀ ଯିବ ଖେଳକୁ
ଡାକ ଡାକ ସଖୀ ଖେଳକୁ ଗଲେ
ସୀତା ସାତପୁଅ ଗୁନ୍ଦୁଆ ଦେଲେ
ରୂପା ବଟା ସଙ୍ଗେ ପାନ ବରଣୀ
ଆଜକାଲ ଡାକ ଗଙ୍ଗା ବାରେଣୀ
ଗଙ୍ଗା ବାର କୋଶ ବାରଣୀ କୋଶେ
ଆଉ କୋଶେ ଗଲେ କଣ୍ଟକା ଦୁଶେ ।
କଣ୍ଟକାରେ ଫୁଟେ ରକତ କଇଁ
ଫିଟିଗଲେ କେଶ ମୁଁ ବାନ୍ଧେନାହିଁ ।
କେଶ ଫିଟିଗଲେ ଧୂଳିରେ ଲୋଟେ
ତାହା ଦେଖି ମାତା ଉଛାଟେ ଆସେ ।
ନଦୃମ ଦେଇ ତ କହୁଛି ମୁହିଁ
ମୋ ଦେହେ ହଳଦୀ ଛୁଇଁବ ନାଇଁ ।
ହଳଦୀ ମୋ ଦେହେ ଛୁଇଁ କି ଗଲ
ଲଙ୍କାରେ ତହଲ ପକାଇ ଦେଲ ।

ବାହାଘର ବେଳେ

ଦାନ୍ତକାଠି ଦାନ୍ତ ଛଡ଼ଣ ବେଳେ, — ମୋ ମାଆମାନେ
ଆଜ ନ ଡାକଲ ଭୋକରବେଳେ — ମୋ ମାଆମାନେ
ଭୋକ କଲେ ଭାତ ନ ଦେଲେ ଖୋଇ — ମୋ ମାଆମାନେ
ଶୋଷ କଲେ ପାଣି ନ ଦେଲେ ପେଇ — ମୋ ମାଆମାନେ
ତୁମେ ତ ଆନନ୍ଦେ ଯାଉଛ ଭାସି — ମୋ ମାଆମାନେ
ମୋ ପିଣ୍ଡ ହତାଶ ହେଉଛୁ ବସି — ମୋ ମାଆମାନେ
ଜଳନ୍ତା ଅଗ୍ନିକ ଜଅନ୍ତା ମାଛ — ମୋ ମାଆମାନେ
ସେହିପରି ମୋତେ ଦେଉଛ ଝାସ — ମୋ ମାଆମାନେ

Digitized by srujanika@gmail.com

ଯାଉଁ ଯାଉଁ ବନ ବୁଡ଼ିଯାଉଛି — ମୋ ମାଆମାନେ
ଚହ୍ଲୁଁ ଚହ୍ଲୁଁ ପ୍ରାଣ ଗୁଡ଼ିଯାଉଛି — ମୋ ମାଆମାନେ
କୃପାଳୁ ଶବର ମୋ ଦାଦା ଥିଲେ — ମୋ ମାଆମାନେ
ଚଣ୍ଡାଳ ହାତରେ ସମର୍ପି ଦେଲେ — ମୋ ମାଆମାନେ
ସେ ଯିଉଁ ଚଣ୍ଡାଳ ମଉନମୁହାଁ। — ମୋ ମାଆମାନେ
କଥା ତ କହିବ କରତ ଲୁହା! — ମୋ ମାଆମାନେ
କରତ କାଟିଲେ ଗଣ୍ଡି ଝଡ଼ିବ — ମୋ ମାଆମାନେ
କଣ୍ଟୁ ବଚନରେ ତନୁ ଝଡ଼ିବ — ମୋ ମାଆମାନେ
ଲଙ୍କାରୁ ଅସୁର ଆସିବେ ଧାଇଁ — ମୋ ମାଆମାନେ
ନନା ସଙ୍ଗେ ଯୁଦ୍ଧ କରିବା ପାଇଁ — ମୋ ମାଆମାନେ
ନନା ସଙ୍ଗେ ଯୁଦ୍ଧ କରି ସେ ନେବେ — ମମା ମାଆମାନେ
ଅଶୋକ ବନରେ ମୋତେ ରଖିବେ — ମୋ ମାଆମାନେ

ହାତଗଣ୍ଠି ପଡ଼ିବା ସମୟରେ

ପୁଷ୍ପ ତୋଳୁଥିଲି ମୁଁ ହରଷରେ
ଏବେ ମୁଁ ପଡ଼ିଲି ବନ୍ଧନ ଘରେ*
ଅଜଣାରେ ହସ୍ତ ଦେଲି ବଢ଼ାଇ
କୋଉ ଲକ୍ଷ୍ମୀଛଡ଼ା ହାତ ଧଇଲା
ରୂପାଥାଳି ମୁହଁ କଳା ପଡ଼ିଲା
ସୁନାଗର ଦେହ ମୋ ଚୂନା ହେଲା
ସରଗଲା ମୋର ଗେଲବସର
କଂସବାସେ ସବୁ ହେବ ଅସାର ।

ନାନ୍ଦୀମୁଖୀ

ନାନ୍ଦୀମୁଖୀ ଶ୍ରାଦ୍ଧ ଘରେ ପଡ଼ୁଛି
ସେ ପିଣ୍ଡ ଦବାକୁ ବାପା ଡାକୁଚି

* ପାଠାନ୍ତର— ତୋଳୁ ତୋଳୁ ପଡ଼ିଛୁ ବନ୍ଧନ ଘରେ ।

Digitized by srujanika@gmail.com

ସେ ପିଣ୍ଡ ପଡ଼ିବ ସାତ ପତ୍ରର
ରହିବ ପରା ସେ ବାପ ମାଆର
ମୁଁ ଯେତେବେଳେ ଆସିବି ଫେରି
ସେ ପିଣ୍ଡ ଗୃହିଁଲେ ନୁହେଁ କାହାରି ।

ନାନ୍ଦୀମୁଖୀ ଶ୍ରାଦ୍ଧ ଦେଇ ଆସିଲା ପରେ

ନୂଆ ଆଡ଼ିକାରେ ମର୍ମୁରି ଜାଇ
ନାନ୍ଦୀମୁଖୀ ଶ୍ରାଦ୍ଧ ଆସିଲି ଦେଇ
ନାନ୍ଦୀମୁଖୀ ଶ୍ରାଦ୍ଧ ଦେଇ ଆସିଲି
କୁଳ ଉଦ୍ଧାରଣ କରି ଆସିଲି
ପୁଅ ଦେଉଛନ୍ତି ମଲାରେ ପିଣ୍ଡ
ମୁଁ ଦେଇ ଆସିଲି ଜିଅନ୍ତା ପିଣ୍ଡ
ଦୁହିତା ଜନମ ମୁଁ ଇ ପାଇଛି
ଏକାଥରେ ପିଣ୍ଡ ଦେଇ ଯାଉଛି ।

କନକାଞ୍ଜଳି

ମୋ ବାପା ଭଣ୍ଡାରେ କି ଦ୍ରବ୍ୟ ନାହିଁ
ଲକ୍ଷେ ବ୍ରାହ୍ମଣଙ୍କୁ ମୁଁ ଭିକ୍ଷା ଦେଇ
ପାପ ନୟନରେ ଘୋଟିଲି ପାପ
ମୋ ମାତା ଦୁଶିଲି ବ୍ରାହ୍ମଣୀ ରୂପ
କପଟରେ ମାତା କାନି ପାତିଲା
ଭିକ୍ଷା ଦିଅ ବୋଲି ଅରେ କହିଲା
ମାତା ହୋଇ ନେଲା ମୋ ହାତୁ ଭିକ୍ଷା
ଆଜି କିଏ ମତେ କରିବ ରକ୍ଷା ?

ନଖକଟା ସମୟରେ

ପୁଅ ହୋଇଥିଲେ କି କାଟୁଛି ନଖ
ମୋ ପାଇଁ ବାଜିବ ମଙ୍ଗଳ ଶଙ୍ଖ

Digitized by srujanika@gmail.com

ତାହଙ୍କ ମୁଣ୍ଡରେ ପାଟର ଜରି
ଏଇ ବେଳରେ ମୁଁ ପାଆନ୍ତି ମରି
ମୋ ମାତା କାନ୍ଦନ୍ତା ମୋ ନାମ ଧରି
ପୁଣି ଜନ୍ମ ହୋଇ ଆସନ୍ତି ଫେରି
ମୋ ପାଇଁ ବାଜନ୍ତା ମଙ୍ଗଳ ତୁରି
ସେ ଜନ୍ମ ବିଧାତା ନ ଦେଲା ନାହିଁ
ଏତେ ହଟହଟା କଲା କିମ୍ପାଇ ?

ବାପ ଘରକୁ ପହିଲି ଫେରିବାରେ

ସର୍ପଫେଣା ଠାରୁ ମାଚ ଜଞ୍ଜାଳରୁ,
ମାଲ୍ୟାଣୀ ପୁରରୁ ଆସିଲି ଫେରି
ତୁମ ଦରଶନ କରିବି ବୋଲି
ସବାରି କବାଟ ଫିଟାଇ ଦିଅ,
ବସ୍ତ୍ର ଫେଡ଼ି ମୁଖ ଦେଖାଇ ଦିଅ
ହସ୍ତ ପତାଇଣ କୋଳକୁ ନିଅ
ସ୍ତନ ଭାଙ୍ଗି କ୍ଷୀର ମୋ ମୁଖେ ଦିଅ ।
ଯେତେବେଳେ ଥାଏ ମୁଁ କଂସ ଘରେ
କାଟି ଦେଲେ ରକ୍ତ ନ ପଡ଼େ ତଳେ
କ୍ଷୀର ସେରେ ରକ୍ତ ସେରେ କରିବି
କି କ୍ଷୁଦ୍ର ଲୋକକୁ ହସ୍ତ ଯୋଡ଼ିବି
ଯେଉଁ ଦିନ ହସ୍ତ ଯୋଡ଼ି ନଥିବି
ସେ ଦିନରେ ବହୁ ଶାସ୍ତି ଭୋଗିବି
ଅଶୋକ ବନରେ ସୀତାପ୍ରାୟ ରହି
ମୁଖ ଟେକ କଥା କୁହନ୍ତି ନାହିଁ
ମୁଖ ଟେକ ଯଦି ପଦେ କହିବି
କାଳହୁଡ଼ ଝିଅ ଖୁଣ୍ଟା ପାଇବି
ଏଇ ଗୋପପୁରେ ମୃତ୍ୟୁ ଘଟନ୍ତା
ମୋ ପିଣ୍ଡ କାରଣ ଭାଇ କରନ୍ତା ।

Digitized by srujanika@gmail.com

କଲକଣ୍ଠ ଯେଉଁ ରଙ୍ଗ ଅଲତା
କାକ ହାତରେ ତ ଦେବ ବାରତା
କାକ ଉଡ଼ ଉଡ଼ ବାଟରୁ ମଲା
ସେ ବାରତା ଯାଇ ମୁଟଖ ରହିଲା ।
ସେ ବୃକ୍ଷରେ ଥିଲେ ନନ୍ଦକୁମର
ଭୃଙ୍ଗି ଖାଉଥିଲେ କୁସୁମ କ୍ଷୀର
କୁସୁମ କ୍ଷୀରରେ ବଢ଼ ପୀରତି
ବଢ଼ି ଆସୁଥିଲା ଭାବ ପୀରତି
ସେ ଭାବ ପୀରତି ନନା ଦେଖିଲେ
ସୂର୍ଯ୍ୟଙ୍କୁ ଅନାଇ ସତ୍ୟ କରିଲେ
ତିନି ଦିନ ସତ୍ୟ ଟଳିଲା ନାହିଁ
କାରାଗାରେ ବାପା ଝାସିଲେ ନେଇ ।

ବଣମଲ୍ଲୀଫୁଲ ଫୁଟି ମୋହିଲା
ଅପମାନ କରି କିଏ କହିଲା
ସଭାରେ କେ ଦେଲା କି ଅପମାନ
ସେଥିଲାଗି ତୁମେ କରିଲ ଠାଣ
ଚଣ୍ଡାଳ ହସ୍ତରେ ଦେଲ ମୋ ପ୍ରାଣ ।
ଅତି ଅଳିଅଳ ମୁଁ ତୁମ ଝିଅ
ବନସ୍ତେ ପଡ଼ିବ ମୋ ନେହ ଲୁହ
ସୂର୍ଯ୍ୟବଂଶ କୁଳେ ମୁଁ ଉତପତି
ଅନଳ ପଣକୁ ବଢ଼ ଅଶାନ୍ତ

କଦଳୀ ଗଛକୁ ଓଲଟି ବାଆ
କେତେ କଦର୍ଯ୍ୟ ମୁଁ ହେଉଛି ମାଆ
କରିଥିଲ ମୋତେ ଗଳାର ମାଳ
କମିତି ପାସୋରି କାଟିବ ବେଳ ?

Digitized by srujanika@gmail.com

ଲତା ମାଡ଼ୁଥିଲା ବୃକ୍ଷ ଆବୋର
ବଢ଼ାଇଲେ ମାତ କୋଳରେ ଧରି
ଗୋଡ଼କୁ ଅଣ୍ଡୁଆ ଗଳାକୁ ଫାଶି
ମୁଁ ହୋଇଥିଲି ଦିବସ ନିଶି
ଗଳା ଫାଶି ଗୋଡ଼ ସାଙ୍କୁଳି ଖୋଲି
ନିଶ୍ଚିନ୍ତରେ ଦିନ କାଟିବି ବୋଲି ।

## କାନ୍ଦଣା

(କଟକ)

ଉଷୁନା ଧାନକି ଗଜା ହୋଇବ
ସତେ କି ମୋ ଧନ ରଜା ହୋଇବ ?
ହେଙ୍ଗୁ ହୋଇ କଣ୍ଠରେ ପଶିବ
ସେ କି ମନ୍ଦ ମନ୍ଦ ଜଗତକୁ ବାସିବ ?
ଏ ପୁରେ କି ଶୁଭ ଶଙ୍ଖ ବାଜିବ
ସେ ନାଦ କି ମୋର କର୍ଣ୍ଣେ ଶୁଭିବ ?

ଉଛୁର ନ କର ସକାଳ ନ କର
ଶୀଘ୍ରେ ବିଦାକର ପର ପୁଅକୁ ଲୋ — ମୋ ବଉ ଖୁଡ଼ୀ
ତେଣେ ତ ତା ମାତା ଦେବନି ଗାଳି ଲୋ — ମୋ ବଉ ଖୁଡ଼ୀ
ରତ୍ତି ଉପାସିଆ ଛେନା ପଣାଖିଆ
ଶୋକରେ ସେ ତ ଗଲାଣି ମରି ଲୋ — ମୋ ବଉ ଖୁଡ଼ୀ
ସେ ଘରୁ ଆସିବା ବଡ଼ କଠିଣ — ମୋ ବଉ ଖୁଡ଼ୀ

Digitized by srujanika@gmail.com

ନାଞ୍ଜି ପିନ୍ଧିଦେଲ ବଉଳା ଗାଈ — ମୋ ବଉ ଖୁଡ଼ୀ
ବଡ଼ ରଣ ଯୁଝେ ଆସିଛୁ ମୁହିଁ — ମୋ ବଉ ଖୁଡ଼ୀ

ବାର ବାଟି ଦୁର୍ଗ ତେର ପରକାରେ — ମୋ ସୁନାଫୁଲ
ଡେଇଁ ଆଇଲୁ ଆମେ କଂସ ଦରଜାରେ — ,,

ନୂଆ ବୋଉକୁ ଧରି—

କଂସେଇ କଂସେଇ ତିନି କଂସେଇ — ଗୋ ମୋ ନୂଆବଉ
ତହିଁରେ ମୋ ବାପା ଥିଲ କଂସେଇ — ,,
ଅରଣ୍ୟରୁ ବାହାରିଲେ ବରନ୍ୟ ଆସୁର — ,,
ଲଙ୍କାରୁ ବାହାରିଲେ ରାବଣେଶ୍ୱର — ,,
ବଲଙ୍କାରୁ ବାହାରିଲେ ଯେନ ଧନୁଶର — ,,
ଆସୁଅଛୁ କଂସ ସେନା ସଜାଇ — ,,
ଖଣ୍ଡେ ବଲ ପରି ଆଲୁଅ ନାହିଁ — ,,
ଆସୁଅଛୁ କଂସ ଚଉଢ଼ୁ ଳର — ,,
ଆସି ଓହ୍ଲାଇବେ ସିଂହ ଦୁଆର — ,,
ଗୋଡ଼ ଧୋଇ ଦେବେ ଭାଇ ତାହାର — ,,
ଭାଇର ମନ ତ ରହିଲ ନାହିଁ — ଗୋ ମୋ ନୂଆବଉ
ଡାକ ଡାକ ଦେଇ ପିତା ରାଜ୍ୟକୁ — ,,
ଫେରାଇ ଦିଅନ୍ତୁ କଂସ ରାଜ୍ୟକୁ — ,,
ଡାକ ଡାକ ମୋର ଭାଇ ମନ୍ତ୍ରୀକୁ — ,,
ଫେରାଇ ଦିଅନ୍ତୁ କଂସ ଯାହାକୁ — ,,

ଭାଇଙ୍କୁ ଧରି—

ହସ୍ତିନା ବାରୁଣୀ କେଇ ସୁଜନ
ଶ୍ରୀରାମ ଭୁବନ ମୋର ଜନମ ।
ମଣି ହରାଇଲ ଶୁକ ପକ୍ଷୀକ
ଭୁଲରେ ଆପଣ କ ଧନ ଦେଖି ।

Digitized by srujanika@gmail.com

ଆକାଶ ମାର୍ଗରେ ହନୁ ଉଡ଼ୁଛି
ତାର କଣ୍ଠେ ରତ୍ନ ହାର ଝୁଲୁଛି ।
ତାର ମାଥେ ବଜ୍ର ବାଣ ପଡ଼ୁଛି ।
ରାମ ରାମ ବୋଲି ହନୁ ଭାବୁଛି
ରାମଙ୍କ ଆଜ୍ଞାରେ ହନୁ ଉଡ଼ୁଛି ।
ସିନ୍ଦୁକ ଉପରେ ଗୋଲମରିଚ,
ସିନ୍ଦୁକ ଖୋଲରେ ରାଇ ସୋରିଷ ।
ରାଇ ସୋରିଷ ତ ଖରାକୁ ଚାହିଁ
ଫୁଟେ ସୂର୍ଯ୍ୟମୁଖୀ ସୂର୍ଯ୍ୟକୁ ଚାହିଁ
ଫାଟୁଛି ମୋ ହୃଦ ତୁମକୁ ଚାହିଁ ।

ଶ୍ରେଷ୍ଠ ଭଉଣୀକୁ ଧରି

ସଂସାର ମଧ୍ୟରେ ତୋ ପରି ଜଣେ ରେ    ମୋ କେଳିପ୍ରବଣା
ଦେଖି ନ ଥିବି ମୁଁ ବେନି ନୟନେରେ    ମୋ ବାରବରନା
ତୋର ଗୁଡ଼ୁ ଗୁଡ଼ୁ ଗୁଳି ସେ ଦେଇ ଡାକରେ    ମୋ ହୃଦଚନ୍ଦନା
ତାହା ମନେ ପଡ଼ି ସଦା ହେବି ବିମୁଖରେ    ମୋ ସ୍ନେହମାଧୁରୀ
ଆଜି ଦେଖିଥାଏଁ ନେତ୍ର ପୂରାଇରେ    ମୋ ଘରମଣ୍ଡନାରେ
କାଲିକି ଝୁରିବି ଘୋର ଅରଣ୍ୟରେ ଥାଇରେ    ମୋ ଘରମଣ୍ଡନାରେ

ମାକୁ ଧରି

ସୀତା ଯେତେବେଳେ ଜନମ ହେଲେ    ଲୋ ମା
ତାର ପିତାମାତା ଚିହ୍ନି ନ ଥିଲେ    ଲୋ ମା
ଜନକ ଋଷିଙ୍କ ନନ୍ଦନୀ ହେଲେ    ଲୋ ମା
ମୁଁ ତ ଯେତେବେଳେ ଜନମ ହେଲି    ଲୋ ମା
ମୋର ପିତା ମାତା ଚିହ୍ନି ନ ଥିଲି    ଲୋ ମା
ଜନକ ଋଷିଙ୍କ ନନ୍ଦନୀ ହେଲି    ଲୋ ମା
ତାକୁ ପିତାମାତା ମୁଁ ମଣିଥିଲି    ଲୋ ମା

Digitized by srujanika@gmail.com

ଆବାଲ୍ୟ କାଳରୁ  ଅନୁଢ଼ଶାଳରୁ
ତୋତେ ପିତାମାତା ମୁଁ ମଣିଥିଲି ଲୋ ମା
ପେଟରେ ଗରଳ ତୋର ମୁଖରେ ମଧୁ ଲୋ ମା
ପେଲି ଦେଇଅଛ ମୋତେ ଅତଳ ସିନ୍ଧୁ ଲୋ ମା
ଅତଳ ସିନ୍ଧୁରେ ଗଲା ମୋ ପ୍ରାଣ ଲୋ ମା
ତୋର ସ୍ନେହ ହେଲା କେଉଁ କାରଣ ଲୋ ମା

ମାତାକୁ ଧରି

ରମ୍ଭା ବୃକ୍ଷକୁ  ଯେହ୍ନେ ବାତେ ପ୍ରବଳ ଲୋ ମା
ଲୋଟଇ ଭୂମିରେ ହୋଇ ଆକୁଳ ଲୋ ମା
ସେହ୍ନପରି ମୋର ମନ ଦୁଃଖରେ ଆକୁଳ ଲୋ ମା
କପରି ସେ  ଘୋରବନେ କାଟିବି କାଳ ଲୋ ମା
ନଶାଖା ପୁରରେ ସେ ଶାଖା ନାହିଁ ଲୋ ମା
ଏକାକିନୀ କପରି ଦୁଃଖିନୀ ହିନ ନେବ ସେହ୍ନ ଲୋ ମା

ମଙ୍ଗଳାଇ ହେବାବେଳେ

ହରିଦ୍ରା ବୋଲି ଯାକୁ ବିଷ ଲେପୁଛ ମୋ ମା ଖୁଡ଼ୀ
କଙ୍କତିକା  ଧରି କେଶ ଗୁଞ୍ଚୁଛ ମୋ ମା ଖୁଡ଼ୀ
କଜଳ ବୋଲି ମୋ ନେତ୍ର ରଞ୍ଜୁଛ ମୋ ମା ଖୁଡ଼ୀ
ସିନ୍ଦୂର ବୋଲି ଯାକୁ ମୋର ଶିର ଛେଦୁଛ ମୋ ମା ଖୁଡ଼ୀ
ପୁଷ୍ପହାର ବୋଲି ଲମ୍ବାଇ ଗଳେ ମୋ ମା ଖୁଡ଼ୀ
ସେ ପୁଣି ଦଂଶିବ ମୋର ଗଳାରେ ମୋ ମା ଖୁଡ଼ୀ

କନକ ଅଞ୍ଜଳି ସମୟରେ

ପଣତ ପ୍ରସାରି ଭିକ୍ଷା ପ୍ରାର୍ଥନା ଲୋ ବଉ
କି ଭିକ୍ଷା ଦେବି ବା ଏ ହୀନା ଦୀନା ଲୋ ବଉ
କନକ ଅଞ୍ଜଳି ମୋ କରେ ନିଅ ଲୋ ବଉ

Digitized by srujanika@gmail.com

ବଷ ଅଞ୍ଜଳ ମୋ ମୁଖରେ ଦଅ — ଲୋ ବଉ
ତାହା ଖାଇ ପ୍ରାଣ ଯାଉ ବାହାର — ଲୋ ବଉ
କୁମାରୀ ଜନମ ସାର୍ଥକ ହେଉ ମୋହର — ଲୋ ବଉ

ଅନ୍ୟାନ୍ୟ

ସେ ଯେଉଁ ମାଲୁଣୀ ଖପର ଦେଇଁ — ମୋ ମା ମାନେ
ତା ଗୃହ ଚଳନ ଆସଇ ନାହିଁ — ମୋ ମା ମାନେ
ହାଣ୍ଡିଶାଳ ଘର ଜଳାକବାଟି — ମୋ ମା ମାନେ
ଫୁଟାଇ ରଖିଚ ମୋ ଦଣ କାଠି — ମୋ ମା ମାନେ

## କାନ୍ଦଣା

( ଭେଡ଼ା, କଟକ )

ନନ୍ଦନ କାନନେ ପାରିଜାତ ବନେ ଆନନ୍ଦ ମନରେ
ବାଢ଼ୁଥିଲୁ — ଲୋ ବୋଉ
ନିର୍ଜନ ବନକୁ ଯମ ଯନ୍ତ୍ରଣାକୁ ଦେଉଛୁ ପେଲ — ଲୋ ବୋଉ
କଅଁଳ ବଚନ ମଧୁର ଡାକ ତ ସଣିଆସୁଛି — ଲୋ ବୋଉ
ଗଡ଼ ବଚନ ତ ମାଡ଼ିଆସୁଛି — ଲୋ ବୋଉ
ପବନ ଦେଲେ ତ ଜଳ ନିର୍ମଳ — ଲୋ ବୋଉ
ତୁମମାନଙ୍କର କଅଁଳ ବଚନ ମଧୁର ଡାକରେ
ମୋର ପିଣ୍ଡ ନିର୍ମଳ — ଲୋ ବୋଉ

Digitized by srujanika@gmail.com

ରାବଣ ପୁରରେ ଅଶୋକ ବନରେ ସୀତା ଯେଉଁପରି
ବସି ଭାବନ୍ତି ଲୋ ବୋଉ
ମୁଁ ତ ସେହିପରି ସେ ଯମପୁରରେ ବସି ଭାବିବି ଲୋ ବୋଉ
କଂସ ତ ଆସିଛୁ ରଥ ସଜାଡ଼ି ଲୋ ବୋଉ
ନ ନେଲେ ତ ଆଉ ଫେରିବ ନାହିଁ ଲୋ ବୋଉ
ତାଳ ପରମାଣେ ମାଡ଼ି ଆସିଲେ ଲୋ ବୋଉ
ତୁଳା ପରମାଣେ ଉଡ଼ାଇ ନେବେ ଲୋ ବୋଉ
କାଲି ଏତେବେଳ ଗୋପପୁର ଦାଣ୍ଡେ
ହାତେ ବସୁମାତା ଉଲୁସି ଥିଲି ଲୋ ବୋଉ
ଆଜି ଏତବେଳକୁ ଶୃଗାଳମାନଙ୍କ ପାଦ ପଡ଼ି
ହାତେ ବସୁମାତା ରସାତଳକୁ ଗଲି ଲୋ ବୋଉ
ଅହଲ୍ୟା କଷଣ ପାଷାଣ ତଳେ ଲୋ ବୋଉ
ଦ୍ରୌପଦୀ କଷଣ କୁରୁସଭାରେ ଲୋ ବୋଉ
ସୀତାଙ୍କ କଷଣ ଅଶୋକ ବନରେ ଅସୁରୀ ମେଳରେ ଲୋ ବୋଉ
ମୋର କଷଣ ତ ସେହିପରି ଯମପୁରରେ ଲୋ ବୋଉ
କୋଳରୁ ଅନ୍ତର କାଖରୁ ଅନ୍ତର କରୁ ନ ଥିଲୁ ଲୋ ବୋଉ
ଏବେ ମନରୁ ଅନ୍ତର କରି ରହିବୁ ଲୋ ବୋଉ

ମୁଁ ତ ଜାଣିଥିଲି ତୁମେ ଧର୍ମ ଯୁଧିଷ୍ଠିର ହେ ବାପା
ଦୁର୍ଯ୍ୟୋଧନ ପରି ଆଜି କଲ ବିଚାର ହେ ବାପା
ତୁଳାଠାରୁ ପାତଳ ପାଣିଠାରୁ ନିର୍ମଳ ହେ ବାପା
ଆଜି ତୁମେ ମୋହଠାରେ ବଡ଼ ନିଷ୍ଠୁର ହେ ବାପା
କଏ ସିନା ନଜାଣି ନଶୁଣି ବୁଡ଼ାଇ ଦିଏ ହେ ବାପା
ତୁମେ ତ ମୋତେ ଜାଣି ଶୁଣି ବୁଡ଼ାଇ ମାରିଲ ହେ ବାପା
ଉଡ଼ିଗଲି ଚଢ଼େଇର ପକ୍ଷୀ ଗଣୁ ତ ଥିଲ ହେ ବାପା
ଆଜି ତ ବସିଲା ଚଢ଼େଇ ପକ୍ଷୀ ଗଣିପାରିଲ ନାହିଁ ହେ ବାପା
ବନସ୍ତ ମଧ୍ୟରେ ଅଗ୍ନିକୁଣ୍ଡ ଖୋଳିଲ ହେ ବାପା
ଘୃତ ବଦଳେ ମୋତେ ଆହୁତି ଦେଲ ହେ ବାପା

Digitized by srujanika@gmail.com

ଆକାଶର ଚନ୍ଦ୍ର ବନର ଚକୋର ଗଗନର ତାର
ଜଳର କୁମୁଦ ଏ ଚିତ୍ତରଜଣ ଭେଟ ହୋଇବ  ଲୋ ଅପା ବାଇସ୍ତାଣୀମାନେ
ସେହିପରି ତୁମମାନଙ୍କ ସହିତ ମୋର କ'ଣ
ସତେ ଭେଟ ହୋଇବ ,,
ଗଙ୍ଗାଙ୍କୁ ତ ଭାବି ଭାବି ଭଗୀରଥ ପାଇଲେ ,,
ମୁଁ ତ ତୁମମାନଙ୍କୁ ଚିରଦିନ ଭାବିଲେ ପାଇବି ନାହିଁ ,,
ଚନ୍ଦ୍ରପଟରେ ସଖୀମାନେ ଯେପରି ନୃତ୍ୟ କରନ୍ତି ,,
ମୋର ଆଖିରେ-ତ ତୁମେମାନେ ସେହିପରି ନୃତ୍ୟ କରିବ ,,
ରଜ, କୁଆଁର ପୂନେଇଁ, ଖୁଦୁରୁକୁଣୀ କରିବ ,,
ମୋ କଥା କି ଆଉ ମନେପଡ଼ିବ ? ,,

ଦେବ ଦେବର୍ଷି ସଭାରେ ରାଜଦରବାରେ ଭୁଲି ନଥିଲ  ହେ ଭାଇ
ଏବେ କେଉଁ କେଳା କୁହୁକରେ
ମାଲ୍ୟାଣି ଫାନ୍ଦରେ ପଡ଼ି ଭୁଲିଲ ,,
ସୁବର୍ଣ୍ଣ ଭୃଙ୍ଗୁଡ଼ରେ ସ୍ୱର୍ଗର ପାରିଜାତ ଦେଖି ଭୁଲି ନ ଥିଲ ,,
ଏବେ ଗ୍ରୁର ବଣ ମଲ୍ଲୀଫୁଲ ଦେଖି ଭୁଲିଲ ,,
ସାତସମୁଦ୍ର ଦରିଆ ପାରିହୋଇ ମୋର ନିମନ୍ତେ ଗେଣ୍ଡା ବାଛିଲ ,,
ସୁବର୍ଣ୍ଣ ଥାଳୀରେ ଭୋଜନ କରୁ ନ ଥିଲ ,,
ଏବେ କପରି ଗ୍ରୁର ଖଲି ପତରରେ ଭୁଞ୍ଜି ଆସିଲ ,,
ହରିଶ୍ଚନ୍ଦ୍ର ରାଜା ସବୁଠୁଁ ଦାନୀ ,,
ମୁଁ ତ ଜାଣେ ତୁମେ ସବୁଠୁଁ ଜ୍ଞାନୀ ,,
ମୋ ନିମନ୍ତେ ଏବେ ବୁଦ୍ଧି-ହୀନ ହୋଇ ବସିଲ ,,
ଅପୂଜା ମନ୍ଦିର ପୂଜି ଆସିଲ ,,
ଅତୁଠରେ ତୁଠ କରି ଆସିଲ ,,
ଅମଡ଼ା ରାଇଜ ମାଡ଼ି ଆସିଲ ,,
ଅବାଟରେ ବାଟ କାଟି ଆସିଲ ,,
ଦିବସରେ ଭୋକ ରାସରେ ତ ନିଦ ହେଉ ନ ଥିଲା ,,
ମୋତେ ବିଦାୟ ଦେଇ ଏବେ ଅଚିହ୍ନା ହେବ ,,

Digitized by srujanika@gmail.com

## କାନ୍ଦଣା

( ମେଦ୍ନୀପୁର )

ଉଠିଲ୍ ସୁଆଶ ବସିଲ୍ ନାହିଁ
ଘରୁ ଗୃହ୍ନି ବାକୁ ଦଶିଲ୍ ନାହିଁ
ଗାଁ ପାଟରଇନେ (୧) ନାଁ ନୁଟଲ୍
ଟେକା ଗୁଛିନେ (୨) ଗୋ ଘାଇ-ବୁଜଲା ।
ବାଡ଼ ସେ ପାଖରେ ସିଜୁ ପଗାଶ ।
ଗାଁ ଧାଟରେ ଧାଟରେ ଡାକେ ସୁଆଶ ।
ଆକ୍ରୁ ପଡର କ ପାନ ହୋଇବ
ପର ଦେଶରେ କ ମନ ରହିବ ?
ଆକ୍ରୁ ପଡର କ ପାନ ସମାନ
ପର କ କରିବ ଝିଅ ସମାନ ?
କସି କଦଳୀ ତ ଫେଣୀ କ ଫେଣୀ
ବାପ ଘରେ ଝିଅ ମଉଡ଼ମଣୀ ।
ପାକା (୩) କଦଳୀ ତ ଗୁଡ଼ ଘାଣ୍ଟିପୁ।
ବାପ ଘରେ ଝିଅ ବଡ଼ ହଟିପୁ। ।
ତେନ୍ତୁଳ ପତ୍ତର ଫିରି ଫିରିକା
ଯେତେ ଭର ସଜା ସୁରୁ (୪) ଆଟିକା

---

(୧) ପାରେଇନେ— ପାଇହେଲେ ; (୨) ଗୁଛିନେ—ଗୁଛିଦେଲେ ;
(୩) ପାକା—ପାଚଲ ; (୪) ସୁରୁ—ସୁରୁ ବା ସାନ;

Digitized by srujanika@gmail.com

ଗୀଡ଼ିଆ ଭିତରେ ନୈବେଦ କଇଁ
ନୁକା ମାରମାର (୧) ବୁଲୁଛ କାହିଁ ? — ଏ ନାନା
କିଛି ଅଳ ଦଳ କରମି ନାହିଁ । — ଏ ନାନା
ମୁଁ ହର ବଚନ ମାଗୁଛି ମୁଁ ହି — ଏ ନାନା
ନଦୀ ସେ ପାଖରେ ପାରସ୍ୱା (୨) ଘଡ଼ — ଏ ନାନା
ଅରଖିତା ଘରୁ ଯେ ଆଇଲ ଗୋଢ଼ । — ଏ ନାନା
ବାଡ଼ ସେ ପାଖରେ ଚେଙ୍କା ଗଞ୍ଜାଇ — ଏ ନାନା
ହାଣ୍ଡିଶାଳକୁ କି ଦେଲ ରଞ୍ଜାଇ ? — ଏ ନାନା
ହାଣ୍ଡିଶାଳ ନଅ ହାତରେ ଯିବ — ଏ ନାନା
ହାଣ୍ଡି-ଶାଳରେ ଏ ଜୀବନ ଯିବ । — ଏ ନାନା
ଗୁଆ ଗଡ଼ିଗଲା ଥାଳୀ ତଳକୁ — ଏ ନାନା
ବାପ ଠେଲି ଦେଲେ ତଳମାଳକୁ — ଏ ନାନା
କଞ୍ଚନ ଥାଳୀରେ ଛ ଖଣ୍ଡି ଗୁଆ — ଏ ନାନା
ଲୋକ ଯେ ବଳିବ ଛେଉଣ୍ଡ ଛୁଆ । — ଏ ନାନା
କୁଇଲ ରାବୁଛି କରଞ୍ଜ ଡାଳେ — ଏ ନାନା
ଆମେ ରାବୁଥିବା ଖାଇବାବେଳେ । — ଏ ନାନା
କୁଇଲ ରାବୁଛି ତୋଟାରେ ବସି — ଏ ନାନା
ଆମେ ରାବୁଥିବା କଠାରେ (୩) ବସି । — ଏ ନାନା
ଶୂନ୍ୟ ପଡ଼ିଗଲା ସୁନା ପଞ୍ଜିରି (୪) — ଏ ନାନା
ଶୂନ୍ୟ ପଡ଼ିଗଲା ରାଧା ମନ୍ଦର (୫) । — ଏ ନାନା
ଶୂନ୍ୟେ ଉଡ଼ିଗଲା ସୁନାର ଯୋଡ଼ — ଏ ନାନା
ଖାଲି ପଡ଼ିଗଲା ମାଆର କୋଡ଼ । — ଏ ନାନା
ତୁମ କୋଡ଼େ ଅଛି ପଦ୍ମକେଶରୀ — ଏ ନାନା
ତାକୁ ଦେଖି ମତେ ଗଲ ପାସରି । — ଏ ନାନା

---

(୧) ନୁକା ମାରମାର—ଲୁଚ ଲୁଚ ; (୨) ପାରସ୍ୱା—ପାର୍ଶ୍ୱ ; (୩) କଠାରେ—କୋଠାରେ ; (୪) ପଞ୍ଜିରି—ପଞ୍ଜୁରୀ ; (୫) ମନ୍ଦର—ମନ୍ଦିର ବା ଗୃହ ;

Digitized by srujanika@gmail.com

## କାନ୍ଦଣା

( ମେଦନୀପୁର )

ଉଠିଲା ସୁଆଣ୍ଡ ବସିଲା ନାହିଁ
ଘୂରି ଘୁରି ବାକୁ ଦଶିଲା ନାହିଁ
ଗାଁ ପାରେଇନେ (୧) ନାଁ ନୁଶଲା
ଟେକା ଗୁଛିନେ (୨) ଗୋ ଧାଇ-ବୁଜଲା ।
ବାଡ଼ ସେ ପାଖରେ ପିଜୁ ପଗାଣ୍ଡ ।
ଗାଁ ଧାରେ ଧାରେ ଡାକେ ସୁଆଣ୍ଡ ।
ଆକୁ ପତର କ ପାନ ହୋଇବ
ପର ଦେଶରେ କ ମନ ରହିବ ?
ଆକୁ ପତର କ ପାନ ସମାନ
ପର କ କରିବ ଝିଅ ସମାନ ?
କଞ୍ଚି କଦଲୀ ତ ଫେଣୀ କ ଫେଣୀ
ବାପ ଘରେ ଝିଅ ମଉଡ଼ମଣୀ ।
ପାକା (୩) କଦଲୀ ତ ଗୁଡ଼ ଘାଣ୍ଟିଆ
ବାପ ଘରେ ଝିଅ ବଡ଼ ହଟିଆ ।
ତେନ୍ତୁଳ ପତର ଫିରି ଫିରିକା
ଯେତେ ଘର ସଜା ସୁରୁ (୪) ଆଟିକା

(୧) ପାରେଇନେ— ପାରହେଲେ ; (୨) ଛୁଟିନେ—ଛୁଟିଦେଲେ ;
(୩) ପାକା—ପାଚଲ ; (୪) ସୁରୁ—ସୁରୁ ବା ସାନ;

Digitized by srujanika@gmail.com

ଗାଡ଼ଆ ଭିତରେ ନଟବାଦ କଇଁ
ନୁକା ମାରମାର (୧) ବୁଲୁଛ କାହିଁ ? ଏ ନାନା
କହୁ ଅଳ ଦଳ କରମି ନାହିଁ । ଏ ନାନା
ମୁଁ ହର ବଚନ ମାଗୁଛି ମୁଁ ହି ଏ ନାନା
ନଘା ସେ ପାଖରେ ପାଶପ୍ୟା (୨) ଘଡ଼ ଏ ନାନା
ଅରଖିତା ଘରୁ ଯେ ଆଇଲ ଗୀଡ଼ । ଏ ନାନା
ବାଢ଼ ସେ ପାଖରେ ଟେଙ୍ଗା ଗଞ୍ଜାଇ ଏ ନାନା
ହାଣ୍ଡିଶାଳକୁ କି ଦେଲ ରଞ୍ଜାଇ ? ଏ ନାନା
ହାଣ୍ଡିଶାଳ ନଅ ହାତରେ ଯିବ ଏ ନାନା
ହାଣ୍ଡି-ଶାଳରେ ଏ ଜୀବନ ଯିବ । ଏ ନାନା
ଗୁଣ୍ଡା ଗଡ଼ଗଲା ଥାଳୀ ତଳକୁ ଏ ନାନା
ବାପ ଠେଲି ଦେଲେ ତଳମାଳକୁ ଏ ନାନା
କଞ୍ଚନ ଥାଳୀରେ ଛ ଖଣ୍ଡି ଗୁଣ୍ଡା ଏ ନାନା
ଲୋକ ଯେ ବଳିବ ଛେଉଣ୍ଡି ଛୁଣ୍ଡା । ଏ ନାନା
କୁଇଲି ରବୁଛି କରଞ୍ଜ ଡାଳେ ଏ ନାନା
ଆମେ ରବୁଥିବା ଖାଇବାବେଳେ । ଏ ନାନା
କୁଇଲି ରବୁଛି ତୋଠାରେ ବସି ଏ ନାନା
ଆମେ ରବୁଥିବା କଠାରେ (୩) ବସି । ଏ ନାନା
ଶୂନ୍ୟ ପଡ଼ଗଲା ସୁନା ପଞ୍ଜିରୀ (୪) ଏ ନାନା
ଶୂନ୍ୟ ପଡ଼ଗଲା ରାଧା ମନ୍ଦର (୫) । ଏ ନାନା
ଶୂନ୍ୟେ ଉଡ଼ଗଲା ସୁନାର ଯୋଡ଼ ଏ ନାନା
ଖାଲି ପଡ଼ଗଲା ମାଆର କୋଡ଼ । ଏ ନାନା
ତୁମ କୋଡ଼େ ଅଛି ପଦ୍ମକେଶରୀ ଏ ନାନା
ତାକୁ ଦେଖି ମତେ ଗଲ ପାସରି । ଏ ନାନା

---

(୧) ନୁକା ମାରମାର—ଲୁଚ ଲୁଚ ; (୨) ପାଶସ୍ଥା—ପାଗ୍ ; (୩) କଠାରେ —କୋଠାରେ ; (୪) ପଞ୍ଜିରି—ପଞ୍ଜୁରୀ ; (୫) ମନ୍ଦର—ମନ୍ଦିର ବା ଗୃହ ;

Digitized by srujanika@gmail.com

ପର୍ବତ ଉପରେ ଗହମ ମେଲା — ଏ ନାନା
ଯେତେ ଘର ସଜା ଦାଣ୍ଡକୁ ଶୋଭା । — ଏ ନାନା
ଦାଣ୍ଡ ଦୁଆରେ ଯେ ସୁରୁ ଗୃହର — ଏ ନାନା
ଯାଚନ୍ଦଆ (୧) ବନ୍ଧୁର ବଡ଼ ଆଦର — ଏ ନାନା
କାନ୍ଥର ପୁତୁଳ କାନ୍ଥେ ଲେଖିବ — ଏ ନାନା
ବାପ ଚନ୍ଦ୍ରମୁଖ କେବେ ଦେଖିମି ? — ଏ ଢାନା
ଏଠେ ଖାଇଥେନ (୨) ଗଠା ମେଠାଇ (୩) — ଏ ନାନା

ପର କିଁ ଦେବ ମା ହାତ ଉଠାଇ ? — ଏ ନାନା
ବନର କୁକୁଡ଼ା ଛ ମାସେ ରବେ — ଏ ନାନା
ମୋତେ ଘୁରାଇତେ ବରଷେ ନାଗେ । — ଏ ନାନା
ଝିରଝିର ପାନ (୪) ପଥର କାଟେ — ଏ ନାନା
ପର ଘର କଥା କଲେଜା (୫) ଫାଟେ । — ଏ ନାନା

---

(୧) ଯାଚଦଆ—ଯାଚକର ଯେ ଦେଇଛୁ ; (୨) ଖାଇଥେନ—ଖାଇଥିଲି ;
(୩) ମେଠାଇ--ମିଠାଇ; (୪) ଝିରଝିର ପାନ—ଧୀରପାଣି;(୫) କଲେଜା—କଲିଜା ।

Digitized by srujanika@gmail.com

# କାନ୍ଦଣା

(କାନ୍ଥି, ମେଦ୍ଦନୀପୁର)

ଗଡ଼ଆ ଘାଟର ଭଲକ ମାଟି
ଏଇ ବର ଦେଖି ଅଜା ପଡ଼ଲୁ ହଟି ?
ଚନ୍ଦ୍ରା ମୋର ଯଦ ଥାନ୍ତା ଚଲ ବୟୂସ ?
ତୋତେକ ଲେତା ଚନ୍ଦ୍ରା ପଉପୁ ଛୁଷ ?
ବଣ୍ଡ୍ରୀ ଯେତେକ କଣ୍ଟା
ଶାଶୂ ନଣନ୍ଦର ଯେତେକ ଖୁଣ୍ଟା
ଆଡ଼ଆ ଉପରେ ଲଲ୍ ମାରସି
ଆଉ କ ଦେଖିବା ମାଉସୀ ପିସୀ ?
ଧୋପାଲ୍ ହାଟର ମହତା ପାନ
ଅଜାଗୋ, ଆଉକ ଦେଖିବା ଜନମ ଥାନ ?

ବାଲ କେର କେଣ ଜଗଦା ଘର
ଜଗଦା ଘରରେ କୁଞ୍ଜି କବାଟ
ନଶ୍ୱାସ ଛୁଡ଼ତେ ନାହିଁ ଗୋ ବାଟ
ହାଟ ଉପରେ ମା, ଶିଙ୍ଘ ପାନଆ
ଲୋକ ଦେଖିଲେ କହ୍ଲେ ବୁଡ଼ା କାଳିଆ
ହାଟ ଉପରେ ମା ଲଲ ମାରସି
ବହୂ ମୋଡ଼ଦେଲ୍ ଶଶୁର ନଶି
ଆଡ଼ଆ ଉପରେ ମହତା ପାନ
ବୋହୂ ମୋଢ଼ ଦେଲ୍ ଶଶୁର କାନ ।

Digitized by srujanika@gmail.com

# କାନ୍ଦଣା

(ଢାମଣ୍ଡା)

ପୋଖରୀ ହୁଡ଼ରେ କଇଁଥ ଗଛ
ସେ ଫୁଲ ଫୁଟଇ ଚଇତ ମାସ
ଚଇତାଳ ପୁଅ ହେଇ ଥାଇଛି
ବହୁ ଧରି ଗୀତ ଗାଉ ଥାଇଛି
ପୋଖରୀ ହୁଡ଼ରେ ଝାମ୍ପଣ ବର
କାଣ୍ଡ ବନ୍ଧି ଥିଲେ ରାବଣେଶ୍ୱର
ସେ କାଣ୍ଡ ପଡ଼ିଲ୍ ସୀତା ପାଖରେ
ସୀତା ଠାକୁରାଣୀ କ ବୁଦ୍ଧି କଲେ ?
ଜଡ଼ ଫଳ ଖାଇ ନଷ୍ଟକ ଗଲେ ।

ଲୁହା ସାଙ୍କୁଣିରେ ସାପ ଖେଳୁଛି
ଗାଆଁର ବଣିଆ ବୁଲି ଯାଉଛି
ମୋହର ନାକ କାନ ଲୁସା (୧) ହୋଇଛି
ତୁମ ପରି ବହୁ ଏହା ସହୁଛି ।

ହାତୀ ହଣ୍ଟୁଥାଇ ବର ଡାଳକୁ
ମୁହଁ ହଣ୍ଟୁଥାଇ ସୁନା ମାଳକୁ
ସୁନା ମାଳ ଅବା କସ ଦେଇଛି
ପିତ୍ତଳ ପଇସାକୁ ଲୋଭ କରୁଛି ।

---

(୧) ଲୁସା—ଲୁଚ୍ଛା ।

Digitized by srujanika@gmail.com

ବାମଣ୍ଡା ଗଡ଼କୁ ଗଲ୍ ଶଗଡ଼
କଞ୍ଚା-ଖାଇ ଶାଶୂ ଦେବ ରଗଡ଼ ।
ବାଟ ପଛ ଆଡ଼େ କଷି ତେନ୍ତୁଡ଼
ଶାଶୂ ତ ମୋହର ଅସୁଖ ବୁଢ଼ୀ
ଝୁରି ମାଛ (୧) ପଚ ଦେବ ସନ୍ତୁଡ଼ । (୨)

ହାଣ୍ଡି ର ସୋରିଷ ଫୁଟି ନ ଥିବ
ବଡ଼ ଘର ପୁଅ ଖାଇ ବସିବ
ଯଦି ଭାତ ଲୁଣ ଭୁଲ ନୋହିବ
ଅଇଁଠା ହାତରେ ମାଡ଼ ମାରିବ ।

ବିଲର କଉଡା ଧୋବ ହଗଇ
ବଳଦ ପଟକୁ ଲୁଭ (୩) ବସଇ
ନୂଆ ବନ୍ଧ ପାଣି ମାଟର ଚଳକା
ଗୋଟେ ଜଡ଼କାକୁ (୪) ହେବ ଭେଟଲେକା
ଗଡ଼ିଆର ପାଣି ଢଳ ବୁଲୁସି
ମୋହ ଲଗି ମାଆ ଝୁରି ମରୁସି ।

ଥାଳୀ ଫିଙ୍ଗିଦେଲେ ଚଉଳେ ଯାଇ ମୋ ସାଙ୍ଗ
ମୋତେ ଫିଙ୍ଗିଦେଲେ କଟକେ ଯାଇ ମୋ ସାଙ୍ଗ
କଟକର ବାଟ ଧୂଳି ଧପଟ ମୋ ସାଙ୍ଗ
ଜନମ ମାଟିକି କଲି ଆକଟ ମୋ ସାଙ୍ଗ
ଉପର ପବଟେ ଚଟିକ ଜଡ଼ା ମୋ ସାଙ୍ଗ
ତାଙ୍କ ଘର ପୁଅ ସାଇକଲ ଚଢ଼ା ମୋ ସାଙ୍ଗ
ସାଇକଲ ଉପରୁ ଓହ୍ଳି ଆସିବେ ମୋ ସାଙ୍ଗ
ବେଗେ ଭାତ ତିଅଣ ଦଅ ବୋଲିବେ ମୋ ସାଙ୍ଗ

---

(୧) ଝୁରି ମାଛ—ଚୂନା ମାଛ; (୨) ସନ୍ତୁଡ଼—ସନ୍ତୁଳ;
(୩) ଲୁଭ—ଲୋଭ; (୪) ଜଡ଼କା—ଓଠକାମୁଡ଼ା,

Digitized by srujanika@gmail.com

# କାନ୍ଦଣା

(ଅନୁଗୁଳ)

ନୂଆ ଦରପଣ ଛୁଇ ଦେଖୁଛି
ବାପା ଯାହା ସଙ୍ଗେ ବନ୍ଧୁ ବାନ୍ଧୁଛି
ଦଶମାସ ଦେହ ଛୁଡ଼ି ପଡ଼ୁଛି ।

ଲେମ୍ବୁ ଚିପଡ଼ିଲେ ଅଗରେ ରସ
ଦେଖି ନ ଅଇଲ ବାର ବରଷ
ବାର ବରଷରୁ ଓଳିଏ ଗଲା
ଛୁର ଗୃଣ୍ଡାଳରେ ମୋ ଦିନ ଗଲା ।

ଚିଲ ଉଡ଼ିଗଲେ ଛୁଇ ପଡ଼ିବ
ସତେ ବୃନ୍ଦାବନ ମନେ ପଡ଼ିବ
ଯେ ଦିନ ପଡ଼ିବ ମନ ହରଷ
ମୋ ମଡ଼ା ପଡ଼ିବ ବାର ବରଷ ।

ବାରି ବାଇଗଣ ଅଗରେ ପାନ
ଆଜ ମୁରୁଛିଲ ଜନମ ଥାନ
ଜନମ ଥାନରୁ ଛୁଡ଼ି ଯାଇଛି
ସବୁ ଅପମାନ ଧରି ଯାଇଛି ।

ବନସ୍ତରୁ ସାଗ ଆଣିଲ ଧରି
ତା କଣ୍ଠରେ ଦେଲ ଷୀର କଦଳୀ

Digitized by srujanika@gmail.com

କ୍ଷୀର କଦଳୀ ତ ଲାଗଇ ପିଠା
ତା ମନେ ପଡ଼ିବ ବନସ୍ତ ଝନ୍ତା
ମୋ ମନେ ପଡ଼ିବ ତୁମର କଥା ।

କଳା ଦୂବ ବଢ଼େ କାକର ଖାଇ
ମୁଁ ତ ବଢ଼ୁଥିଲି ଶାକର ଖାଇ
ଶାକର ମୋ ତୁଣ୍ଡେ ଲାଗିବ ପିଠା
ଆଜଠୁଁ ଗୁଡ଼ିଲେ ମୋହର ଚିନ୍ତା ।

ପର୍ବତ ଶିଖରେ କୁଆ ଗବୁଛି
ମା ଯଉକରେ ରବ ଦେଉଛି
ଦଶମାସ ଦେହ ଛିଡ଼ି ପଡ଼ୁଛି ।

କାଉ କାଆ କଲେ ଆନ୍ଧାର ଦେବ
ମାଆ କାନ୍ଦୁଥିଲେ ଘରକୁ ନେବ
ମାଆ ଯୋଉଦିନ କାନ୍ଧ ବସିବ
ମନ ଥଣ୍ଡାକରି ତମେ କହିବ ।

ଗୃହିଣୀ ରାତିରେ ଖେଳ ଖେଳୁଛି
ଯାହାକୁ ସାଙ୍ଗ ମୁଁ ଯାହା କହୁଛି
କାନ ପଣତରେ ବାନ୍ଧି ନେଉଛି ।

ପର୍ବତ ଶିଖରେ ସୁନା ମୁକୁଟ
ଆଉ ସାଙ୍ଗମାନେ ନ ହେବା ଭେଟ
ଆମେ ଯୋଉଦିନ ଭେଟ ହୋଇବା
ଗାଧୁଆ ତୁଠରେ ବେଳ ସାରିବା ।

ନଈ ବଢ଼ି ଆସେ ଅତି ଯତନ
ମତେ ଦେଖିବାକୁ ସାତ ସପନ
ସପନ କଥାକୁ ସତ ମଣିବ
ସାକ୍ଷାତରେ ମତେ କାହୁଁ ଦେଖିବ ?

ସାପ ବୁଲି ବୁଲି ଗାତେ ପଶିଲା
ବାଘ ବୁଲି ବୁଲି ବନେ ଧାସିଲା

Digitized by srujanika@gmail.com

ବାପା ଯୋଉଦିନେ ଧାସ ଦେଇଛୁ
ସାତ ପୁରୁଷକୁ କଣ୍ଠା ରଖିଛୁ ।
ଶ୍ବଶୁର ଦିନେ ବାପା ଜାଗର ଜଳେ
ରଖିଥିଲ କାନ ପଣତ ତଳେ
କାନ ପଣତରୁ ଫିଟି ପଡ଼ିବ
ନରକ କୁଣ୍ଡରେ ମୁଇଁ ସଡ଼ିବି ।

ପାଣି ବଢ଼ି ଆସେ ପନ୍ଦାର ଦେଖି
ମତେ ଘିଟାଇଲ ଶୁକର ଦେଖି
ହଳିଆ ଶୁକର ଯାହା କହିବ
ହାଡ଼ରୁ ମାଉଁସ ଝଡ଼ି ପଡ଼ିବ ।
ଆମ୍ବ ତୋଠାରୁ ତ ଆମ୍ବ ଖସିଲା
ତମ କୋଠାରୁ ତ ଝିଅ ଖସିଲା ।
ରୁଇଲ କଦମ୍ବ ପଡ଼ିଲା ତଳେ
ନକୁଟିଆ ବନ୍ଧୁ ଥିଲା କପାଳେ ।
ନକୁଟିଆ ବନ୍ଧୁ ଯାଇତ ଫେରି
ବାପା ଗୋଡ଼ତଳେ ଯାଆନ୍ତି ମରି
ସବୁ ଅପନ୍ଦା ଯାଆନ୍ତା ସରି ।

ଅନ୍ଧାର ଘରରେ ଜଳା କବାଟ
ମତେ ରଖିଥିଲ ଭୁମ୍ବୁ ଆକଟ ମୋ ଖୁଡ଼ୀ ଟଗୋ
ଅନ୍ଧାର ଘରକୁ ଓଳା ଉବରି ମୋ ଖୁଡ଼ୀ ଗୋ
ଯମ ଯୋଉଦିନୁଁ କଲା ଜଗିରି ମୋ ଖୁଡ଼ୀ ଗୋ
ଦଶମାସ ଦିନ ଗଲା ହୁଞ୍ଜିରି ମୋ ଖୁଡ଼ୀ ଗୋ
ବାଡ଼ ଅଙ୍କରନ୍ତ ଲକ୍ଷେ କୁଆଁଶୀ ମୋ ଖୁଡ଼ୀ ଗୋ
ତୋ ଝିଅ ସମାନ ମୁଇଁ ଝିଆରୀ ମୋ ଖୁଡ଼ୀ ଗୋ
ମତେ ନ କହିବ ଦାଣ୍ଡ ଦୁଆରୀ ମୋ ଖୁଡ଼ୀ ଗୋ
ଭାଇରେ ଭାଇରେ ଭାଗ ବାଣ୍ଟିବ ମୋ ଖୁଡ଼ୀ ଗୋ

Digitized by srujanika@gmail.com

ମୋ ଠାରେ ତ ଯେବେ ରାଗ ରଖିବ — ମୋ ଖୁଡ଼ୀ ଗୋ
ଖାଇଲ କଂସାରେ ବିଷ ଭରିବ — ମୋ ଖୁଡ଼ୀ ଗୋ

କଦଳୀ ଗଛ ତ ଅଗ ମଉଳା — ହେ ମାମୁଁ
ଯାଉଣୁ କହିବେ ମାମୁଁ ମଉଳା ! — ହେ ମାମୁଁ
ମାମୁଁ ମଉଳା ତ ଦୂର ଦେଶରେ — ହେ ମାମୁଁ
ନଜର ରଖିବ ମୋହର ଠାରେ — ହେ ମାମୁଁ
ବାଡ଼ ପଛଆଡ଼େ କଦଳୀ ପୂଆ — ହେ ମାମୁଁ
ଘରୁ ଘିଆଇଲ ବାଳୁତ ଛୁଆ — ହେ ମାମୁଁ
ବାଳୁତ ଛୁଆର ମୁଣ୍ଡରେ ଧୂଳି — ହେ ମାମୁଁ
ଡାଳ ଭାଙ୍ଗି ପଦ ନ ଜାଣେ ଚୋଳି — ହେ ମାମୁଁ

କଇଁଆ ପତର ଯେତିକ ସରୁ — ହେ ମାମୁଁ
ମାମୁଁଙ୍କ ଦରଜା ହେତିକ ଦୂରୁ — ହେ ମାମୁଁ
ପୁରୀ, କପିଳାସ ଦୂର ହୋଇବ — ହେ ମାମୁଁ
ମାମୁଁଙ୍କ ଦରଜା ପାଖ ହୋଇବ । — ହେ ମାମୁଁ
ଅଫୂଟ ଭୂଇଁରେ ଫିଟିଲି କଇଁ — ହେ ମାମୁଁ
ଅବୁଝା ମାମୁଁରେ ଭଣିଜା ମୁଇଁ — ହେ ମାମୁଁ
ଯେତେ ବୁଝେଇବ ବୁଝିବ ନାହିଁ — ହେ ମାମୁଁ
ସେ ଦେଶରେ ବନ୍ଧୁ ବାନ୍ଧିଲ ଯାଇ । — ହେ ମାମୁଁ

ରସୁଣ ପତର କଳା ଭ୍ରମର — ହେ ମାମୁଁ
ମୋ ଗୁରୁ ନନା ତ ରାଜକୁମର — ହେ ମାମୁଁ
ମଝିଆଁ ନନା ତ ମଧୁମାଳତୀ — ହେ ମାମୁଁ
ହାତକେ ଧରିଛି ପଟା ପାଉଡି — ହେ ମାମୁଁ
ପଟା ପାଉଡିକ ଖସେଇ ଦେବ — ହେ ମାମୁଁ
ରୋଷେଇ ଶାଳରେ ବସେଇ ଦେବ — ହେ ମାମୁଁ
ରୋଷେଇ ଶାଳରେ ବହଇ ଝାଳ — ହେ ମାମୁଁ
ସେ ଝାଳ ପଦର ଦେହେ ମରିବ — ହେ ମାମୁଁ
ଅଜ୍ଞାନ ଝିଅ କି ଜ୍ଞାନ କରିବ ? — ହେ ମାମୁଁ

Digitized by srujanika@gmail.com

ଗୋଟି ଗୋଟି ଶାଗ କଅଁଳ ଆସେ — ହେ ମାମୁଁ
ନମୁନା (ନମୁନା) ? ମୁହଁକୁ ଜବାବ ଆସେ — ହେ ମାମୁଁ
ନମୁନା ମୁହଁାର ପାଦର ଖଦ — ହେ ମାମୁଁ
ହେଜି ନେଇଥିବ ଗୋଡ଼ର ମୁଦ । — ହେ ମାମୁଁ
ଗୋଡ଼ ଙ୍କାର ମୁଦ ସିନ୍ଦୁର କମ — ହେ ମାମୁଁ
ମାଆ ଦେଇଥିଲେ ସୁନା ଜନମ — ହେ ମାମୁଁ
ବାପା ଦେଇଥିଲେ ରୂପାର ଚୂରି — ହେ ମାମୁଁ
ଏଇ ହାନମାନ କରବେ ବୋଲି । — ହେ ମାମୁଁ
ପୁଅ ହୋଇଥିଲେ ବସି ଖାଆନ୍ତ — ହେ ମାମୁଁ
ଝିଅ ହୋଇଛୁ ଯେ ଭସି ଯାଉଛୁ — ହେ ମାମୁଁ
ବାରରେ ବସିଛୁ ଶହେ ଚଢ଼େଇ — ହେ ମାମୁଁ
ଶଏ ପାଣିଢାଳ ଦେବ ଧରେଇ — ହେ ମାମୁଁ
ଶଏ ପାଣି ଢାଲ କେତେ ଓଜନ — ହେ ମାମୁଁ
ସେତକ ମୋ ବାପା କରୁଛୁ ମନ । — ହେ ମାମୁଁ
ଘିଅ ସର ସର ପିତ୍ତଳ କାଞ୍ଚ — ହେ ମାମୁଁ
ବାପା ଯାଇଥିଲେ ଦରଜା ଦେଖି — ହେ ମାମୁଁ
ଦରଜା ଦେଖାରୁ କ'ଣ ଖାଇଲ — ହେ ମାମୁଁ
ଥାଳୀକ ସମାନ ପିଠା ଖାଇଲ — ହେ ମାମୁଁ
ଡାଟିଆ ସମାନ ଖୀର ଖାଇଲ — ହେ ମାମୁଁ
ଗିଲସ ସମାନ ପାଣି ଖାଇଲ — ହେ ମାମୁଁ
ମୋ ଘରେ ଝିଅ ତ ଅଛୁ କହିଲ । — ହେ ମାମୁଁ
ଭଙ୍ଗିଲ ଯୁଆଳ ଯୁରଲ(୧) କଏ ? — ହେ ମାମୁଁ
ନାହିଁ କଲ ବନ୍ଧୁ ଲେଢ଼ଲ କଏ ? — ହେ ମାମୁଁ

ଗାଧୁଆ ଭୁଠରେ ନବ ଯାତର
ଉଳୁଳି ପଡ଼େ ମୋ ଗୋପ ମଥୁର — ସାଙ୍ଗସରଣା
କଇଁଆ ପତର ପ୍ରାୟେ ଝଡ଼ବ — ସାଙ୍ଗସରଣୀ

(୧) ଯୁଡ଼ଲ—ଯୋଡ଼ଲ;

Digitized by srujanika@gmail.com

ନୟନୁଁ ଲୋତକ ଧାର ଖସିବ    ସାଙ୍ଗସରଣା
ସାଙ୍ଗ ଯେତେବେଳେ ମନେ ପଡ଼ିବ ।    ସାଙ୍ଗସରଣା
ତଳେ ଦହି ବସା ଉପରେ ଘର    ସାଙ୍ଗସରଣା
ଯେତେ ଭୁଞ୍ଜାଇଲେ ସେ ପାଣ ଧର    ସାଙ୍ଗସରଣା
ଚଢ଼େଇ ରବଇ ଆମ୍ଭ ତୋଟାରେ    ସାଙ୍ଗସରଣା
ମୋ ମାଆ କାନ୍ଦଇ ମଝି କୋଠାରେ    ସାଙ୍ଗସରଣା
ଚଢ଼େଇ ରବିଲେ ଆହାର ଦେବ    ସାଙ୍ଗସରଣା
ମୋ ମାଆ କାନ୍ଦିଲେ ବୁଝେଇ ଦେବ    ସାଙ୍ଗସରଣା
ହାଣ୍ଡି ପେଟ ତଳେ ଯାଉଁଳ ଘଣ୍ଟ    ସାଙ୍ଗସରଣା
ଯାତ ପରଟାରେ ତାଟିଆ କଣ୍ଠ ।    ସାଙ୍ଗସରଣା

କୋଣଳା ଶାଗ ତ ଷୀରରେ ରାଇ
ରାନ୍ଧି ନ ଜାଣିଲେ କେ ଦେବ କହି ?    ମା ଖୁଡ଼ୀ
ଚିଲ ଉଡ଼ିଗଲା ସ୍ୱର୍ଗ ତଳରେ    ,,
ତା ଛୁଇ ପଡ଼ିଲା ଜଳ ଭିତରେ    ମା ଖୁଡ଼ୀ
ଜଳ ଭିତରର ପାଣି ନଚଳ    ,,
ସେଥିରେ ଉଡ଼ଇ କଞ୍ଚ କୋଲପ ।    ମା ଖୁଡ଼ୀ
ବାଡ଼ି ଛିଟୁ ପିଟୁ ଅଙ୍କ ପିଟିଲା    ,,
ମାଠ୍ୟା(୧) ନ ଭାଙ୍ଗୁଣୁ ବାର ଠୁକିଲା    ମା ଖୁଡ଼ୀ
ଠୁକି ନେଉଥିବ ଯେତେବେଳକୁ    ,,
ସଡ଼ି ପଡ଼ୁଥିବ ଗୋଡ ତଳକୁ    ମା ଖୁଡ଼ୀ
ବାରି ପଛତଳେ ଖଇର ଡାଳ    ,,
ବୁଲି ଆସୁ ଆସୁ ନଆଁ ତ କଲା ।    ମା ଖୁଡ଼ୀ
ବାରି ପଛ ଆଡ଼େ କଇଁଆ ବୁରି    ,,
ଯୋଲ ଦେଇ ନାକ ପୂରେଇ ଥିଲା ।    ମା ଖୁଡ଼ୀ
ବାରି ପଛ ଆଡ଼େ କଦଳୀ ପୁଆ    ,,

(୧) ମାଠ୍ୟା—ମାଠିଆ ।

ଜ୍ୱାଇଁ କରୁଛୁ ଯେ ପେଟ ବଥିଆ ।     ମା ଖୁଡ଼ୀ
ପେଟ ଯେତେବେଳେ ବଥେଇ ଦେବ     ,,
ବାଇସୁଣ୍ଡି ଯୋଡ଼ା ପଠେଇ ଦେବ ।     ମା ଖୁଡ଼ୀ
କଳା ବାଇଗଣ ଅଗରେ କଣି     ,,
ନଲଜ ଆସିଛୁ ଘୋଡ଼ାରେ ବସି     ମା ଖୁଡ଼ୀ
ଖଇ ଢ ମାଣକେ ନଅ ଢ ମାଣେ     ,,
ସେଥିରେ ଆସିଛୁ ଭଣ୍ଡାସି ଜଣେ     ,,
ବକତକେ ଖାଏ ଅଢ଼େଇ ମାଣେ ।     ମା ଖୁଡ଼ୀ
ବାଟର ଖଜୁରି ପିଲେ ଖାଆନ୍ତି     ,,
ମାଆ କରତଳେ କେହି ନାହାନ୍ତି ।     ମା ଖୁଡ଼ୀ
ମାଆ ଯେତେବେଳେ ପଡ଼ି ରହିବ     ,,
ଜୁଆ କ ଉପୁନା ଏକା ହୋଇବ ।     ମା ଖୁଡ଼ୀ
ଆମ୍ବ ଖାଉଥିଲ ଡାହ୍ଲି ଉଠେଇ     ,,
ତା ଛଚନା ନୋଳ ନେଲ ଉଠେଇ ।     ମା ଖୁଡ଼ୀ
ତା ଛଚନା ନୋଳ ପଦକେ ଜଣା     ,,
ତାଳଚେର ଗଡ଼ ପଡ଼ିଆ ସୁନା ।     ମା ଖୁଡ଼ୀ
ବାରି ବାଇଗଣ ପତର ଟେକା     ,,
ମୁଇଁ ହୋଇଥିଲ ମାଆକୁ ସଖା ।     ମା ଖୁଡ଼ୀ
ମାଆ ଯେତେବେଳେ ପଡ଼ି ରହିବ     ,,
କରକ ମାଉଁସ ଉଇ ଖାଇବ ।     ମା ଖୁଡ଼ୀ
ବାରି ବାଇଗଣ ରାଇ ନ କଲ     ,,
ଛେମୁଣ୍ଡି ଛୁଆକୁ ନାହିଁ ନ କଲ     ମା ଖୁଡ଼ୀ
ଛେମୁଣ୍ଡି ଛୁଆ ତ ବୁକର ଖାଦ     ,,
ହେଜ ଆଣୁଥିବ ଗୋଡ଼ର ମୁଦ ।     ମା ଖୁଡ଼ୀ

ଯାଜପୁର ଗୁଆ ତା ମୁଣ୍ଡି କଷା     ମା ଖୁଡ଼ୀ
ଲକ୍ଷ୍ମୀ ସଙ୍ଗେ ପ୍ରଭୁ ଖେଳନ୍ତି ପଶା     ,,

Digitized by srujanika@gmail.com

ପଶା ଖେଳ ପଶା ହାରିଲ ବେଳେ     ମା ଖୁଡ଼ୀ
ଗଜ ଡାକଦେଲ ଗମ୍ଭୀର ଜଳେ ।     ,,
ତା ଡାକକୁ ବାପା କର୍ଣ୍ଣ ଡେରିଲେ     ,,
ମୋ ଡାକକୁ ବାପା ବନ୍ଧ ମଣିଲେ ।     ମା ଖୁଡ଼ୀ

କଇଁଆ ଗଛରେ ଡାହୁକ ବସା     ,,
ଇନ୍ଦ୍ର ସାଜିଲାଣି ହବ ବରଷା ।     ମା ଖୁଡ଼ୀ
ଇନ୍ଦ୍ରରୁ ବରଷା ଛୁଡ଼ି ଗଲାଣି     ,,
କଂସ ତ ବାରତା କହି ଗଲାଣି ।     ମା ଖୁଡ଼ୀ
କଂସେଇ ଆଣିଛି ଶୂନ୍ୟରେ ଗାଡ଼ି     ,,
ଏକାକ୍ଷ ପବନ ନବ ଘଉଡ଼ି ।     ମା ଖୁଡ଼ୀ
ଧାଇଁ ଆସିଥିବେ ତୋ ମାତା ଖୁଡ଼ୀ     ,,
ସୁଆଙ୍ଗ ଭିତରୁ ନେବେ ଉପାଡ଼ି ।     ମା ଖୁଡ଼ୀ
କବାଟ କଣେ ଲେ କଣେ କରିବେ     ,,
ଆଙ୍ଗୁଠି ସନ୍ଧିରୁ ମଳ କାଢ଼ିବେ     ମା ଖୁଡ଼ୀ
ଦଶ ଶିର ମୋର ଭେଦାଇ ଦେବେ ।     ,,

ଦୂବ ଛନ ଛନ କାକର ବେଳେ     ମା ଖୁଡ଼ୀ
ରଖି ଥିଲ କାନ ପଣତ ତଳେ     ,,
ଛୁଡ଼ିଦେଲ ଖରା ଗ୍ରୀଷମ କାଳେ ।     ,,
ଅଲେଖା କାଗଜ କାନ୍ଥରେ କାଳି     ,,
ଶତ୍ରୁଙ୍କ ତଳେ ମୁଁ ଯିବ ମଉଳି ।     ମା ଖୁଡ଼ୀ
ପର୍ବତରେ ଅଗ୍ନି କୁଣ୍ଡ ଖୋଳିଲ     ,,
ଘିଅ ବହୁନେ କି ଆହୁତି ଦେଲ ?     ମା ଖୁଡ଼ୀ
ଶ୍ରୀ ମୁଖ ଝାଳ ଯା ଶିରେ ଭେଦିବ     ,,
ପାତାଳେ ପୂରିଇ ମତେ ଜାଳିବ ।     ମା ଖୁଡ଼ୀ

ପର୍ବତ ଶିଖରେ ଲେଣ୍ଡି ଘୁଙ୍ଗୁର     ହେ ନନା
ହାତ ପଶାଖେଳ ହୁଏ ଆମ୍ଭର     ହେ ନନା

Digitized by srujanika@gmail.com

ଢଙ୍କେନା ପଶାଖେଳ ନନା ଦେଖିଲେ — ହେ ନନା
କଂସେଇ ଘରକୁ ପତ୍ର ଲେଖିଲେ — ହେ ନନା
ସେ ପତ୍ର ଲେଖାକୁ ପିତା ଥାଆନ୍ତେ — ହେ ନନା
ସଙ୍ଗେ ସଙ୍ଗେ ପତ୍ର ଚର ଦଅନ୍ତେ — ହେ ନନା
ଛଅ ଦେଉଳରେ ଛଅଟି ଋଷି — ହେ ନନା
କେଉଁ ଦେଉଳରେ ମୋ ପିତା ଅଛି ? — ହେ ନନା
ପିତା ଦରଶନ ସାତ ସପନ — ହେ ନନା
ତୁମ୍ଭ ଦରଶନ ପାଦେ-ଶରଣ — ହେ ନନା

ବଡ଼ ଦେଉଳରେ ମାଲ୍ୟାଣି ଥିଲା — ହେ ନନା
ହସ୍ତେ ପାଣି ତ ଲ ଧରେଇ ଦେଲା — ହେ ନନା
ଭଙ୍ଗା ଖଟଠାକୁ ପକେଇ ଦେଲା — ହେ ନନା
ଛିଣ୍ଡା କମ୍ବଳକୁ ବିଛେଇ ଦେଲା — ହେ ନନା
ପାନ ପାଞ୍ଚଖଣ୍ଡ ଭାଙ୍ଗି ଆଣିଲା — ହେ ନନା
ଯୋଡ଼ ପାନଖଣ୍ଡ ଲବଙ୍ଗମରା — ହେ ନନା
ସେ ପାନ ଖଣ୍ଡରେ କି ମନ୍ତ୍ର ଥିଲା — ହେ ନନା
ପାନଖାଇ ନନା ଭୁଲି ପଡ଼ିଲା । — ହେ ନନା
ସଢ଼କ ତଳଆ ପାନ ମହୁସା — ହେ ନନା
କେତେ କେତେ ପୁଣି ଗଲେଣି ଫେରି — ହେ ନନା
ସେଠା ଥିଲା ବିଷ ଝାଡ଼ିବ ବୋଲି । — ହେ ନନା
ବାଡ଼ି ଆମ୍ବଗଛ ପାକଲା ପଡ଼େ — ହେ ନନା
ନନା ଯୋଉପାଖେ ବାନ୍ଧିବ ଲୋଡ଼େ — ହେ ନନା
ବୋଉ ମାଆଙ୍କର ହାତ ନ ବୋଡ଼େ । — ହେ ନନା
ମାଠିଆ ଭାଙ୍ଗିଲେ ଚୂନ ଖପରା — ହେ ନଗା
ପଞ୍ଚନ୍ତେ ଶୁଣିବ ବନ୍ଧୁ ନେକରା । — ହେ ନନା
କୁଡ଼କୁ ମାରିଲା ଭ୍ରମର ପୋକ — ହେ ନନା
ଜୀବ ମାରିବାକୁ ସେ ଘର ଲୋକ — ହେ ନନା
ଜୀବ ମାରି ଜୀବ ଛପେଇ ଦେବେ — ହେ ନନା

Digitized by srujanika@gmail.com

ସଂସାର ମରଣ ମଲା କହିବେ । ହେ ନନା
ବନ୍ଧ ହୁଡ଼ାରେ କି ହରଡ଼ ଗଜା ହେ ନନା
ତା’ ବଡ଼ ପୁଅ ପଖଜବଜା ହେ ନନା
ପଖଜ ବଜାରେ ହାରିବ ନାହିଁ ହେ ନନା
ମାତା ପିତା ବୋଲ ମାନିବ ନାହିଁ । ହେ ନନା

ସୁବର୍ଣ୍ଣ ଥାଳୀରେ ଘିଅ ସକତା ହେ ନନା
ନାହିଁ କଲେ ଘୁର କଣ କରନ୍ତା ? ହେ ନନା
ସଜନା ଗଛରେ ଲାଗିଛି ଜରି ହେ ନନା
ଥରେ ଝୋକା ଆସି ଯାଇଛି ଫେରି ହେ ନନା
ଫେ’ରେ ଆସିଲା ଜଗର କରି ହେ ନନା
ଧାନ ଶୁଖିଗଲା ଢିଙ୍କିଶାଳକୁ ହେ ନନା
ପୁ’ଣି ଆସିଲା ନନା ଗୋଡ଼ ତଳକୁ । ହେ ନନା
ତା ଖନ୍ଦା ଘରେ ଚୂନ ଥାଳଆ ହେ ନନା
ତା ବଡ ଝିଅ ବଡ ମାଇପୁ ହେ ନନା
ସତିକି ମାରଇ ଫୁଲ ଝାହିଆ । ହେ ନନା
ନଣ୍ଡକି ସାଜଇ ଚେକା ପଥର ହେ ନନା
ନନାକୁ ସାଜଇ ସତ୍ତୁ ଗୃଦର ହେ ନନା
ନଣ୍ଡରେ ଯେପରି ସୁଲ ଭସଇ ହେ ନନା
ସେହିପରି ମତେ ଦେଲ ଭସାଇ ହେ ନନା
ପାକଲା କଇଥ ପୁଷି ମିଠେଇ ହେ ନନା
ମତେ ସେହିପରି ଦେବ ପଠେଇ । ହେ ନନା
କମିଅର ଫୁଲ ଅଗ ଡାଳକୁ ହେ ନନା
ମୁଁ ତ ଖାଉଥିଲି ପାଞ୍ଚ ବେଳକୁ ହେ ନନା
ପାଞ୍ଚ ଜଳଖିଆ ପାଞ୍ଚ ଭୋଜନ ହେ ନନା
ବାସି ପାଇଟିରେ ଯିବ ମୋ ଦିନ । ହେ ନାନା
ପିତା ଫଳ ବୋଲି ଗୁଣ୍ଡିଣ ଦେଲ ହେ ନନା
ପଚୁ ମାଛ ପ୍ରାୟେ ଯାଚି ବୁଲିଲ ହେ ନନା

Digitized by srujanika@gmail.com

ସାତ ସମୁଦର ମଝିରେ ଲଙ୍କା ହେ ନନା
ଛନକା ପୁରକୁ ଯିବ ତ ଏକା । ହେ ନନା
ସାପ ଶୋଇଥିଲେ ବାଙ୍କେ ବୁଲିବ ହେ ନନା
କଣ୍ଟା ପଡ଼ିଥିଲେ ଆଡ଼େଇ ଦବ । ହେ ନନା
ଥାଳୀ ପେଲି ଦେଲେ ଥାଳୀ ଗୁଳିବ ହେ ନନା
ତୁମ୍ଭ ଦଣ୍ଡରେ କଏ ଗୁଳିବ ? ହେ ନନା
ନେଇକି ପେଲିଦେଲି ଝାଡ଼ ଗଳିକି ହେ ନନା
ମତେ ପେଲିଦେଲି ଅରଗଳିକି । ହେ ନନା
ଝାଡ଼ ଗଳି ନୁହେ ଝାଡ଼ ବନସ୍ତ ହେ ନନା
କିପରି ବଳିଲି ତୁମର ସତ ? ହେ ନନା
ଘଡ଼ର କଳସ ବମ୍ପା ଖାଉଛି ହେ ନନା
ଝିଅ ଖାଇଲେ କି ସର ପାଉଛି ? ହେ ନନା
କେତେ ଖାଉଛନ୍ତି ଦୁନିଆ ଲୋକ ହେ ନନା
ଝିଅ ଖାଇଲେ କି ପାଇବ ଦୁଃଖ ? ହେ ନନା
କାଳୀ ଗାଈ କ୍ଷୀର ଲୋଟା ବାହାର ହେ ନନା
ସଂସାର-ସାକର ନିନ୍ଦ ମୋହର ହେ ନନା
ତା ମାଆ ଡାକୁଣୀ ଉଠି ପଡ଼ିବ ହେ ନନା
ଝପ ଝମ ନେତ୍ର ପକେଇଦବ ହେ ନନା
ଚନ୍ଦନରେ ଲେଣ୍ଡା ଗାର ଆଣିବ ହେ ନନା
ଗାଆଁ ପାଞ୍ଚଜଣ ଡାକି ଆଣିବ ହେ ନନା
ଭୁଆସୁଣୀ ଢଙ୍ଗ ଦେଖି କହିବ । ହେ ନନା

ଦୁଆର ମୁହଁରେ ଦେଖା ଚଉରା ହେ ନନା
ମତେ କି ନ ଦେଲି ଷଣ୍ଢ ମହୁରା ? ହେ ନନା
ଦୁଆର ମୁହଁରେ କଳା ତୁଳସୀ ହେ ନନା
ମତେ କରିଥିଲ ହାତ ବାରସି ହେ ନନା
ହାତ ବାରସିକି ମ'ର କଲି ହେ ନନା
ଚିଠିରି ନଣନ୍ଦ ପିଠେଇ ଦେଲି । ହେ ନନା

Digitized by srujanika@gmail.com

ସଜନା ଗଛରେ ମୁଗୁନା ଛୁଇଁ — ଖୁଡ଼ୀ
ତୋ ଝିଅ ସମାନେ ଝିଆରୀ ମୁଇଁ — ”
ମତେ ହୀନମାନ କରବ ନାଇଁ — ”
ମତେ ହୀନମାନ ଯେବେ କରବ — ”
ବ୍ରାହ୍ମଣୀରେ ତାଲେ ପାଣି ବଢ଼ିବ — ”
ବାଙ୍ଗ୍‌କନସିର ମଜଲି ଯିବ — ”
ମାତା ଯେତେବେଲେ ଅବୁଝା ହବ — ”
ତୁମେ ପାଞ୍ଚଜଣ ବୁଝାଉ ଥିବ । — ”
ଶିଳ ତଳେ ଗଲ୍ ହଳଦୀ ପାଣି — ”
କାଢ଼ି ନ ଜାଣିବ ଗରାରେ ପାଣି — ”
ମାକୁଣୀ କହବ ନଷ୍ଟୁର ବାଣୀ — ”
ଗରା ଯେତେବେଲେ କରୁଢ଼ ଦବ — ”
ଦଶ ଶିର ବାରେ ବଥା ଆସିବ । — ”
କଇଁଆ ପଟର ଯୋଡ଼ିକ ଯୋଡ଼ — ”
ଅନ୍ୟ ରାଜ୍ୟ ପାରା ଆସିଲ୍ ଉଡ଼ — ”
ତା ଗୋଡ଼େ ଲଗିଲ୍ ଲୁହା ଝଞ୍ଜିର — ”
ମୋ ଗୋଡ଼େ ଲଗିଲା ଯମର ଡୋର । — ”
ଯମର ଡୋରରୁ ଖିଲ ଫିଟିଲା — ”
ସତେ ଆମ ଗାଆଁ ଆଲୁଅ ହେଲା ! — ”
ଲକ୍ଷ୍ମୀ ଠାକୁରାଣୀ ମୋ ମାତା ତୁହ୍ମ — ”
ଗଯ୍ଳା ତୁଲସୀର ଝାଣିଜ ମୁଇଁ — ”
ସରୁ ସରୁ ଚୁଡ଼ି ରେଶମୀ ଚୁଡ଼ି — ”
ବୋଉ ପର କେଶ କେ ଦେବ ଯୋଡ଼ି ? — ”
ଛ’ ମାସରେ କେଶ ଫିଟିବ ନାଇଁ — ”
ବରଷକେ ତେଲ ବାଜିବ ନାଇଁ — ”
ଖୋ’ଲ ବଣେଇ ତେଜ ପଟର — ”
ଫକୁ ମାରିଗଲା କେଶ ଭିତର — ”
କାଠ କୂଅ ପାଣି ଦଉଡ଼ା ହାତେ — ”

Digitized by srujanika@gmail.com

ମାଆ ଯୋଉ ପଟେ ଦେଇଚ ମତେ — ଖୁଣ୍ଡୀ
ଜୀବ ରଖିବାକୁ ନାହିଁ ପରତେ । — ,,

## କାନ୍ଦଣା

( ବାଲେଶ୍ୱର )

ଆଜୁ ପତରଆ ମହଣ ପାନ — ଲୋ ବୋଉ
ବୁଲିବା ସରିଲ ଗୋପଭୁବନ — ଲୋ ବୋଉ
କେତେ କରିଥିଲୁ ସ୍ନେହ ଅପାର — ଲୋ ବୋଉ
ଧ୍ରୁବ ପରି ଘୋର ବନେ ପେଶିଲୁ — ଲୋ ବୋଉ
ଅତି ସୁକୁମାର ପାନ ପତର — ଲୋ ବୋଉ
ଜଳାଇଲ ତାକୁ ଚୂନ ସାଥିର — ଲୋ ବୋଉ
ଖଳକାଣ୍ଡ ଗୁଆ ବାଜିଲ ଘର — ଲୋ ବୋଉ
ଦାନବ ରାକ୍ଷସୀ ମୋହର ଶିଶୁ — ଲୋ ବୋଉ
ହସ୍ତୀକୁ ଜାଳିଲୁ ଲୁହା ଗଡରେ — ଲୋ ବୋଉ
ଜାଳିଲୁ ତୁ ମୋତେ ଲଙ୍କାପୁରରେ — ଲୋ ବୋଉ
ହସି ହସି ଯେଉଁ କଥା କହିବ — ଲୋ ବୋଉ
ମୋର ଦଣ୍ଟିର ଭେଦାଇ ଦେବ — ଲୋ ବୋଉ

ତୁମପରି ସ୍ନେହ କେ ଥିବ ଜାଣି, — ହେ ମୋ ନୂଆବୋଉ
କ୍ଷୁଧାବେଳେ ଅନ୍ନ କେ ଦେବ ଆଣି — ,,
ଅରୁଆ ଚାଉଳ ଗଣ୍ଠିଆ ଛୁଇ — ,,
ମୋ ପ୍ରତି ନିଠୁର ମୋ ବାପା ଭାଇ — ,,
ଦକ୍ଷିଣ ସାଗର ମଞ୍ଜି ପତର — ,,
ପବନ ବହିଲେ ସେ ନାରଖାର, — ,,
ବନରେ ଫୁଟଇ ବନ ମାଧୋଇ — ,,

Digitized by srujanika@gmail.com

ସାଙ୍ଗ ହୋଇ ଯିବ କଏ ଗାଡ଼ଧୋଇ — ହେ ମୋ ନୂଆବୋଉ
ବନରେ ଫୁଟଇ ବନ ମାଳତୀ — ,,
ନ ଭୁଲ ପାରିବ ତୁମ ପୀରତି — ,,
ବନରେ ଫୁଟଇ ବନ ତଗଟି — ,,
ସାଙ୍ଗ ସାତଖିଆ ବଡ଼ ଉଚ୍ଛାଟ — ,,
ସେ ଲଙ୍କା-ପୁରର ଲଙ୍କା ଅସୁର — ,,
କହିବ ତ କଥା ମୁଖ ବନ୍ଧାଣ — ,,
କଟୁ ବଚନରେ ହୃଦ ଦହିବ — ,,
ତୁମ ସ୍ନେହ ମୋର ହୃଦେ ରହିବ — ,,
ସଞ୍ଜୁଆଣି ତାର ମୁଁ ଦେଖି ନାଇଁ — ,,
ପାହାନ୍ତିଆ ତାର ରହିବ ଚୁହିଁ — ,,
ପାହାନ୍ତାରୁ ସନ୍ଧ ଉଚ୍ଛୁର ହେବ — ,,
ପାଞ୍ଚ ସାତ ଜଣ ଡାକି ଆଣିବ — ,,
କହିବ ତ କଥା ମୁଖ ହଲାଇ — ,,
ମୁଁ ତ ପୂଜି ନାହିଁ ମୋ ମାତା ପିତା — ,,
କିପରି ପୂଜିବ ଅନ୍ୟ ଦେବତା — ,,
ମୁଁ ତ ସହିନାହିଁ ଫୁଲର ଭାର — ହେ ମୋ ନୂଆବୋଉ
କିପରି ସହିବ ପଥର ଭାର — ,,
ବାଟରେ ଭେଟିଲ ବାଟ ପଳାଶ — ,,
କରିବ ବାଷ୍ଟାସୁଣୀ ମୋର ସରି ଜିଜ୍ଞାସ — ,,
ହସି ହସି ସେଉଁ କଥା କହିବ — ,,
ମୋର ଦଶଶିର ଭେଦାଇ ଦେବ — ,,

Digitized by srujanika@gmail.com

## କାନ୍ଦଣା

( ଢାମଣ୍ଡା )

କାହ୍ନର ପିନ୍ଧୁଲା ବୃକ୍ଷର ଛାଇ ହେ ଖୁଣ୍ଡୀ
ରଣ ଯୁଦ୍ଧବେଳେ କକେଇ କାହିଁ ହେ ଖୁଣ୍ଡୀ
ରଣ ଯୁଦ୍ଧବେଳେ କକେଇ ଯଦି ମୋ ବସି ଥାଆନ୍ତେ ଲୋ ଖୁଣ୍ଡୀ
ଖଣ୍ଡ ଛଅମୁଣ୍ଡା ପଥର ମୁଣ୍ଡାଏ ଛାଡ଼ ଥାଆନ୍ତା ,,
ତେବେ ମୋ କକେଇ ଜବାବ ଦେଇ ଥାଆନ୍ତେ ,,
ଅଲଗୁଣ୍ଡି ଲୁଗା ଭଳକ ଭଳ ,,
କକେଇ ଅଛୁକ କରବ ଅଳ ,,
କୁଞ୍ଜ ହଜାଇଲ ସମୁଦ୍ର ତଳେ ,,
କକେଇ ଖାଇଲ ଅଜ୍ଞାନ ବେଳେ ,,
ଯାଜପୁର କଂସା ଓଲଟା କମ ,,
ଦାଣ୍ଡ ଦରଜାରେ ବସିନ ଯମ ,,
ଓଲଟା କମକୁ ମାଜିଲେ ଯିବ ,,
ଯମ ଆସିଲାଣି ନେଲେ ଛାଡ଼ବ ,,
ରଥକୁ ଲଗିଲ ରଥ ଦଉଡ଼ ,,
ଯମର ଲଗିଲ ମୋ ଠେଇଁ ରଡ଼ ,,
ନରେନ୍ଦ୍ର ପୋଖରୀ ନଅ ପାହାଚ ,,
ଆଜିଠୁଁ ଲଗିଲ ଗଳାରେ ଫାଶ ,,
ଗଳା ଫାଶ କଲ ଗୋଡ଼ ଶାଙ୍କୁଳ ,,
ନଷ୍ଟ ଲଗରେ ଧନ କାଟିବ ବୋଲ ,,
ଗଜା ଆମ୍ବ ତୋଟା ପତର ସରୁ ,,

Digitized by srujanika@gmail.com

ମଣିଷ ଟ୍ରେଞ୍ଚିଆ ବଚନ ସରୁ — ଲେ ଖୁଡ଼ୀ
କଳାକେଶ ଧାନ ଲଆକୁ ବାଇ — ,,
ବୋଲେ ସେ ଛତରା କଥାକୁ ବାଇ — ,,
ଅନ୍ତ ଆରତରେ, ବସୁଦେବ ଘରେ,
ବସୁଙ୍କ ପତ୍ନରେ, କୃଷ୍ଣଙ୍କ ନାମରେ,
ଶହେ ଜନମରେ ମୋର ଜନମ — ,,
ଏବେ ଛୁର କେଳାଘରେ, ହାଡ଼ ଘଡ଼ିଆରେ,
କୋଇଲେଖିଆରେ, ନରାଠ ଖରାରେ ଶଶ୍ମାନ
ଭୂମିରେ ହେବ ମରଣ — ଲେ ଖୁଡ଼ୀ
ସପନ ଦେଖିବି ରାତ୍ତ ଗୋଟାଏ — ,,
ତୁମକୁ ଦେଖିବ ଥାଜ ଘଣ୍ଟାଏ — ,,
ସପନ ଦେଖିଲେ ସତ କହିବ — ,,
ତୁମକୁ ଖୋଜିଲେ କାହୁଁ ପାଇବ ? — ,,
ବାଗ ପୋକସୁଙ୍ଗା ମର ପଡ଼ୁଛି — ,,
ମତେ ତ ସଙ୍କଟ ମାଡ଼ ପଡ଼ୁଛି — ,,
ବାଗ ପୋକସୁଙ୍ଗା ଜୁଡ଼ିଆ ପର — ,,
ମତେ ନ ଆଣିବ କୁଣିଆ ପର — ,,
କଣି କରମଙ୍ଗା ହେଙ୍ଗୁ ଆଗୁର — ,,
କଂସେଇ ହୃଦରେ ନାଇଁ ବଗୁର — ,,
କୋଇଲ ଝୁରଇ କୁଞ୍ଜବନକୁ — ,,
ମୁଁ ତ ଝୁରୁଥିବ ତୁମ୍ଭମାନଙ୍କୁ — ,,
କୋଇଲ ବୋବାଏ ଜଜାଙ୍ଗ ଡାଳେ — ,,
ମୁଁ ତ ଝୁରୁଥିବି ରୋଧଇ ଶାଳେ — ,,

କଉ ଖେଳଗଲେ ସିମୁଳି ମୂଳେ — ଲେ ହେ ନୁଆବନ୍ଧୁ
ମୁଁ ତ ଖେଳୁଥିଲ ମାତାଙ୍କ କୋଳେ — ,,
ଦେବ କୁଟେକଲ ସୀତସ୍ତା ପାଇଁ — ,,
ତୁମେ କୁଟ କଲ ମହର ପାଇଁ — ,,

Digitized by srujanika@gmail.com

ସୀତାଙ୍କୁ ଅସୁଖ ଘଟିଲା ଘର ହେ ନୂଆ ବନ୍ଧୁ
ସେହିପରି କଂସ ରହିବେ ଘେରି ,,
ଉଇଁଲାଣି ମେଘ ହୋଇ କ ଯିବ ,,
ଆସିଲାଣି କଂସ ନେଇକି ଯିବ ,,
ଡେଙ୍ଗା ତାଳଗଛ ତଳକୁ ଛୁଇ ,,
ମୋତେ ଆସେନାହିଁ ଗୁଜୁଳ ଧୋଇ ,,
ଡେଙ୍ଗା ତାଳ ଗଛ ବାଇ ବରଡ଼ା ,,
ମୋତେ ଆସେ ନାହିଁ ଶାଗ ଖରଡ଼ା ,,

ହଳଦ୍ଧ ଚାଟିଆ ସେ କୋଟି କମ ହେ ନୂଆ ବନ୍ଧୁ
ଦୂର ବାଟ ଚଲା ପତଲା ଚମ ,,
କଟକା ଫାରୁଆ ସେ କୋଟି କମ ,,
କଟକରୁ ପାଗ ଆସୁଛି ଉଡ଼ି ହେ ,,
ତା ଗୋଡ଼େ ଲାଗିଛି ସୁନା ଝଞ୍ଜିରି ,,
ମ ଗୋଡ଼େ ଲାଗିଛି ଶ୍ରୀ କୃଷ୍ଣ ବେଡ଼ି ,,
ଶ୍ରୀ କୃଷ୍ଣ ବେଡ଼ିରୁ ଖିଲ ଖସିବ ,,
କାଶୀ ବୃନ୍ଦାବନ ମୋତେ ଦିଶିବ ,,
କରଛି ମ ବାପା ପକାରେ କୋଠା ,,
ପକା ଧୂଇ ଦେଲେ ସଫା ଦିଶିବ ,,
ନୀଳ ଗିରି ରଥ ନୀଳ ଭୁବନ ,,
ବାରିପଦା ରଥ ଇନ୍ଦ୍ର ଭୁବନ ,,
ବାରିପଦା ରଥ ବାର ବିମାନ ,,
ତା ସଙ୍ଗେ ଚଲଇ ଚନ୍ଦ୍ର ବଦନ ହେ ନୂଆ ବନ୍ଧୁ
ମ ସଙ୍ଗେ ଗଲଇ ଶୂନ୍ୟ ପବନ ,,
ମକୁ ଶୁଭ୍ର ଦିଏ ମିଠେଇ ଦୁନା ,,
ମତେ ଶୁଭ୍ର ଦିଏ କାଳିଆ ସୁନା ,,
କାଳିଆ ସୁନା ତ ତିନି ମୂରତି ,,
ଅଯୁଦ୍ଧା ପୁରରେ ଯୁଦ୍ଧ କରନ୍ତି ,,

Digitized by srujanika@gmail.com

ସେହ୍ନ ଯୁଦ୍ଧି ଯଦ ବାପା କରନ୍ତେ — ହେ ନୂଆ ବନ୍ଧୁ
କଂସେଇ ପୁରରୁ ମତେ କାଢ଼ିନ୍ତେ — ,,
ସୀତାଙ୍କ କଷଣ ବାର ବରଷ — ,,
ମହର କଷଣ ସାରା ବରଷ — ,,
ଉଡ଼ ଯାଉଥିଲ ଉଡ଼ା ଯାହାଜ — ,,
ସେ ଯାଇଁ ପଡ଼ଲ ମଝି ନଈର — ,,
ମଝି ନଈରୁ ସେ ଶୁଣି ପାରିଲେ — ,,
ଗେଡ଼ ପଲ ଠଙ୍କା ଛତର ଦେଲେ — ,,
କେତେ ଦିନ ସୀତା ବନକୁ ଗଲେ — ,,
ତାଙ୍କର ମିଆଦ ଚଉଦ ମାସ — ,,
ମହର ରୁହେଣି ଚଉଦ ମାସ — ,,
ମହର ରୁହେଣି କଲେ ନାଶ — ,,

ବାରଆଡ଼େ ସେଉ କଦଳୀ ଉଧି — ମୋର ବୋଉ
ମୁଁ ଛୁଡ଼ନାହିଁ ପିଲାର ବୁଧି — ,,
କାଉ ଭେଲା ଭେଲା ଆମ୍ଭ ତୋଠାରେ — ,,
ମୋର ଭେଲା ଭେଲା ଗାଧୁଆ ତୁଠେ ଲୋ — ,,
ନାଲି ସଡ଼କରେ ନାଲି ଅରଖ — ,,
ମୁଁ ଚୂଲଗଲେ କେବେ ପରଖ — ,,
ହାତେ ମାପି ଚୂଖଣ୍ଡେ ଚୂଲବଟି — ,,
ତାଟିଆରେ ଦେଲ କଲସୀ ରଇଲେ — ,,
ଭୁବନେଶ୍ୱରରେ ତାର ବେପାରଟି — ,,
କାପି ଟେଲ ଠଙ୍କା ବାଇ କରୁଛନ୍ତି — ,,
ସେ ଘର ମାଇପେ ଭଲ କି ଭଲ — ,,
ଚୂଲ ଗଲେ ସବୁ ନେବେ ପରଖି — ,,

Digitized by srujanika@gmail.com

# କାନ୍ଦଣା

( ଜଣେଇ )

ମୋ ବାପା  ଏତେକଇ ଥାଳରେ ଚେକେଇ ପାନ
ଦେବାର ନଥିଲା କାହାର ମନ
ଭୁଲ କ ପଡ଼ଲ ରଜା ରାଉତଆ ବାପାର ମନ  ମୋ ବାପା
ଥାଳ ଫିଙ୍ଗିଦେଲ ଘାଡ଼ ତଳକୁ
ମୋତେ ଫିଙ୍ଗିଦେଲ  ଦୂର ଦେଶକୁ
ଦୂର ଦେଶ ପାଣି ହିମ କାକର
ମୋତେ ଲେଖିଦେବ କଳା ଅକ୍ଷର  ମୋ ବାପା

ସୁରୁକ ଚକୁଳ ମଥାରେ ଘିଅ
ଆଉ କ ଦେଖିବ କୁଠାରେ ଝିଅ ?  ”
ଯାହା ଦେଖିଥିବ ଆଜି  ଏତକ
ସପନ ଭେଟିବ ଅଧା ରାତକ
ସପନ ଦେଖିବେ ଗୁସ୍ସା ଭୁଞ୍ଜିବ
ମୋହ ପରି ଜଣେ କାହିଁ ଦେଖିବ ?  ”
କାଗଜ ପିତୁଳା ନେଇ ରଖିବ
କାଗଜ ପିତୁଳା ନଭିଲେ ଯିବ
କୁଢ଼ର ପିତୁଳା ଝଟକୁ ଥିବ  ମୋ ବାପା

ଉଠେ କଳାମେଘ ଭାଙ୍ଗେ ଦେଉଳ
ଦେଉଳ ପଛକେ ଭାଙ୍ଗି ଥାଇଣ
ଦଶଘ ଖନ୍ଦାରେ ମୋହ ଖେଳଘର ରହି ଥାଇତା ମୋ ବାପା

Digitized by srujanika@gmail.com

ଚାଣ୍ଡ ଖାଇଗଲ୍ କଅଁଳ ଘାସ
ମୋ ବାପା ଦେଖି ନାହିଁ ଡେଂଗ ଉଆସ
ଡେଙ୍ଗ ଉଆସରେ ପପୁର ଝୁଣ୍ଟି
କଉ ନଷପଣ୍ଡ ସାଧବ ଦେଖି
ବାପା କ ସାଧବ ହଳିଆ ଗୁହାଟିର ମାଇଲେ ଟଣ୍ଟି
ହଳିଆ ଜାଣଇ ହଳ ବେର୍‌ହାକ
ମୁଁ ଗୁହିଁ ରହ୍‌ଥିବ ପରମାଣକ
ପରମାଣକ କ ସଜ ବଚସ୍ତ
ମୋ ଖଣ୍ଡାଖାଇ ଶାଶୁ ସକାନ୍ତୁ ଉଠିଲେ
ଦେବେ ଯନ୍ତ୍ରସ୍ତ ମୋ ବାପା

ମୋ କକା

ଆଣ୍ଟୁଏ ପାଣିରେ ସମର ଠିଆ
ବାଛ ବନ୍ଧୁ କଲ ଭଲ ଲୁକଆ
ଭଲ ଲୁକଆର ସଂସାର ସାର
ତମ ଉଲ ଚହ୍ନି ନ ଜଲେ ତାର ହେ କକା
ଆଣ୍ଟୁଏ ପାଣିରେ ସୁଛୁ ଜାଗର
ମୋ କକାଙ୍କ ଖାନ୍ଦରେ ନାଲ ଗୁଦର
ନାଲ ଗୁଦର କ ନାଲ ପେରକ
ମୋହ ଡାକ ହାକ ଚଉବନ କୁଠା
ଚଉପାରକ ମୋ କକା

ମୋ ଭେଣେଇ

ସୀତା ଆମ୍ବଗଛ ଡାହ ମେଲବ
ଯଦର ଭୁମର ଚଉ ମିଳିବ
ଦଶକ ଦନକୁ ଭୁଲିଆ ପିଣ୍ଡାରେ
ଛଟା ଡେଇବ ମୋ ଭେଣେଇ

ମୋହ ନାମ ଧର ଡାକେ ଡାକବ
ମୁହିଁ ବସିଥିବ ବେଷାଇ ଶାଟେଲ
ବାହାର ଆସିବ ଅନ୍ତ ବକଲେ

Digitized by srujanika@gmail.com

ହସ୍ତ ଟେକଦେବ ମଥାକୁ ନେଇ
ମୋ ଲୁହ ପଡ଼ିବ ତୋ ପାଦେ ଯାଇ
ଭଲ ହୋଇଥିଲେ ଅନ୍ନ ବାଢ଼ିବ
ମନ୍ଦ ହୋଇଥିଲେ ତମ ପାଦ ତଳେ ଲୁହ ଢାଳିବ ମୋ ଭେଣେଇଁ
ବାଟ ବରଗଛ ଝପର ଝାଇଁ
ତୁମେ ଗୋ ମୋହର ଜ୍ୟେଷ୍ଠ ଭେଣେଇଁ
ଅନ୍ତ ସ୍ନାନମାନ କରିବ ନାହିଁ
ଅନ୍ତ ସ୍ନାନମାନ କରିଲେ ମତେ
ନିର୍ଲଜ ଜୀବନ ରଖିବ କେତେ ମୋ ଭେଣେଇଁ

ମୋ ନାନୀ

ଗୁଲୁଣିରେ ପାଣି ଗଳାଉ ଥିଲ
ତୋ ସୁନା ଫୁଲକୁ ଖେଳାଉ ଥିଲ
ଗୁଲୁଣୀରେ ପାଣି ଥିର ହୋଇଲା
ତୋ ସୁନା ଫୁଲର ଖେଳ ରହିଲା ମୋ ନାନୀ
କାଠ ଦୁଇଖଣ୍ଡ ଚୁହ୍ଲି କ ସେଖା
ମୁଇଁ ହୋଇଥିଲ ମାଆକୁ ସେଖା
ମାଆ ହୋଇଯିବ କେତେ ନିସଖା ମୋ ନାନୀ

ମୋ ଯାଙ୍ଗ ସରସେ !

ଗୁଲ ଗାଧିଯିବା ମହାନଦୀ କ
ବାଟରୁ ଭାଂଗିବା ରାଣୀ କାଠିକ
ତୁମ୍ଭ ରାଣୀ କାଠି ତୁମ୍ଭେ ଘସିବ
ମୋ ରାଣୀ କାଠି ଆଣ୍ଠିଏ ପାଣିରେ
ଜଳେ ଭାସିବ ।
ଆମେ ଯଉଁକରେ ଯାଉ କ ଥିଲେ
ଉହିଁଲର ବେଳେ ବୁଡ଼ଉ ଥିଲେ
ଏଠୁ କ ଏଣିକ ଯେ କରେ ଯିବା
ଉଇଁଲର ବେଳେ ଗୁହିଁ ରହିବା ମୋ ନାନୀ

Digitized by srujanika@gmail.com

ମୋ ମାଆ —
ବୁଡଲରେ ମନ୍ଦ୍ର ବୁଲୁ ନଥିଲ
ରାଇଜରେ ବନ୍ଧୁ ମିତ୍ର ନଥିଲ
ସେ ବନ୍ଧୁ ମିଳିଲ ରାଜ୍ୟ ମଣ୍ଡଳେ
ମୋତେ ଯାଚି ଦେଲ ଚଣ୍ଡାଳହାତରେ

ସେହିକ ଚଣ୍ଡାଳ ବୃକ୍ଷର ବାଣୀ
ଦେଖୁଥାଏ ବନ୍ଧୁ ନନ୍ଦଏ ପାଣି
ଚଣ୍ଡାଳ ହସ୍ତରେ ପଇଲେ ମୁହିଁ
ଚଣ୍ଡାଳ ବୋଲିବ ବାମୁଣ୍ଡା ଗଡ଼ର ହାକିମ ମୁହିଁ ମୋ ମାଆ ।
ହାତ ପାପୁଲିରେ ଲାଗିଲ ଜଙ୍କ
ସୁନା ଆଣିଚପେ ତଉଲ ଦେଖ
ଯଥିରି ସୁନା କ ଊଣା ହୋଇବ
ତା ବଡ଼ ପୁଅ କ ଆମ ଦରଜାରେ ବଂଧାରହିବ
ଯଥିରି ସୁନା ଗୋ ଠିକ କ ଥିବ
ତା ବଡ଼ ପୁଅ ଆମ ଦରିଜାରେ ମୁକୁଳିଯିବ ମୋ ମାଆ ।
ପର୍ବତ ଶିଖରେ ପାଚିଲ କେନ୍ଦୁ
ହାଟ ବସାଘରେ ବାନ୍ଧିଲ ବନ୍ଧୁ
ହାଟ ବସୁ ବସୁ ବଜାର ବସେ
ପୁରୁଣା ଗଡ଼ରେ ତନ ସାହାଲିରେ ମୋ
ସଭା ବସେ ମୋ ମାଆ

କାଠ ଦେଇଥିଲ ଚୁହ୍ଲି ମୁହଁକୁ
ଘର ପହଞ୍ଚିଲ ଶୁଳି ମୁହଁକୁ
ଘର ତଳେ ଯେଉଁ ଝୁକା ଆସିଛୁ
ଝିଅ ମୁଗଡାଲ ଅରୁଆ ଗୃଉଳ ହଅ ବୁଲୁଚ ମୋ ମାଆ
ମୋ ମାଆ —
ତଳେ ବସା ଦହି ଉପରେ ସର
ମାଗି ଆଣି ଖୁଣ୍ଟ ବସିଛୁ ଘର
ଘର କରିଛୁ ଯେ ଏକ ବଖରା
ଦୁଆର କରିଛୁ ଦାଣ୍ଡକୁ ହାତେ
ପାଆ ମାଡ଼ ବାଟ ଗୃଲିବ କେତେ

Digitized by srujanika@gmail.com

ଗୃଲ ନଜାଣିବ ଝୁଣ୍ଣାଇ ହେବ
କାହାର ଗେଜଣା କେତେ ସଇବ ମୋ ମାଆ
ମୋ ମାଆ — ବାପା ଯାଉଥିଲେ ଦେବଗଡ଼କୁ
ନଈଟି ପଡ଼ିଲେ ପୁରୁଣା ଗଡ଼ର ତିନ ଛେକକୁ
ତିନ ଛେକରେ କ ଦୁବ ଥିଲା
ବାପାଙ୍କ ସାଧବ ଝିଅ ପିଠାଖାଇ
ଭୁଲ ପଡ଼ଲା ମୋ ମାଆ
ମୋ ମାଆ — ମାଆ ମାଉସୀଏ ହୋଇଛ ଠିଆ
କାହାର ମନରେ ନାହିଁ ସୁଦୟା
ସୁଦୟା କର ଗୋ କୁଳକୁ ନିଅ
କୁଳରୁ ମୋତେ ଗୋ ମେଲାଣି ଦିଅ ।
ମୋ ଭାଇ — ମେଘ ଘିଡ଼ ଘିଡ଼ ଦୁଆରେ ରଡ଼ି
ସେ ଯମ ଆସିବ ଗୃନ୍ଦୁଆ ଭଡ଼ି
ଗୃଲୁଆ ଝାଣିମ ଗୃର ଇନ୍ଦ୍ରକୁ
ଗୃର ଇନ୍ଦ୍ର ପାଣି ଗଙ୍ଗା ଜଳରୁ
ଗଙ୍ଗା ଜଳପାଣି ଧାଇ କି ଧାଇ
ଭୀମ ଅରଜୁନ ମୋ ଦୁଇ ଭାଇ
ବାଠ କଦମ୍ବକୁ ଦେଲେ ଠେଲାଇ
ବାଠ କଦମ୍ବରେ କ ଦମ୍ଭ ଥିଲା
ପୋଖରୀ ଖୁଲାଇ ଦେଉଳ କଲା
ଦେଉଳରେ ଭୁଗ ନାଗିଲା ବେଳେ
ମୋ ବାପା ସାଧବ କ ମୋ ତଣ୍ଟି ମାଇଲେ
ପାହାନ୍ତା ଫୁକଆ ଉଇଁଲା ବେଳେ ମୋ ମାଆ

Digitized by srujanika@gmail.com

# ଢୋଲ ଗୀତ

(ଜଙ୍ଘଧରପୁର, ସିଂହଭୂମ୍)

କାଳଆ ଛେଳିକୁ କରିଲୁ ଖାସୁ
ଏ ଗୀତ ଗାଇଲେ ସେ ଗୀତ ଆସୁ
ସରସ୍ୱତୀ କଣ୍ଠେ ବସୁ ।

ଦଉଡ଼ ଦୁଇମୁଣ୍ଡି କଳା
ମଝିରେ ବସିଛୁ ମା' ମଙ୍ଗଳା
ସରସି ଉଠିବ ଗଳା ।

ସରୁ ସରୁ ଧାନ ଶିଷ
ପ୍ରଥମେ ବନ୍ଦବୁ ଧରୁ ସୁନ୍ଦଷ
ମୋ ଗୀତ ନ ଯାଉ ସରି ।

ଡାବୁଆ ଘରର ବଟା
ପ୍ରଥମେ ବନ୍ଦବୁ ବନ ଦେବତା
ବନ୍ଦଦେବୁ ବସୁମାତା ।

କୁଡ଼ାଇଲ୍ ଲାଲ୍ ଗୁଡ଼୍
ତାପରେ ବନ୍ଦିଲୁ ବଡ଼ାମର ବୁଢ଼ୀ
ତୋ ଗୀତ ଯାଉ ଯେ ଉଡ଼ି ।

ଗାଆଁ ଗଉଷ୍ଟର୍ ବେତ
ଏକା ଗାଆଁ ଶିଷ ହେ ଦଣ୍ଡବତ
ଅନୁକୂଳ ହେଲ୍ ଗୀତ ।

Digitized by srujanika@gmail.com

ଜଳି ଗଛ ଜଗନ୍ନାଥ
ଶୁଣ ସଭାଜନେ ଗାଉଛୁ ଗୀତ
କୃଷ୍ଣ ଲୀଳା ଭାଗବତ ।

ଗୋଡ଼ର ପାହୁଡ଼ ଯୁଡ଼େ
ଦୋଳି କୁଞ୍ଜ ହେଲ୍ କଦମ ମୂଳେ
ସତ୍ୟ ଯୁଗ ଥିଲ' ବେଳେ ।

ଗୁଳରେ ଗେଞ୍ଜିଲ ସୁକ
ଆମେ ଦୁଇଭାଇ ଜନମ ଦୁଃଖୀ
କେହ୍ନି ନ ଆସିଲେ ଦେଢି ।

ନଈ ପାଣି ଗେଦେଲିଆ
ତୁମରି ଆଶାରେ ହୋଇଛୁ ଠିଆ
ତୁମେ ବଡ଼ ଦଗାଦିଆ ।

ନଈ ପାଣି କଳ କଳ
ଫୁଲ ଗୁନ୍ଥି ଦେବ ଲୋ ମଧୁମାଳତୀ
ସୋମବାର ଦିନ ରାତି ।

ପଣସ ପତର ନାଲ
ନାଲି ଦିଶେ ପିନା ହାତ ପାପୁଲି
ଦେଖି ମୁଁ ଜୀବନ ଦେଲି ।

କଦମ୍ବ ଫୁଲ ଫୁଟିଲା
ରାଧିକା ମୁଣ୍ଡରେ ଶୋଭା ଦିଶିଲା
ଶ୍ରୀକୃଷ୍ଣ ଦେଖି ହସିଲା ।

କାଳୀ ଗାଈ ମାଟେର ହାଇ
ତୋତେ ବନ୍ଧା ହେଲା ମୋ ବଡ଼ ଭାଇ
ହାତେ ଚମ୍ପା ମୁଦି ଦେଇ ।

କାକରେ ଯାକଲ ପୋଥି
ତୋର ପରି ଭାଇ ପାଠୁଆ ହେନ୍ତି
ଅରଥ ବୁଝାଇ ଦେନ୍ତି ।

Digitized by srujanika@gmail.com

ଯାଉଛୁରେ ଧନମାନେ
ଆଉ କି ଦେଖିବ ସାତ ସପନେ
ଭାବୁଥିବ ମନେ ମନେ ।

ଆମ୍ବଗଛ ଆମ୍ବଚଣା
ମନେ ରଖିଥିବ ମୋହ ବଛଣା
ଉପରେ ଗୁନ୍ଦୁଆ ଠେଣା ।

ଆହାରେ କରମ ଦଶା
ଯେ ଫଳ ଧଇଲା ସେ ଫଳ କଦା
ହୋଇଗଲା ଲୋକହସା ।

ପାଣି କଖାରୁର ରାଇ
ବରତ କରୁଛି ଅଖାଇ ନାନୀ
ପିଆଜ ପତର ରାଇ ।

କାକୁଡ଼ି ପତର ଆଂଶୁ
ଭଲ ଘର ବୋଲି ଦେଲେ ଯେ ବାପା
କାଳୀ କେଉଟୁଣୀ ଶାଶୁ ।

କୂଳରେ କାଟିଲି ଜହ୍ନି
ଏଇ ବାଟେ ଗଲେ ମହିଆଁ ନାନୀ
ଦଶି ଗଲା ପାଟ କାନି

ଦେଉଳ ଉପରେ ଫଗୁ
ଧାନ ମାଣେ ନେଇ ଭୁଜା ଖାଇବୁ
ମୋ କୃଷ୍ଣ ଖେଳାଉଥିବୁ ।

ନଈ ସେପାରିଆ ଧାନ
ବଇଁଶୀ ବାଜିଲେ ଡେରିବୁ କାନ
ନୂଆ ଗାମୁଛୁରେ ପାନ ।

ବାହାରେ ମାଇଲା ଶତ
ଛୁଆ କଲେଇର ମାଆକୁ ଖାଇଲା
କେ ଦେବ କଜଳ ପାତି ?

Digitized by srujanika@gmail.com

ଆମ୍ବ ପତ୍ର କଅଁଳିଆ
ବାଟରେ ବସାଇ ଗଲା କାଳିଆ
ସବୁ ହେଲା ମାହାଳିଆ ।

ଉପରୁ ପଡ଼ିଲା ବେଲ
ବେଗୁନା ମୂଳରେ କି କଥା ହେଲ
ଅନ୍ଧାରେ ଝିଙ୍କି ର ଦେଲ ।

ବାଉଁଶ ଅଗରେ ଧାନ
ମୁଁ ଦେଙ୍କ ପଇସା ଖାଇବୁ ପାନ
ଗୁଲଯିବା କୁଞ୍ଜବନ ।

କଦଳୀ ପତ୍ରର ଚେକ
ବଡ଼ ବୋହୂ ଗଲେ ପାଉସ୍ର ଦେଖି
କଳା ମେଘ ନେଲ୍ଲ ଟେକି ।

ଦୋଳକ ଦଣ୍ଡ଼ ସାଜେ
ତେଲଙ୍ଗା ଗଡ଼ରେ କି ବାଜା ବାଜେ
ବାଳି ଦେଇ ଖଞ୍ଜୁ ମାଜେ ।

ଡ଼ବ ଡ଼ବ ଡ଼ବ ଡ଼ଙ୍କ
ଫେଡ ଡ଼ବ ଦେଲେ କଉଡ଼ି ଦେବ
ସୁନା ଦେଉଡ଼ି ଦେଲେ ଯିବ ।

ବାଳରେ ଗାଡ଼ିଲ ଛତା
ଛତା ଗୁରିପାଖେ ଲବଙ୍ଗଲତା
ଛତାର ଦେବ ବାରତା ।

ଖପରା ଉପରେ ପୁଛ
ଆଇଷ ପୁରିଲେ ଯମ ନଅଇ
ଭୁନ୍ଦ ପର ପୁଅ ଖାଇ ।

ନଣ୍ଡରେ ଗାଡ଼ିଲେ ଖିଲ
ଖିଲ ଗୁରିପାଖେ ପାନମହୁର
ଖାଇଲେ ମରିବ ଝୁରି ।

Digitized by srujanika@gmail.com

କଣ୍ଟା ବାଉଁଶରେ ଧୂଣ
ଆମେ ଦୁଇ ଭାଇ ରାମ ଲକ୍ଷ୍ମଣ
ଗୀତରେ ନେମୁ ପରାଣ ।

ପଡ଼ିଆ ଭୂଇଁର ଖୁଣ୍ଟି
ଗୀତ ସରନାହିଁ ଯାଉଛ ଉଠି
ବାଟରେ ଖାଇବ ଝୁଣ୍ଟି ।

ଏବାଟେ ପର୍ବତ ସେ ବାଟେ ପର୍ବତ
ମଝିରେ ବଣିଆଁ ଘର
ଦେରେ ବଣିଆ ରତନ ଚୂଡ଼ି
ସୀତାଙ୍କର ବଭାଘର ।

କାନ୍ଥରେ ଲେଖିଲ ହଂସ
ଦାଦା, ଯାଇଛନ୍ତି ବଙ୍ଗଳା ଦେଶ
ବୋହୂ କାନ୍ଦେ ରସ ରସ ।

ଦୋଳ ମଙ୍ଗେ ମଙ୍ଗେ କଳା
ଜଗି ବସିଥିଲେ ସର୍ବମଂଗଳା
ବଜେ କଲେ ଚକାଡୋଳା ।

ରଙ୍ଗି ଧାନ କେର କେର
ମୋ ଭାଇ ମୁଣ୍ଡରେ ସୁନା ଝିଞ୍ଜିରି
ଉଗାର ମରବେ ଝୁର ।

ରାମଚନ୍ଦ୍ର ବଡ଼ ଲୋକ
ସୀତାଙ୍କୁ ଦେ ନଣ ମାଗିଲେ ଭିକ
ଜାଣିଲେ ଜଗତ ଲୋକ ।

କାନ୍ଥରେ ଗୁହିଲ ମାଟି
ଦଶାବଆ ଘରେ ବଡ଼ ପାଇଟି
ଦଶୁଛୁ ପିଞ୍ଜରା କାଠି ।

Digitized by srujanika@gmail.com

ରସୁଣ ଖାଇଲ୍ ପୋକ
ଯାହା ଅଳଦଳ ଆଜ ଦିନଙ୍କ
ବଞ୍ଚିଥିଲେ ବଡ଼ ଶୋକ ।

ତେନ୍ତୁଳମୂଳଆ ଘର
ତେନ୍ତୁଳ ପତର ଝଡ଼ି ପଡ଼ିଲା
ଯୁଡ଼ାକୁ ଯତନ କର ।

ପୋଖରୀ ଚାରିକଣିଆ
ପୋଖରୀ ଭିତରେ କୁଆ କାନିଆଁ
ମଥାରେ ସୁନା ପାନିଆଁ ।

ନଈର ପଚ୍ଚୁ ପଥର
ମାଡ଼ ଖାଇ ଖାଇ ଦିହ କାତର
ମାଗୁଛି ଛୁଡ଼ପତର ।

କାଟିଗଲ ଲମ୍ବାରଣି
ରାଧା ରାଧା ବୋଲି ଡାକେ ବିଦେଶୀ
କଦମ୍ବ ମୂଳରେ ବସି ।

କପଡ଼ା କପଣି ଯୁଡ଼େ
କପଡ଼ା ଝୁରୁଛି ପର୍ବତ ମାଳେ
କପଣି ଝୁରୁଛି ଘରେ ।

ଦୁକୁଡ଼ା ପତର ହାତେ
ମୋର ବଡ଼ ଭାଇ ଆଣିଛି ରାତେ
ଦିଅର ବୋଲିବୁ ମତେ ?

ଚୁଇଁ ବସାର ପଠା ରସି
ଗୀତ ଗାଇଦେବ ଡାଙ୍ଗରେ ବସି
ଶୁଣୁଥିବୁ ହସି ହସି ।

ଆଷାଢ଼ ଶ୍ରାବଣ ମାସ
କେତେ ଟାଣୁଥିବ ବିଲର ଘାସ
ଚାଲିଆସ ମୋର ପାଶ ।

Digitized by srujanika@gmail.com

ନଈ ସେପାଖିଆ ପାଲ
ଭଲ ପିଲଟିଏ ଉତ୍ତର ଥିଲ
ଏବେ କମ୍ପା ଝଡ଼ଗଲ ?

ସୁଜନୁ ଘର୍ଗିଲୁ ଡାଳେ
ଫୁଲ ଖୁସିଦେବ ଡାହାଣ କାନେ
ଘରେ କରୁଥିବୁ ମନେ ।

ବାଡ଼ର କସି ଟ୍ରେଲୁକ
ଯାହା ଖେଳଥିବ ଏଇ ବେଳକ
ବଞ୍ଚିଥିଲେ ବରଷକ ।

ସୁଜୁନା ଗଛର ଚୁଇଁ
କ କଥା କହିଲୁ ଶୁଖିଲା ମୁହଁ
କାନକୁ ଶୁଭିଲା ନାହିଁ ।

ଚନ୍ଦ୍ର ଉଏଁ ଘନ ଘନ
ଯେମିତ୍ତିକା ବହେ ଥଣ୍ଡା ପବନ
ସେଭଳ ଆମ୍ଭର ମନ ।

ଭଂଗା ନାବରେ ବସାଇ
ମୋତେ ଦରିଆରେ ଦେଲ ଭସାଇ
ତୁମ୍ଭ ହୃଦେ ଜ୍ଞାନ ନାହିଁ ।

ଦାଣ୍ଡେ ଦାଣ୍ଡେ ଗଲ୍ ଓଟ
ଗୀତାଳି ବାବୁଙ୍କୁ ଢେଙ୍କିରେ କୁଟ
ଛୁଣ୍ଡା ପଟିଆରେ ଘାଣ୍ଟ ।

ନୂଆ ଲଂଗଳରେ ଈଷ
କାମ କର କର ଗଲ୍ ବୟସ
ଗୀତ ମୁଁ ବାନ୍ଧିବ କସ ?

କଇଞ୍ଚ କାଠ ଫାଳିଆ
ଆମେ ଦୁଇ ଭାଇ ରୂପା ଭଳିଆ
କଟକ ଦରବାରିଆ ।

Digitized by srujanika@gmail.com

ରଙ୍ଗୀ ଧାନ ବାହୁଡ଼ିଲା
ବାଳୁତ କାଳରୁ ହାତ ଧରିଲା
କାଳୀ ବୋଲି ବାହୁନିଲା ।

କୁକୁଡ଼ା ଖାଇଲା ଖୁଦ
ଦୁଇ ପଇଣିଆ ଭରିଆ ନଦ
ଛୁଆ ଖୋଜୁଥାଇ ଦୁଧ ।

ପଟା ଦୋଳି ଖେଳୁଥିଲି
ପଟା ଦେଳରୁ ମୁଁ ଛିଡ଼ି ପଡ଼ିଲି
କାନଫୁଲ ହଜାଇଲି

କାନଫୁଲ ଛୁଆ ଛୁଆ
ଡଙ୍ଗା ବାହୁଥିଲେ ବାଳୁତ ଛୁଆ
ଯମୁନା ମାରଇ ଡୁହା

ଯମୁନା ନଈର ଘର
ଗାଳିଦେବେ ମୋର ଶାଶୂ ଶ୍ୱଶୁର
କେମନ୍ତେ ଯିବି ମୁଁ ଘର ?

ଆହାରେ ରମଣୀ ରସା
ଆମ ପୁରେ ଆଜି କରିଯା ବସା
ବହୁତ ଧନର ଆଶା ।

ଆହା ମୋ କଥା କେତକୀ
ଦାରୁ ପଗ ଦହି ଗଲି ଝଡ଼କି
ଧନ୍ୟ ଏ ଗୁର ପୀରତି ।

ଦୋଳି କି ଦଉରି କୋଣେ
ବଡ଼ ବୋହୂ ଦେଲେ ତୋରଣି ପୋଷେ
ମରି ଯାଇଥିଲି ଶୋଷେ ।

କାଳି ମାଠି କଳା ଲେମ୍ବୁ
ମରଗଲେ ତୁହି ପାଉଁଶ ହେବୁ
ଏ ଭବ କାହୁଁ ପାଇବୁ ?

Digitized by srujanika@gmail.com

ମରିଗଲେ ମରିଯିବି
ଶେଯ ପଲଙ୍କରେ ସପନ ହେବ
ଏ ଭାବ କାହୁଁ ପାଇବ ?

ସଜନା ଗଛର ଛୁଇ
କ ମନର ପାଇ ହୋଇଲୁ ବାଇ
ମନା କରୁଥିଲି ମୁହିଁ ।

ମାଳା ଗୁନ୍ଥୁଥିଲେ ମାଇଁ
ଗାଲ ଫୁଲି ଫୁଲି କସର ପାଇଁ
କି ଦୋଷ କରିଲି ମୁଇଁ ?

ମାକଡ଼ ଗାଲରେ କୋଳି
ସାଥି ହୋଇ ଦୁହେଁ ଖେଳିବା
ଖେଳିବା ଦୋଳିରେ
ଚୂଆ ଚନ୍ଦନକୁ ବୋଳି ।

ନଈ ସେପାରିଆ ଧାନ
କାହିଁ ପାଇଁ ଗୋଷ୍ଠ ଲେ କରୁଛୁ ମନ
ଝୁରି ଝୁରି ତନୁ କ୍ଷୀଣ ।

କାଣ୍ଡ ଗଲି ସାଇଁ ସାଇଁ
କିମ୍ପା ଝୁରିମରୁ ମୋହର ପାଇଁ
ମୋହରି ପାଇଁ ଗୋ ଯମଘର ଯିବା ପାଇଁ

Digitized by srujanika@gmail.com

# ଡୋଳି ଗୀତ

(ବାମଣ୍ଡ

ଛେଳି ଧରଇଲ ଖାସୁ
ଏ ଗୀତ ବୋଇଲେ ସେ ଗୀତ ଅଂସୁ ହୋ
ସରସ୍ୱତୀ କଣ୍ଠ ବସୁ ।

ଉଇଁ ଆସେ ନୂଆ ଜହ୍ନ
ମତେ ନେଇଯିବ ଗୁଆ ଖଦାନ ହୋ
ସେଇଠି ଯେନବା ପାନ ।

ଚେନ୍ଦୁଳି ପତର ଗାନ୍ଧ
ଆମେ ଡଶଝିଅ ହାରାମଜାନ୍ଧ
ଗୀତରେ ଲଗିବୁ ବାଧା
ବାବୁ ସାଇବ ହେ । ଗୀତରେ ଲଗିବୁ ବାଧା ।

ବାଡ଼ରେ ବୁଣିଲ ଜାଲ
ତୁମ ଉଆସକୁ ବାବୁ ହୋ ନ ପାରୁ ଚଳ
ତାନ୍ତ ଉଠୁଥାଇ ବାଲି
ବାବୁ ସାଇବ ହେ ତାନ୍ତ ଉଠୁଥାଇ ବାଲି

କଳା କାଉଁଚଆ ମଲା
ନାଲି କାଉଁଚଆ ପଲ୍ଟୁ ଥିଲା
ବାବୁ ସାଇବ ହେ ଆମବାବୁ କେଣେ ଗଲା ?

Digitized by srujanika@gmail.com

କାଟି ଗଲା କଇଁଚାକୁ
ତୁମେ ଆମେ ହେ ବାବୁ ଭାବ ଥିବାକୁ
ଭେଟ ହେବା ଚଇତକୁ ।

ବରଗଛ ଦୁଇ କେନା
ଉପରେ ଉପରେ ଉଡ଼ଇ ବାନା
ଉଡ଼ଇ ବାନାରେ ପେଟକୁ ଦେଇ ଯା ଦାନା
ବାବୁ ସାଇବରେ ପେଟକୁ ଦେଇ ଯା ଦାନା

## ଦୋଳି ଗୀତ

(କେଉଁଝର)

ଲଲାଟେ ଦେଇ ଚନ୍ଦନ
ପ୍ରଥମେ ବନ୍ଦିଲି ଶ୍ରୀ ଗଜାନନ
ଦୋଳି ଗୀତେ ହେଲି ମନ,
ବନ୍ଦଇ ସାରଳା ଦେବୀ
ପ୍ରସନ୍ନ ହୋଇଲେ ଉତ୍ତର ଦେବ
ମନରେ ରଖିବ ଭାବ ।
କଦମ୍ବ ମୂଳଆ କାହ୍ନୁ
ଶ୍ରୀ ହସ୍ତେ ଧରିଣ ବଜାନ୍ତି ବେଣୁ
ଦିଶୁଥାନ୍ତି ଯେହ୍ନେ ଭାନୁ ।

Digitized by srujanika@gmail.com

ଦୋଳିର ଉପରେ ଫୁଲ
ଭଲ ଭଲ ଗୀତ ଗାଇବ ଫୁଲ
ସମସ୍ତେ କହିବେ ଭଲ ।
ଦୋଳିକୁ ସାଜେ ଦଉଡ଼ା
ଦୋଳି ଗୁରୁ ପାଖେ ସର୍ବମଙ୍ଗଳା
ଦୋଳିକୁ ନକର ହେଳା ।
ଶ୍ରାବଣେ ଧାରା ବରଷା
ଆଜ ଅଧପୁରେ ରହିବ ବସା
ରାତ୍ତରେ ଖେଳିବା ପଶା ।
ଦୋଳ ତଳେ ଦୂବ ଘାସ
ଆସ ପ୍ରାଣଧନ ଦୋଳିରେ ବସ
ମନକୁ କର ହରଷ ।
ଆହାରେ ନବ ନବୀନା
ବାରେ ଦୟାକର ମୋ ଆଡ଼େ ଅନା
ବଞ୍ଚିବ ନାହିଁ ତୋ ବିନା ।
ପୋଡ଼ା ହାଟ ନାଲ-ମରଚ
ତମ ଲେଖାଟି ସାଇତ ରଖିଛୁ ।
ପଢ଼ିଲେ ମନେ ପଡ଼ୁଛୁ ।
ଲଗାଇ ଛୁଞ୍ଚକ ଛୁଞ୍ଚ
କାନ୍ଧରୁ ଗାମୁଛା ଛଡ଼ାଇ ନେତ
ହାତେ ଧରି ଗୁଲ ପିତ ।
ଆମ୍ବ ଟଛ ଆବୁ ଆବୁ
କାନ୍ଧରୁ ଗାମୁଛା ଛଡ଼ାଇ ନେବୁ
ବଛାଇ ପୀରତ ଦେବୁ, ସଜନୀରେ,
କଳସୀ ମଙ୍ଗରେ ଝର
ତୁମ ପଛେ ଯିବ କତୁଙ୍ଗ ସର
ପାତଳୀର ନାମଧରି, ସଜନୀରେ ।

Digitized by srujanika@gmail.com

ଶିଆଳି ପତର ଶେଯ
ସୀତା ଯାଇଛନ୍ତି ବନ ଭିତର
ସାଙ୍ଗ ନାହିଁ କେହି ତାର, ସଜନୀରେ,
ସୀତାର ବନସ୍ତେ ଘର
ବନ ଫଳମୂଳ କରେ ଆହାର,
କିଏ ଦେବ ଅନ୍ନ ଜଳ, ସଜନୀରେ ?
ଉପରେ ଉଡ଼ିଲା ବାଜ
ରାବଣେଶ୍ୱରକୁ ନମାଡ଼େ ନଦ
ଲଙ୍କାଗଡ଼େ ହେଲା ଯୁଦ୍ଧ ।
ଉପରେ ଉଡ଼ିଲା ସାରୀ
କେଣେ ଗୁଡ଼ିଗଲା ନଶୂନ କରି
ଅନ୍ତରେ ଝୁରିବେ ବୋଲି ।
ରାମା ରାମ ଦୁଇଭାଇ
ଦେଉଳ ଉପରେ ଖାଉଛ ଦହି
ଅଣ୍ଟାସୂତା ବାନ୍ଧା ଦେଇ ।
ରାମା ରାମ ଦୁଇ ଭାଇ
ଅଯୋଧ୍ୟା ନଗରେ ଜନମ ହୋଇ
ସୀତା କାନ୍ଦେ ହାଇ, ହାଇ ।
ଆହାରେ ରାଧା ମାଧବ,
ରାଧାଲାଗି କୃଷ୍ଣ ନିଶ୍ଚେ ଆସିବ
ପଲଙ୍କ ସଜାଡ଼ି ଥିବ ।
କେତବା ମାଇଲ କେତେ
ଦିନକ ବରଷେ ଲାଗଇ ମୋତେ
କପର ମୂର୍ଚ୍ଛିବି ତୋତେ ?
ଡାଳେ ଡାଳେ ଗଲା ହନୁ
କହିଥିଲ କଥା ନ ଯାଏ ମନୁ
ତୁମେ ଗୁଡ଼ିଗଲ ହନୁ ।

Digitized by srujanika@gmail.com

ଉପରେ ଉଡ଼ିଲା ସାଗୁ
ଧନ ଗୃର ରହ୍ବ ଆସିବ ଫେର
ଭଲେ ଥିବୁ ଦେହ ଧର ।

ବାଡ଼ରେ ଫୁଟିଲା ମଲ୍ଲୀ
ଯାଉଛୁରେ ଧନ ବିଦେଶ ବୁଲି
ମୋତେ ନ ପାରିବୁ ଭୁଲି ।

ଆମ୍ବାରେ ବାଦାମ ଫୁଲ
ବାଦାମ ଫୁଲରେ ଗୁନ୍ଥିବ ହାର
ଝୁରାଇବ ଧନା ବାର ।

ପବନ ଫାଙ୍କେ ପଡ଼ୁଛି
ଅନ୍ତର ପୋଡ଼ିଲେ କିଏ ଦେଖୁଛି ?
ନୟନେ ଧାର ବହୁଛି ।

ଚନ୍ଦ୍ରାଜରେ ତନୁ କ୍ଷୀଣ
ଚକ୍‌କଣ କାଳିଆ କଳା ବଦନ
ଗୃହେଁ ବଞ୍ଚୁଥିଲି ଧନ ।

ଘର କଲି ଘୋର ବନେ
ଘନଶ୍ୟାମ ବିନୁ ନଜାଣେ ଆନେ
ଘରେ ନ ରୁହଇ ମନ ।

କ୍ଷୀର ପାନ ଦେଲି ତୋତେ
ଖୁର ଯା ନଦେଲ ଗଲୁରେ ମୋତେ
ହୃଦୟୁ ଖୋଜଇ ତୋତେ ।

(ସ୍ତ୍ରୀ) ମଦରଙ୍ଗା ଶାଗ-ରାଇ
ତୋ ଲାଗି ଛାଡ଼ିଲି ମୋ ବାପ ଭାଇ
ତୋହର ଭରସା ନାହିଁ ।

(ପୁ) ମଦରଙ୍ଗା ଶାଗ ରାଇ
ନିୟମ କରୁଛି ଲୋ ତୋ ଦେହ ଛୁଇଁ
ତୋର ବିନୁ ଆନ ନାହିଁ ।

Digitized by srujanika@gmail.com

ପର୍ବତ ଉପରେ ଖତ
ବାର କାମ ଛୁଡ଼ ଗଲ ବନସ୍ତ
ତୋର କଥା ନାହିଁ ସତ ।
ଆଷାଢ଼ ମାସର କାଦ
ଏହି ଛଣ୍ତୀଠାର ହକଛୁ ସାଜ
ମୁଲିଆ ଲଗାଇ ଖୋଜ ।
ଗଡ଼ ଗଡ଼ ଗଲ୍ଲ ବେଲ
ମୁଣ୍ଡେ ନଡ ଦେବୁ ନଡ଼ଆ ତେଲ
ଆମ୍ଭ ଘରେ ଯିବା ଗୁଲ ।
ରେ ରମଣୀରସା,
ତୋତେ ନ ଲ୍ଗିବ ଟଙ୍କା ପଇସା ରେ
ଗାଡ଼ରେ ଲଗାଲ ତେଲ
ତୋର ସଙ୍ଗ ମୋର ନ ହେବ ଗେଲ
କେତେ କହୁ ଗୁଲ ଗୁଲ ?
ରେ ରମଣୀରସା,
ତୋତେ ମୁହିଁ ନାହିଁକରେ ତୋର ଭରସାରେ ।
ବାଦର ଶ୍ରାବଣ ଘାସ
ତୋର ସଙ୍ଗେ ମୋର ଏକା ବୟସ
କଥା ହେବା ଟିକେ ବସ ।
ରେ ରମଣୀରସା
ତୋର ମୋର ଏକା ଦଶା ।
କୁକୁର କଜଲ୍ କାଇଁ
କଥା ହୋଇବାର ବେଳ ତ ନାଇଁ
ଘରେ ଦେଖୁଥିବେ ଭାଇ ।
ରେ ରମଣୀରସା
ତୋର ମୋର ଏକାଦଶା ।
ନଈ ପାଣି ଗଲ୍ ବଙ୍କା
କେତେ ତ ହୋଇବ ପ୍ରୀତିର ରଙ୍କା

Digitized by srujanika@gmail.com

ଦିନେ ଥରେ ମୋତେ ଦେଖା
ରେ ରମଣୀ ରସା
ତୋରଠାରେ ମୋର ଆଶା ।

ନଣ୍ଡର ନଅଛି ବଙ୍କା
ହାତେ ନାହିଁ ମୋର ଗୋଟିଏ ଟଙ୍କା
ସନ୍ଧ ତୋର ବେଳେ ମୁହିଁ ବଙ୍କା
ରେ ରମଣୀ ରସା
ତୋ ଲଗି ନାହିଁ ଭରସା ।

ଶୁଣ ମୋ ଜୀବନ ଧନ
ଜୀବ ଥିବାଯାଏ ନ ସରିବ ମାନ
ତୋ ଆଗେ ମୁହିଁ କଲି ନିୟମ ।

ପ୍ରେମ ପୀରତିରେ ନମାନେ ଛୁତି
ହାତେ ଧରି ଥରେ ବାହା ହୋଇବା
ସୁଖେ ପୁହାଇବା ରାତି ।

ଖପରା ମାରିଲ କାତି
ଦେଖା ଚାହାଁ କରି ବାହା ହୋଇଛି
ନ ବୁଝେ ଭରିଲି ଜାତି ।

ସିଂହର ଗର୍ଜନ ଶୁଣି
ମୋର ଶଶାଟିକୁ ପାରିବ ନାଇଁ
ଚାଲକ ମାରିବୁ ନାହିଁ ।

ସିଂହ ଠାରେ ଅଛି ବଷ
ଶଶା ଖଣ୍ଡ ତୋର ହୋଇବ ବଶ
ସିଂହରେ ହୋଇବ ବସ ।

Digitized by srujanika@gmail.com

# ଡୋଲି ଗୀତ

(ବଉଦ)

ସଜନା ଶାଗ କେରାକ
ଦୁଆରେ ବସିଛୁ କଲା ମାଣିକ
ଉଡ୍‌ଛି ବାଲ କେଶିକ । ୧ ।
ବାଲ୍ ଗୋଡ଼େ ଗଲ୍ ମୁଦ
ସମ୍ବଲ ପୁରାଆ ବଣ ହଲଦୀ
ଗୋରା ଦେହେ ଗଲ୍ ଭେଦ । ୨ ।
ଦୁଆରେ ବାନ୍ଧଲ ଗାଈ
ରଜାଘର ଝିଅ ଗୃଉଲ-ଖାଇ
ନାଁ ଦେବା ବଇଦେହୀ । ୪ ।
ଆମ୍ବୁଲ୍ ମାଠିଆ ପେଟ
କେତେ ଦୂର ଦେଶେ ଦେଇଛ ବାପା
ଚୂଡ଼ାପାଣିଖିଆ ବାଟ । ୫ ।
ଆମ୍ବ ଫଳେ ଝୁଙ୍କା ଝୁଙ୍କା
ସବୁ ଅଲଙ୍କାର ଦେଇଛ ବାପା ଗୋ
କରାଟେ ନ ଦେଲ ଟଙ୍କା । ୬ ।
ମଲ୍ଲୀଫୁଲ ଦନା ଦନା
ବଉଦିଆ ରଜା ଗଲେ ପାଟଣା ଗୋ
ବଉଦ ସହର ଛିନ୍ନା । ୭ ।
ବରଗଛ ଭରା ଭରା
କେତେ ଦୂର ଦେଶେ ଦେଇଛ ବାପା ଗୋ
କାନ ପଣତରେ ଚୂଡ଼ା । ୮ ।

Digitized by srujanika@gmail.com

# ଦୋଳଗୀତ

( ମୟୂରଭଞ୍ଜ )

ପୁରୁଷ— ବାଳେରେ ଫୁଟିଲା ମଲ୍ଲୀ
ଯାଉଛୁ ତ ରେ ଧନ ବିଦେଶ ବୁଲି
ମୋତେ ନ ପାରିବୁ ଭୁଲି ।

ସ୍ତ୍ରୀ— ଉପରେ ଉଡ଼ିଲା ପାଖି
ଦିନ ବୁଝି ରହି ଆସିବ ଫେରି
ଭଲେ ଥିବ ଦେହ ଧରି ।

ପୁରୁଷ— ବିଲରେ ଧାନ ମରାଳେରେ ସଜନୀ
ଠେଙ୍ଗାରେ ବାଡିଏ ଯୁଉଳ ହେଲି
ସବୁ ଗେଲା ଗରବ ଭାଙ୍ଗିଲା ।
ବିଦେଶ ଯିବାକୁ ଦଇବ କଲା ।

ସ୍ତ୍ରୀ— କଳସୀ ମଙ୍ଗରେ ଝରି
ବନ୍ଧ ବନ୍ଧ ଯିବ କଚଙ୍ଗ (୧) ସରି
ପାଉଡ଼ୀର (୨) ନାମ ଧରି ।

ପୁରୁଷ— ପିଣ୍ଡାରେ ତଉରୁଛି ଥାଳୀ
ବନ୍ଧ ବନ୍ଧ ମିବ କଚଙ୍ଗି ଶୁଖି
ଗୁଆଗଛ ପାପ ଜାଳ ।

ସ୍ତ୍ରୀ— ଦୁଆରେ ଲଗାଲି ମଲ୍ଲୀ
ସବୁଦିନ ଧନ ରହିବ ବୋଲି
କେତେ ଆଶା କରିଥିଲି ।

---

(୧) କଚଙ୍ଗ=ଖିଚିଂ—କୀଚକେଶ୍ୱରୀ ମନ୍ଦିରଲାଗି ପ୍ରସିଦ୍ଧ; (୨) ପାଉଡ଼ୀ—ସେଇ ନାମର ଠାକୁରାଣୀ ।

Digitized by srujanika@gmail.com

## ଦୋଳି ଗୀତ

(କେଉଁଝର)

ଏବେ ବନ୍ଧେ ପଙ୍କ ନାହିଁ
ଫୁଲଟେ ଫୁଟିଛି ବାସନା ନାହିଁ
ସେ ଫୁଲ ରଖିବା କାହିଁ, ବଉଲରେ, ସେ ଫୁଲ ରଖିବା କାହିଁ ?

ଦୁଆରେ ବସିଛି ଭାଟ
ରୂପ ଦୁଆରକୁ ରୂପ କବାଟ
ମଝିରେ ମଥୁରା ହାଟ ବଉଲରେ ମଝିରେ ମଥୁରା ହାଟ ।

ଦୁଆରେ ଲେଖିଲି ହଂସ
ହସି ହସି କରି ମୋ ପାଖେ ବସ
କେହି କରି ନାହିଁ ଦୋଷ, ବଉଲରେ କେହି କରି ନାହିଁ ଦୋଷ ।

ଉଷୁନା ଧାନ ଗଉଣୀ
ଚନ୍ଦ୍ରମା ପିଠିରେ ମାଳବଦଣୀ
ଦଶୁଛନ୍ ଭାଇ ଭଉଣୀ, ବଉଲରେ ଦଶୁଛନ୍ ଭାଇ ଭଉଣୀ ।

ଜାଲଗଲା ନାଲଟିନ (୧)
ଖଇର ସୁପାରି ବଙ୍ଗଲା ପାନ
କଲେ ଖାଇବାକୁ ମନ, ବଉଲରେ, କଲେ ଖାଇବାକୁ ମନ ।

---

(୧) ନାଲଟିନ—ଲଣ୍ଠନ

Digitized by srujanika@gmail.com

# ଦୋଲି ଗୀତ

(ସୋନପୁର)

ହୁମକୁ ହୁମ ଗାରିଆ ବଉଲରେ
ହୁମକୁ ହୁମ ଗାରିଆ
ହୁମ ଗାରିଆକୁ କଏ ମାରିଆ
ରକତ ଭିନ ନାଳିଆ, ବଉଲରେ ରକତ ଭିନ ନାଳିଆ ।

ଲୁହୁର ଘରର ଡୁହା ବଉଲରେ
ଲୁ ହୁର ଘରର ଡୁହା
ହାରିବ ଜିତବ ଖେଳିବ ଜୁଆ
ନଷ୍ଟ ହେବ ତୋତେ ବହା, ବଉଲରେ ନଷ୍ଟ ହେବ ତୋତେ ବହା ।

ଡୁଆ ଡୁଆ ଡୁଆ ଡୁଆ
ଭୁଲିଗଲି ବାଟେ ପାଇଲି ଛୁଆ
କାହାକୁ ବୋଲିବ ବୁଆ, ବଉଲରେ, କାହାକୁ ବୋଲିବ ବୁଆ ।

ଖୁରି ମାଜେ ଘିଇଁ ଝାଇଁ ବଉଲରେ
ଖୁରି ମାଜେ ଘିଇଁ ଝାଇଁ
ପଣତ ପକାଇ ମାଗୁଛୁ ମାଇଁ
ଦୁଃଖୀ ଘରର ଦେବ ନାହିଁ, ବଉଲରେ, ଦୁଃଖୀ ଘରେ ଦେବ ନାହିଁ ।

Digitized by srujanika@gmail.com

# ଦୋଳି ଗୀତ

(କଟକ)

ମଦରଙ୍ଗା ଶାଗ ରାଇ
ମାୟା ଜାଲେ ମୋତେଗୋ ଦେଲୁ ପକାଇ
ଦେଲୁ ପକାଇ ଲୋ କଏ ଦେବ ମୁକୁଳାଇ ?

ନଈରେ ରଗଡ଼ା ବାଲି
ସବୁ ଆଶା ଛାଡ଼ି ତୋତେ ଧରିଲି ଲୋ
ଅନାସ୍ଥା ହୋଇ ବୁଲିଲି ।

ପୋଖରୀ ହୁଡ଼ାରେ ଲିମ୍ବ
ତୁମ ଆମ ଭାବ ଜାଣେ ଧରମ
କରମ ହୋଇଲା ବାମ ।
ଗଛକୁ ଚଢ଼ିଲି କାଇ
ତୋଲାଗି ଛାଡ଼ିଲି ମୋ ବାପ ଭାଇ
ଲୋ ତୋର ସଙ୍ଗେ ଗଲି ମୁହିଁ ।

ଲଙ୍ଗଳ ଦଉଡ଼ି ହାତେ
ଦୋଳିର ଜନମ କହି ଦେ ମତେ
ଲୋ ଜଗନ୍ନାଥ ରାଣ ତୋତେ ।

ଶୁଣ ଆହେ ସୁଜ୍ଞ ଜନ
ଶିଆଳି ଲତାରୁ ଦୋଳିର ଜନ୍ମ
ଲୋ ଖେଳୁଥିଲେ ଭଗବାନ ।

Digitized by srujanika@gmail.com

# ସଜନୀ ଗୀତ

(ଲୁଇଡ଼ା, ସମ୍ବଲପୁର)

କୁକୁର ଶୁଇଲା ଖାରେ
ଆଖି ଠାରୁଠୁବୁ ମଝା ଦୁଆରେ
ପୀରତି ଦେଲା ବାହାରେ, ସଜଣୀ ଗୋ ।

ଆମ ଖାଇଗଲା ଫାଲେ
କାଲି କହିଥିଲୁ ଦେଉଳ ତଳେ
ଆସିଯିବୁ ସଞ୍ଜବେଳେ, ସଜଣୀ ଗୋ ।

ବାସି ବାଇଗନ ଫାଲେ
ଅଁଠାର ଃଗୁନୂଚ ପଡ଼ିଁଲା ମାଲେ
ନାହିଁ ଥିଲେ ନାହିଁ ଚଲେ ।

କାଲିଆ କାଲିଆ ମାଛି
କାଲିଆ ଲଗି ମୋ ତନୁ ଧାରୁଛି
କାଲିଆ ଦେଲା ମୁରୁଛି । ସଜଣୀ ଗୋ ।

ମହ୍ନ ଦାଣ୍ଡି ଛଲକଲା
ଢନ୍ ଢନ ପିଲା ଜବୁରୁଥିଲା (୧)
ଛତର ଗୁନା ବାଇ କଲା । ସଜଣୀ ଗୋ ।

---

ଜବୁରୁ ଥିଲା—ଯୁଆନ୍ ହେଉଥିଲା

Digitized by srujanika@gmail.com

ବାଟରେ କଣ୍ଟା କେନ୍ଦୁକୁ
ପାଇଗଲ ବନ୍ଧୁ ନୂଆ ସାଙ୍ଗକୁ
ପାସୋରି ଦେଲ ଆମ୍ଭଙ୍କୁ । ସଜନୀ ଗୋ ।

ଆହାରେ ଗଳାର ହାର
ଗଳା କାଟି ମୁଁ ଦେବି ରୁଧିର
ମୋ ସଙ୍ଗେ ପୀରତି କର । ସଜନୀ ଗୋ ।

ବେଲ ତଳେ କଳା ବାଟ
ଉଦ୍ଧ ଆସୁଥିବେ ଉଦ୍ଧଆ ନାଥ
ଥାଳିରେ ଭୁଞ୍ଜାଇଁ ଘୃତ । ସଜନୀ ଗୋ ।

ଆହାରେ କଳା କୋଇଲି
ଦେଇଥିଲି ଚିଠି ଫିରାଇ ଦେଲି
କଥାରେ ମୁଁ ଭୁଲିଗଲି । ସଜନୀ ଗୋ ।

ଗୁଆ ତଳେ ବସି ଥିଲି
ଗୁଣ୍ଡ ଦେ ବୋଇଲେ ଗୁଣ୍ଡ ନ ଦେଲି
କୋଳେ କରି ଧରିଥିଲି । ସଜନୀ ଗୋ ।

ନାଲି ଫୁଲ ନଲି ନଲି
ଶେଯ ପଲଙ୍କରେ ସପନ ଦେଲି
ସେଦ୍ଧା ରୂପ ଦେଖାଇଲି । ସଜନୀ ଗୋ ।

ସଜନୀ ସଜ ପତର
ବନ୍ଧୁ ବାନ୍ଧି ଅଛନ୍ତି କଦମ୍ବ ପତର
ଧନ ସେ ବନ୍ଧୁ ଗଲେ ଅଂତର, ସଜନୀ ଗୋ ।

ସଜନୀ ସଜ ପତର
ମତେ ଲେଖିଦିଅ ଗୁଣ୍ଡ ପତର
ଇଚ୍ଛାରେ କରିବି ଘର । ସଜନୀ ଗୋ ।

ସଡ଼କର ଲାଲ ମାଟି
ଲାଲେ ଲାଲେ ଫୁଲ ଫୁଟାଇ ଦେଲି
ସଡ଼କର ଗୃହକର୍ତ୍ତା । ସଜନୀ ଗୋ ।

Digitized by srujanika@gmail.com

ନଈ ବାଲି ହୁଦ୍ଦ ହୁଦ୍ଦ
ସପୁର ବାଲିରେ ହଜିଲି ମୁଦ
ଖୁଜି ଦେବ ଦୟାନିଧି । ସଜନୀ ଗୋ ।

ଜଡ଼ା ଗଛ ରଟମଟ
ଜଡ଼ା ଗଛ ତଳେ ଜାଳିର କସରଟ
ପଇସା କରୁଛି ନାଟ, ସଜନୀ ଗୋ ।

ପଥର ଭିନ କର୍ପଣ
ବାଲି ନାହିଁ ତୋର ଖୋସା ପତନ
ପାନଆ ସଙ୍ଗେ ଦର୍ପଣ । ସଜନୀଗୋ ।

କୃଷ୍ଣ କହେ ରାଧିକାକୁ
କମଲ ରସ ଯେ ଢାଅ ଏଣିକୁ
ଝୁରି ଝୁରି ମରିବାକୁ । ସଜନୀ ଗୋ ।

ଆଡ଼ ତେଙ୍କରଲି ମୂଷା
କୁନ୍ଦରୁ ତଳିଆ ଧାନମିରଚି (୧)
ତେଲି ଝୁରୁ ଝୁରୁ ଖୋସା ।

ବରଗଛ ଓରୁମାଲ
ରଖନ କନିଆଁ ଗଲାର ହାର
ବହାଛି ମାଇଝି ପର ।

ମାଖନ ଧଇଲି କଷି
ପାନଖିଆ ମୁଖ ଯାଇଛି ଶୁଖି
ନଲିଜେ ଦେଉଛି ହସି ।

ଭଜ ଶାଗ ଉଲେଡ଼ୁଟିଲେ
ଶୋଇ ପଡ଼ିଥିଲ ନଜର ଭୋଲେ
ଚହଟ ମଲ୍ଲିଆର କୋଲେ ।

---

ଧାନ ମିରଚି—ଧାନୁଆ ଲଙ୍କା

ସଜ ଶାଗ ନୁନ ନୁନ
ହାଡ଼ରୁ ମାଉଁସ ଝଡ଼ ଗଲାନ
ତୋର କଥା ଗୁନ ଗୁନ ।

ଆଷାଢ଼ ମାସର ଘୁଲ
ଲଠା ନଦା ଭୁନ ଖାଇବ ବୋଲି
ଝିଅକୁ ରଖିଛେ ବୁଢ଼ୀ ।

ସୁନାଷକୁ ଦେଲ ସୁନା
ଗଢ଼ି ଦେ ସୁନାଷ ଛଡର ଗୁନା
ବୈଶାଖେ ଯିବ ବନ୍ଦନା ।

ଟେଣା ପାଟି କରେ ଲଟି
ସୁପାରି ଫୁଲରେ ମୁଁ ଦେଲ ଚିଠି
ବାଟେ ପଡ଼ଗଲ୍ ବ୍ରିଟି ।

ପୁଆଲ ଭାଢ଼ ଚମକଲ୍
ପୁଆଲ ଭଢ଼ ତଲେ ମୋ ଘଇ ଥିଲ୍
ଧନ ଜାଗ୍ର ଜାବ୍ର ମଦ୍ଧକଲ୍ ।

Digitized by srujanika@gmail.com

# ସଜନୀ ଗୀତ

( ବାମଣ୍ଡା )

ଆମ୍ବ ପତ୍ର ଲମ୍ବ ଲମ୍ବ
ଡଲଙ୍କା ସହରେ ଲୁହାର ଖମ୍ବରେ
ଧନ ଟଙ୍କା ବାଜେ ଝମ ଝମ, ସଜନୀରେ । ୧ ।
ନିମ ଗଛ ଧସକଲା
ଫୁଲ ଭୁଲିଗଲା ପଧାନ ପିଲାରେ
ଧନ ମଣ୍ଡିଦାଣ୍ଡେ ମହକଲା ସଜନୀରେ । ୨ ।
ଯାଉଁ ଯିମା ଯାଉଁ ଯିମା
ଜାଉଁଳ ବନ୍ଧରେ କେଶ ବାନ୍ଧିମାରେ
ଧନ ସତ୍ୟ ଆମ ଗଛେ ଥିମା ସଜନୀରେ । ୩ ।
ବାଉର କଣ୍ଠ କଣ୍ଠିଆ
ବହୂ ବୁହୁଛନ୍ତି ଜୁରା ମାଠିଆରେ
ଧନ ହଲୁଛି କାନର ଗଣ୍ଡିଆ ସଜନୀରେ । ୪ ।
ସୁଜୁନା ଗଛର ଅଠା
ତତେ କହିଥିଲି ଗୁପତ କଥାରେ
ଧନ ବାଟେ କଲୁ ହାଟ ହାଟାରେ ନାଗର । ୫ ।
ସୁଜୁନା ଗଛର ଛୁଇଁ
ବାର ବାଜିଗଲା ଯାଉଁଛୁ ମୁଇଁରେ
ଧନ ଦୁଃଖମନା ହେବୁ ନାହିଁ, ରସିକରେ । ୬ ।

Digitized by srujanika@gmail.com

ବରଗଛ ଉରୁମାଲ
ନଡ଼ିଆ ତେଲରେ ସାଜିଛୁ ବାଲରେ
ଧନ ବାଲ ଉଡ଼େ ଫର ଫର ନାଗରରେ
କୁକୁର ଶୁଇଲା ଝାରେ
ଗୁଣା ହଜିଗଲା ମହୁଲ ଝାଟରରେ
ଧନ କି କଲା କହିବ ଘରେ, ରେ ସଜନୀ ।
ଆମ ପଡ଼େ ଗୁନ୍ଦୁ ଗାଦର
ଶୁଣି ଘର ମଦ ବଡ଼ ସୁଆଦରେ
ଧନ ଭୂଇଁରେ ନ ପଡ଼େ ପାଦ, ସଜନୀରେ ।
ଫଁଟାଇ ଖାଇଲା ଟେଣ୍ଡୁ
ଉଛ ପରବତେ ନଆଲି ଗୁମ୍ଫାରେ
ଧନ ଗୁଛି ଚଲେ ଚଲେ ପିମାରେ ସଜନୀ—

Digitized by srujanika@gmail.com

# ଦୋଳି ଗୀତ

( କେଉଁଝର )

ଦୁଇ ଅଣା ପଇସା ଘଟି, ଗୁପତ ଘରରେ ଲେଖିଲି ଚିଠି,
ଚିଠି ପଢ଼ି  ହୃଦ ଯାଏ ଫାଟି । ୧ !

—o—

ଆମ୍ବାରେ କୁସୁମ କଢ଼ି, ତତେ ଆଣିଦେବି ନୟପୁର ଶାଢ଼ି
ପିନ୍ଧାଇ ଦେବି ସଜାଡ଼ି । ୨ ।

—o—

ଗଡ଼ ଗଡ଼ ଗଲି ବେଲ, ପାଚିଲା ବାଳରେ ନଡ଼ିଆ ତେଲ
ବୁଢ଼ା ଘଇତାରେ ଗେଲ । ୩ ।

—o—

ବଣରେ ଡାକିଲି ଗଜ, କାହା ସଙ୍ଗେ ପ୍ରୀତି କରୁଛ ଆଜ
ମୁହଁରେ ନାହିଁତ ତେଜ । ୪ ।

—o—

ଦେଉଳ ଉପରେ ବଣା, ଉପରେ ସୁନାର ଫୁଲ ଫୁଟିଛି
ଭିତରେ ଗୋବର ଛିଟ । ୫ ।

—o—

ଡାମଣା ଛାଡ଼ିଲି କାତି, ପ୍ରେମ ତ ନଜାଣେ ଜାତି ଅଜାତି
ଅଠରେ ଗଣ୍ଡା ପୀରତି । ୬ ।

—o—

Digitized by srujanika@gmail.com

## ଝିଲ୍ଲୀଙ୍କ ଗୀତ (ମେଦିନୀପୁର)

୧ । ନାନା ଭାଇରେ ନାନା ଭାଇ ମୋର କଥାଟି ଶୁଣ୍
ଝିଲରେ ମାଛ ଚିଲ ଖାଇଲା ପଠା ଖଣ୍ଡିଏ ବୁଣ୍
ପଠା ଗଲା ଭସି ନାନା ଭାଇ ଦଉଡ଼ି ଗଲା ଖସି
ନାନା ଭାଇ କାନ୍ଦୁଛନ୍ ଝାଡ଼ ମୁଣ୍ଡରେ ବସି
ଝାଡ଼ ମୁଣ୍ଡରୁ ଯାଇ ନାନା ଭାଇ ଗାଁ ମୁଣ୍ଡରେ ବସେ
ଗା ମୁଣ୍ଡରୁ ଯାଇ ନାନା ଭାଇ ଫୁକୁର ଫୁକୁର ହସେ ।

୨ । ଆସ ଆସରେ ଝିଆମାନେ ଫୁଲ କୁଡ଼ାଇ ଯିବା
ଫୁଲର କଣ୍ଟା ଗୋଡ଼େ ଭୁକନେ ଦୋଳାସୁ ଲୁପି ଯିବା
ଦୋଳ ସୁ ଅଟ୍ଟ ଛପନ କଉଡ଼ି ଗଣି ଗୁନ୍ଥି ଯିବା
ଗୁଟିଏ କଉଡ଼ି ବେଶୀ ହେଲେ ଗାଙ୍କ ବାଛୁଙ୍ଗା କେନ୍‌ବା ।
ଗାଙ୍କର ନାମ ମଥୁରା, ବାଛୁଙ୍ଗର ନାମ ହାଁସି
ମୋର ବାବୁକୁ କଣିଦବା ଥୋପ ନ ଗା ବାଁଶୀ । (ମେଦିନୀପୁର)

୩ । ଆସ ଜହ୍ନମାମୁଁ ଶାରଦ ଶଶୀ
ଅସ ବାହ୍ନା ହାତେ ପଡ଼ରେ ଖସି,
ଦୁଧ ଭାତ ଘର ଅନେକ ଦବା
ସନ୍ତୋଷ କରି ଘରକୁ ନବା । ,,

୪ । ଅସ ଜହ୍ନମାମୁଁ ନଡ଼,
ହାତୀର ଉପରେ ଚଢ଼ି ।
ଦୁଧ ଭାତ ସର ଅନେକ ଦବା
ସନ୍ତୋଷ କରି ଘରକୁ ନବା । ,,

୫ । କୋକିଲ କରେ କୁହୁ କୁହୁ କୁଆ କରେ କା
ବାଦୁଡ଼ି କରେ କଚର ମିଚର ଦେଖିବୁ ବାବୁ ଆ । ,,

୬ । ତାଇ ତାଇ ତାଇ ସର
ବାବୁ ଯିବ ତାର ମାମୁଁ ଘର ।

Digitized by srujanika@gmail.com

ମାଇଁ ବଲବେ ଏଟି କଏ, ମାମୁଁ ବଲବେ ଭନ୍‌ଜାଟିଏ
ଧୂଇପୁଛି କର ଘରକୁ ନଅ, ଖଟ ପଲଙ୍କରେ ଶୁଆଇ ଦଅ
ଦୁଧ ଭାତ କର ଟାଳୀଏ ଦଅ । (ମେଦନୀପୁର)

୭ । ନଦ ମାଉସୀ, ନଦ ମାଉସୀ ଗୁଲେ ବାଡ଼ େଥା
ସେରେ ଗୁଜଳ ଦନେ ବାବୁକୁ ନଦ କରେଇ ଦେଇଯା ,,

୮ । ଚାଇମୁଣ୍ଡ ନାଡ଼, ନାଡ, ବାଇ ଯାଇଛୁ ଠାକୁର ବାଡ
ଉଠିବ ବାଇ ବସିବ ବାଇ, କେହ୍ବ ନ ପାରିବ ନାଡ ଝାଡ଼ । ,,

୯ । ଗୁଇଁ ଗୁଇଁ ମୁଠି, ଗୁରଆ ଘର ଝୁଁଟି
ଥାଏ ଗୁରଆଣୀ ପ ଣିକୁ
ଯିବା ଚରମର କେନ୍ଦୁ ଖାଇବା,
ଚରମର କେନ୍ଦୁ ଖ ଇବା
ଚମ କେନ୍ଦୁ ପାଚଲ କ ମର କେନ୍ଦୁ ପାଚଲ
ମାଚ୍ଛ ରେ ଭାଇ ତେନ୍ତୁଳ ଗୁଟ
ବନ୍ଧୁକୁ ନେବା ଯମୁନା ଘାଟ
ନେଠା କ ପିଠା । *

୧୦ । ସନା ବାପୁାଣୀ ସନା ବାପୁାଣୀ
ଗାଈ ଚରତେ ଯିବା
ମାଆ ବାପା ଗାଳ ଦବେ
ସନ୍ୟାସୀ ହବା
ଭୋକ ଲଗିନେ କ ଖାଇବୁ
କାଣିସ୍ବାଡ଼ର ଫଳ

---

* ନେଠା କହ୍ବଲେ ମୁଣ୍ଡରେ ହାତ ଦେବ, ପିଠା କହ୍ବଲେ ପିଠିରେ ହାତ ଦେବ ।

Digitized by srujanika@gmail.com

ଘୁମ ଲଗିନେ ନାଇଁ ଶୋଚବୁ
ଗାଈର ଗୋଡ଼ ତଳ ।

୧୧ । ଆସୁ ଆସୁରେ ଟୋକାମାନେ
ମାଛ ଧରିତେ ଯିବା
ମାଛର କଣ୍ଟା ତ ପେଟୁ ପଶନେ
ଦଳାସୁ ଉଠ୍ୟା ରହିବା
ଲଡ଼ା ଗାଛେ ଝାଡ଼ା ଦନେ
ଫୁଲ୍ ନାଇକ ପଡ଼େ
ତୁଳସୀ ମଞ୍ଜେ ଜଳ ଦନେ
ବତିଶ ଟାକା ଝଡେ ।
ବତିଶ ଟାକାର ଘି କଲସୀ ଗୋ
ସରୁ ଚାଉଳର ଭାତ
ଘମ ପାଇଛନ ବ୍ୟା କରିତେ
ଷୋଳ ପୋର ବାପ ।
ଏତ ଟାକା ନେଲୁ ବାପୁ
ଦେଲୁ ବୁଢ଼ା ବରେ
ଆଉ ଯଦି ନେବୁ ଦୁଟାକା
ଦେବୁ ଭାଇ ଘରେ
ଖାଇତ ଶିଉ କାଳ ।

୧୨-- ନାହାକ ବାମ୍ଭନ ବସି ରହିଲ
ଝିଶ୍ଵ ପିଠା ପଚ ଗଲ
ଆ କୁଞ୍ଜା ଘରକୁ ଆ
ଭାଇ ହୋଇ କରି ଭତାର (ଭର୍ତ୍ତା) ହବ
ତା କୁଞ୍ଜା କତ ସହିବ !
ବାପ ହୋଇ କରି ଶଶୁର ହବ
ତା କୁଞ୍ଜା କତ ସହିବ !

Digitized by srujanika@gmail.com

ମା ହୋଇ କରି ଶାଶୂ ହବ
ତା କୁଞ୍ଜା କଣ ସମ୍ଭବ ! *

## ନାତିସବୁ ନେଇଯାଉଛନ୍ତି ଶ୍ରୀ ବୃନ୍ଦାବନ (ମେଦିନୀପୁର)

୧୩ । ବିରାଡ଼ି— ଛୁଚୁଚୁନ୍ଦନ ଦୂରଣ୍ଡନ୍ ଝାଡ଼ୁନନ୍ଦନ ଗୋ
ଆମି ଯେନ ବସିଅଛି ପୂଜ୍ୟ ବ୍ରାହ୍ମଣର ମାଥା ।

କୁକୁର— ସେଦିନ ଗୋ କହୁଥିଲୁ ବଡ଼ ବଡ଼ କଥା
ବେଙ୍କଣା (ପାଲଦଉଡ଼ି) ପୋଡ଼ାପୁ ବାନ୍ଧି ତୋତେ
ଚଳିଯାଏଛି କୋଥା ?
ବିରାଡ଼ି—ଘର କଲି ଦୁଆର କଲି ତୀର୍ଥେ କଲି ସ୍ନାନ
ନାତିସବୁ ନେଇ ଯାଉଛନ୍ତି ଶ୍ରୀ ବୃନ୍ଦାବନ ! *

୧୪ । ମାଛ ନ ଖାଏ ମଛଲି ନ ଖାଏ
ନ ଯାଏ ଶୁକାର ପାଶ
କାଁ କଡ଼ା ଦେଖନେ ଆଁ ଠୁଇ ବସେ
ଦେଖ ଜଗନ୍ନାଥ ।

—o—

* ରାଜକୁମାର ଗୋଟିଏ ପାଚିଲା ଆମ୍ବ ରଖିଥିଲା । ଯାକୁ ଯେ ଖାଇବ ସେ ମତେ ବିଭା ହବ । ତା ଭଉଣୀ କୁଞ୍ଜା ଖାଇଲା । ରାଜକୁମାର ଜିଦ୍ ଧରିଲା— କୁଞ୍ଜାକୁ ବାହା ହବ । ସେ ପାଣିରେ ପଶି ବୁଡ଼ିମରିବାକୁ ଗଲାବେଳେ ରାଣୀ ମା ଡାକିବା, କୁଞ୍ଜା ଉତ୍ତରଦେବା !

* ବିରାଡ଼ି ବର୍ଷାରେ ଓଦା ଝାଡ଼ୁଝାଡ଼ୁ ହୋଇ ବସିଥିଲା ବେଳେ କୁକୁର ପଞ୍ଚାଶଲୁ କହିଲା— ଏ ଘରେ ମୋର ଅଧିକାର ବହୁତ; ଅଥଚ ତୁ ପଦାରେ ପଡ଼ିଥାଉ, ତତେ କେହି ପଚାରନ୍ତି ନାହିଁ ।

ଦିନେ ପାଲଦଉଡ଼ିରେ ସେଇ ଓଳେଇ ବିରାଡ଼ିକି ବାନ୍ଧି ନେଲାବେଳେ କୁକୁର କହିଲା—ସେଦିନ ତ ଖୁବ ବଡ଼ ବଡ଼ କଥା କହୁଥିଲୁ । ଆଜି ଏ କି ଅବସ୍ଥା ?

ବିରାଡ଼ି କହିଲା—ନାତିମାନେ ବୃନ୍ଦାବନ ତୀର୍ଥ ଦର୍ଶନ କରେଇ ନେଉଛନ୍ତି !

Digitized by srujanika@gmail.com

୧୫ । କୁଆ ବଲେ କା କା କୁଇ କଟବାବାଏ ବଙ୍ଗେ
କୁନ ଯିବ ତାର ଶାଶୁ ଘରକୁ ଖାଇ ଯିବ ତାର ସଙ୍ଗେ ।

୧୬ । ଟାଗ ଦୁଟି ଆନଥିଲି ଗୋ
ଗୋଡ଼ଦୁଟି ରଙ୍ଗା
ମୋ ପାଗକୁ କେ ମାଇଲା
ବାସୁଦେବପୁର୍‌ୟା ଠଙ୍ଗା
ଧାନଫୁଲ ଖାଇ ବଞ୍ଚିଥିଲା
କଅଁଫୁଲ ଖାଇ ମଲା
ମୋ ପାଗକୁ କେ ମାଇଲା
ବାସୁଦେବ ପୁର୍‌ୟା ଠଙ୍ଗା ।

## ଷଣଫୁଲର ବାରବାଟି (ମେଦିନୀପୁର)

୧୭ । ଷଣଫୁଲର ବାରବାଟି
ମଧୁଫୁଲର ଘଟା
କ ଫୁଲଟି ଫୁଟିଛି ଗୋ
କଦମ୍ ଗଟାଗଟା
କଦମ୍ ଗଛର ଛାଇ ଗୋ
ମଣ୍ଡା ଗଛର ଛାଇ
ବଡ଼ ମାମୀ ଯେ ଭାତ ଖାଇଛେନି
ଖାଇ ପାବୋ ଗାମ୍ଭା ଦବି ।
ଗାଣ୍ଡ ଯାଇଛି ପାଢସା ବନ
ଶୋଇଛି ବାଚୁଣ୍ଡା ମଣି
ଷୋଳ ବଚ୍ଛର ମାମୁ ଜଲକେ ଯାଇଛି
ଝୁଣ୍ଟିଆର ବାଜଣି ।
ଝୁଣ୍ଟିଆ କରେ ଝୁମୁର ଝୁମୁର
ଶବଦ କତ ଦୂର
ଏକଲା ବୁଢ଼ୀ ଧାନ କୁଟେ
ଠୁକୁର ଠୁମୁର ।

Digitized by srujanika@gmail.com

## କାଲ୍ ଯିବୁ ମାଆ ମୋର (କାନ୍ଥି, ମେଦନୀପୁର)

୧୮ । ଆଁଖ କୁଳର ଝାଁକ ଝାଁକ ଭଁଇଚ କୁଳର ପେଡ଼
ରନଚ ଯାବେ ଶଶୁର ବାଡ଼ ମାଁ ଆଙ୍କ ମାଗନ ଦୁଲ ।
ମାଆ ଦଲନ ସର ଶଂଖା ବାପ ଦଲନ୍ ଶଢ଼ୀ
କୋନ ଶଢ଼ୀଟା ପରେ ଯାବେ ଶଶୁରେର ବାଡ଼ ?
ଆଗେ କାନ୍ଦେ ମା ମାଉସୀ, ପିଛେ କାନ୍ଦେ ପର
ପରଜାପତିର ଲିଖନ ଧରେଛେ ପର ଘରକୁ ଚଲ ।
ଅଇଜ୍ (ଆଜ) ଯାଇଚେ ମାଆ ମୋର କ୍ଷୀର ନନୀ (ଲହୁଣୀ) ଖାଇୟା
କାଲ୍ ଯିବୁ ମାଆ ମୋର ସଂସାର କାନ୍ଦୟା,

## ସଉଦାଗରର ଝି (କାନ୍ଥି, ମେଦନୀପୁର)

୧୯ । ଅସ୍ତ ଗାଛର ପାନଆ
ମାଲଟିଗର ଝି କନଆଁ ।
ଚନ୍ଦ୍ରଧୂଷ୍ଟର ପୁଅ ବର
ପାଲ୍କି ସାଜନ କର ।
ପାଲ୍କି ଭିତର **ଆକାଙ୍କା**
ଫୁଲ ଫୁଟ୍ଛେ **ବେକାବେକା**
ଫୁଲର ନାମ ଚଉଶ
ଲେଉଟିଆ ଶାଗେର **ମହୁର** ।
ଚୁଲେ ଅଛେ ଚୁଲ କୁମୁଡ଼ା
ସିକାରେ ଅଛେ ଘି,
ଭଲ କର ବ୍ୟଞ୍ଜନ ରାନ୍ଧ
ସଉଦାଗରରଝି ।

---

ନନୀ—ଲହୁଣୀ । ବେକା ବେକା—ବେଙ୍କା ବେଙ୍କା । ମହୁର – ମହୁର ।

Digitized by srujanika@gmail.com

## ଜ୍ୱାଇଁ ଠୋକାର ହାସ ନାହିଁ (କାନ୍ଥି, ମେଦିନୀପୁର)

୨୦ । ଆମଡ଼ା ଗଛେ କାଠକାମ୍ଡ଼ା (କାଠହଣା)
ବେଦ୍ରର୍ ଗଛର ଗୁଇ
ଆଗେଇ ଯାଅ ଗୋ ଭଣଜା ଠୋକା
ଗୁଜଲ ଧୂଇଦେ ଯାଇ ।
ଗୁଜଲ କେନ ଅଧୂଆ
ଭଣଜା ଠୋକା ମାଧିଆ !
ଗୁଜଲ ଧୂଅ ଗାଡ଼ଆର
ଜ୍ୱାଇଁ ଚଲଛନ୍ ପଡ଼ଆର ।
ଜ୍ୱାଇଁ ମାଥାର ଲମ୍ବା ଚୁଲ
କୁଥାପୁ ପାବ କଆ ଫୁଲ ?
କଆଫୁଲ ବାସ ନାହିଁ
ଜ୍ୱାଇଁ ଠୋକାର ହାସ ନାହିଁ ।

## ନୀଚେର ସଙ୍ଗେ କି କଥା ? (ବ୍ୟଙ୍ଗାତ୍ମକ, କାନ୍ଥି, ମେଦିନୀପୁର)

୨୧ । ବେଙ୍ଗ (ହାତୀକୁ ଦେଖି)—ଜଁଚ କପାଳୀ, ଚରନ୍‌ଦାନ୍ତୀ ଡେଇଁ ଯାଉଛୁ ମତେ
ହାତୀ—ମୁ ପୁରୁଷେ ପେଁ ଚଲାକା ଦଇବ ରଖିଲା ଛତେ ।
ବେଙ୍ଗ— ଶୁଣ ଗୋ ବାସଚନ୍ଦନ, ଚରନ୍‌ଦାନ୍ତୀର କଥା
ଚନ୍ଦ୍ରା—ତୁମେ ଆମର ପାଟରାଣୀ, ନୀଚେର ସଙ୍ଗେ କି କଥା ?

## ବରାଡ଼ ଖାଉଛି ପୋଡ଼ ପିଠା

୨୨ । ଏତ ପର ଦର ବରାଡ଼,
ହାଣ୍ଡିରେ ଖାଇଲା, ଚୁଲିରେ ହଗିଲା
ଲେଙ୍ଗୁଡ଼ ଦେଲା ଝାଡ଼ ।

Digitized by srujanika@gmail.com

ବଗଡ଼କ ମାରିବା ଜଣ (ଜନ୍ୟ)
ନେଇ ଯାଉଥିଲି ଘଣ୍ଟି,
ଚୂଲ୍ଲି କାନ୍ଥରେ ଥାଇ ବଗଡ଼
ଡ଼ାକିଲା ପିଁପିଁ ପିଁପିଁ ।
ବଗଡ଼କ ମାରିବା ଜଣ
ନେଇଯାଇଥିଲି ହୁଡ଼ା (ଟେକା)
ଚୂଲ୍ଲି କାନ୍ଥରେ ଥାଇ ବଗଡ଼
ଡାକିଲା ଖୁଡ଼ା ଖୁଡ଼ା (କକା) ।
ବଗଡ଼କି ମାରିବା ଜଣ
ନେଇଯାଇଥିଲି ଈଷ,
ଚୂଲ୍ଲି କାନ୍ଥରେ ଥାଇ ବଗଡ଼
ହଲାଇ ଦେଲା ଲଣ ।
ବଗଡ଼କ ବାନ୍ଧିବା ଜଣ
ନେଇ ଯାଇଥିଲି କନା,
ଚୂଲ୍ଲି କାନ୍ଥରେ ଥାଇ ବଗଡ଼
ଡାକିଲା ନନା ନନା ।
ବଗଡ଼କ ମାରିବା ଜଣ
ନେଇ ଯାଇଥିଲି ଇଟା,
ଚୂଲ୍ଲି କାନ୍ଥରେ ଶୋଇ ବଗଡ଼
ଖାଉଛି ପୋଡ଼ ପିଠା ।

## ଭଲୁପାଲ ରଜା (କାନ୍ଥି, ମେଦିନୀପୁର)

୨୩ । କଙ୍କଡ଼ାର କଡ଼ମଡ଼ ଦଶ ଗୋଡ଼ ମିଡ଼
ତୁମି ସଂସାରେ ଆସ ନମସ୍କାର କରି ।
କଙ୍କଡ଼ା—ମତେ ହୋଇଛି ଜର,
ତୁମେ ସେଇଠି ରହି ନମସ୍କାର କର ।
କଙ୍କଡ଼ାର କଡ଼ମଡ଼ ଦଶ ଗୋଡ଼ ଭଜା,
ଏ ଦେଶର ମଧ୍ୟ ଭଲୁପାଲ ରଜା ।

Digitized by srujanika@gmail.com

କଙ୍କଡ଼ାର କଡ଼ମଡ଼ ଦଶ ଗୋଡ଼ କାଣୀ,
ଏ ଦେଶର ମଧ୍ୟ ବସନ୍ତ ରାଣୀ ।

## ମାଆ କେନ କାନ୍ଦ ଗୋ (କାନ୍ଥି, ମେଦିନୀପୁର)

୨୪ । ମାଆ କେନ କାନ୍ଦ ଗୋ ଦୁଲର ଡାଙ୍ଗ ଧରି ?
ତୁଇ ମାଆଚ ଖାଇତେ ଦେଇଥିଲ୍ କୁଡ଼ ପାତା କରି
ଖୁଡ଼ୀ କେନ କାନ୍ଦ ଗୋ ମୁଣ୍ଡକ ହାଣ୍ଡି ଧରି ?
ତଖନ ଯେ ଖାଇତେ ଦେଇଥିଲ ଆଁଚଡ଼ କାଁଚଡ଼
(ବେଶୀକରି)
ଭାଉଜ କେନ କାନ୍ଦ ଗୋ ହାଣ୍ଡିଶାଳେ ବସି ?
ତଖନ ଯେ ସିନ୍ଦୂର ଦେଇଥିଲ ଫରୁଆ ପୋଛି !
ଭାଇ କେନ କାନ୍ଦ ଗୋ ଗାମୁଛା ମୁଖେ ଦିଆ ?
ତଖନ ଯେ ଗୁଣ୍ଡିତେ ଯାବେ। ଘର ଖୋଲ ଜିଆ ।
ବାପା କେନ କାନ୍ଦ ଗୋ ମଦରେ ବସି ?
ତଖନ ଯେ କନ୍ୟା ଦାନ କରିବ ବେଦୀ ଉପରେ ବସି ।

## ରାଧାଯାମିନୀ (କାନ୍ଥି, ମେଦିନୀପୁର)

୨୫ । ଢେଙ୍କି ବୋଲେ ଆମି ଗୋ ଜଙ୍ଗଲେର କାଠ
ଯତ ନାରୀ ଧାନ କୁଟେ ପଛେ ମାରେ ଲାଥ, ଗୋ ରାଧାଯାମିନୀ ।
ବୃନ୍ଦାବନେ ଧାନ କୁଟେ ସୁନ୍ଦର କାମିନୀ ।
ପୁଇ ବୋଲେ ଆମି ଗୋ ରାଧା ଯାମିନୀ
ଯତ ନାରୀ ଧାନ କୁଟେ ଆମି କରି ଗୀତ, ଗୋ ରାଧାଯାମିନୀ ।
**ଢୋଷଡ଼** ବୋଲେ ଆମି ଗୋ ଦେଡ଼ ହାତ କାଠ
ଯତ ନାରୀ ଧାନ କୁଟେ ଆମି କରି ନାଚ, ଗୋ ରାଧାଯାମିନୀ ।
ଗୁଞ୍ଜୁଣି ବୋଲେ ଆମାର ଗୋ ମଥାର ଅଛୁ ଚୂଳ
ଯତ ନାରୀ ଧାନ କୁଟେ ଆମି କରି ଠୁଳ, ଗୋ ରାଧାଯାମିନୀ ।
କୁଲ୍ ବୋଲେ ଆମି ଗୋ ଡମେର ଗୁଞ୍ଜୁଡ଼ା
ଯତ ନାରୀ ଧାନକୁଟେ ଆମି କରି ପଛୁଡ଼ା, ଗୋ ରାଧାଯାମିନୀ ।

Digitized by srujanika@gmail.com

ରୁଲୁଣି ବୋଲେ ଆମି ଗୋ ପଦେର ଅଛୁ ଝଙ୍ଗ (କଣା)
ପଚ ନାଗ୍ର ଧାନ କୁଟେ ଆମି କର ନଚାଗ୍ର, (ସଫା)
ରାଧାଯାମିନୀ ।
କୁଁଗ୍ର ବୋଲେ ଆମାର ଗୋ ପଦେ ଅଚ୍ଛି ଖିଚ୍
ଯେତେ ନାରୀ ଧାନ କୁଟେ ଆମି କର ଠିକ୍ ଗୋ ରାଧାଯାମିନୀ
ହାଣ୍ଡି ବୋଲେ ଆମି ଗୋ କୁମାରର ଗଢ଼ଣ
ପଚ ନାଗ୍ର ଧାନ କୁଟେ ଆମି କର ଭରଣ, ଗୋ ରାଧାଯାମିନୀ ।

## ତାଇ ତାଇ ତାଇ (କାନ୍ଥି, ମେଦନୀପୁର)

୧୬ । ତାଇ ତାଇ ତାଇ, ମାମୁଁର ଘର ଯାଇ
ମାମୁଁ ଦେଲ ଦଦ୍ଧ ସନ୍ଦେଶ ଗୁଆଲେ ବସି ଖାଇ
ମାଇଁ ଉଇଲ ଝାଁଟା ଲେଇକ ଦଉଡ଼ ପଳାଇଯାଇ ।

## ତୁଳସୀ ବୁଢ଼ୀ (କାନ୍ଥ, ମେଦନୀପୁର)

୧୧ । ତୁଳସୀ ବୁଢ଼ୀ ତୁଳସୀ ବୁଢ଼ୀ ତୋର ଗୋଡ଼ାର ପାଣି
ତୁ ଯିବୁ ବୃନ୍ଦାବନକୁ ମତେ ଲେଇଯିବୁ ଟାଣି ।

## ପିଲାଙ୍କ ଗୀତ (ବାମଣ୍ଡା)

ଢିଙ୍ଗ ଢିଙ୍ଗ ପେ ଖଣ୍ଟରେ କୁଏ ରହନ୍ତି
ଟୁନା ମାଳ ଋଷି ଗଲେ କେ ବୋଉଷନ୍ତି ?
ଧାଁ ଧାଁରେ ଅରୁଣ ଭଇନା,
ଘୋଡ଼ା ଚଢ଼ିଣ ଦେଖନ ଆସିବୁ ଟୁନା ମାଳ ହାତ ଧଇଣ ।
କୁଆରେ କୁଆ, ଦାନ୍ତରେ ଭାଙ୍ଗିବୁ ନବଟେଣ୍ଡି ଗୁଆ
ଅଇଲ ଦବୁ କି ଭଇଲ ଦବୁ, ଆଉ ଗୁରଖଣ୍ଡି ପକାଇ ଦବୁ
ଯୋଉଁ ଗୁରୁଟେଣ୍ଡି ପକାଇ ଦବୁ, ଖଟକୁଡ଼େ କଲ ଗଦା
ତିନ ପୁର ଅଣ୍ଡୁ ବାଇଦ ବାଜୁଚେ, ମୋ ଟୁନାମାଳ ହେବେ ରଜା ।

---

ତୋଷଡ଼—ଢେଙ୍କି ପାହାର; ସୁଇ—ଡିଙ୍କିଝମ୍ପ; ଘୃଷ୍ଟତା—ତମ ଘୃଷ୍ଟ ଢଆର କରଥିବା ଜନପ; କୁଁଗ୍ର—ଗ୍ରେନମାଣ; ପଦେ-ପଛରେ; ଖିଚ୍—ଗଣ୍ଠି ।

Digitized by srujanika@gmail.com

ବାଇ ଚଢ଼େଇ ବସା କରିଛନ୍ତି ଖଜୁରି ପାଲରେ
ମୋ ଜୁଜୁକା ମାଳକୁ ଗାଳି ଦବ ଯିଏ ପୋଡ଼ି ଦେବ ତା ଗାଲରେ !

ଥେଇକ ଥେଇ, ଥାକଡ଼ ଥେଇ, ସ ନ କକେଇ,
ବାପର ଭାଇମା, ଦଅର, ଖୁଡ଼ୀର ବର,
ବନ୍ଧୁ ମାନଙ୍କର ଖୁଡ଼ୁତାଶୁର ।

---

ମୋ କୃଷ୍ଣ ନାଚୁଥିବେ ଟଳ ଟଳ, ଉଣ୍ଟୋରେ ଯାଉଡ଼ି ମାଳକ ମାଳ
କୃଷ୍ଣ ନାଚୁଥିବେ ବଡ଼ ଆଡ଼େ,
ଉଣ୍ଟା ଲଗିଗଲା ବୃରଆଡ଼େ ।

---

ମୋ ଦୁଲକୁ କଏ ସେ ମାଇଲେ ମାଡ଼ରେ
ମୋ ଦୁଲକୁ ଶାଶୁ ଘରେ ନେଇ ଗୁଡ଼ ।
ମୋ ଦୁଲକୁ ମାଇଲା ଶାଶୁ
ଢୋଲ ବାଜଣା ଦେଇ ପଠାଇବ ମୋ ଦୁଲା ବସି ଆସୁ ।
ମୋ ଦୁଲକୁ କଏ ସେ ମାଇଲା ମାଡ଼ରେ
କାହା ବୋଲେ ଗଲା ରୁଷି
ମାଇସୀମାନେ ମୁଣ୍ଡ ଦେଖୁଥିଲେ ଦୁଆର ମୁଣ୍ଡରେ ବସି ।

---

କାଉରେ କାଉ ବୋବାଉ ଥାଉ
ରାଜ ରାଜ ପିଚା ଫଳ ବୋଲି ନଖାଉ ଆଉ
ଚଟା ଫଳ ମୋ ଜୁଜୁକା ବୁଢ଼ୀଲେ
ଯମ ରଜା ତାକୁ ପାସୋର ଯାଉ ।।

---

ଛୁଙ୍କ ଘଡ଼ୁ, ପରମାୟୁ ବଢ଼ୁ
ଡ଼ାଆଣୀ ଆଖିରୁ ଛୁଙ୍କା ପଡ଼ୁ ।।

---

ଢେ ଧେଇକି ନାଚ, ତାତେଧେଇ ନାଚ
ତାକ ଧେଇନାଚ
ନାଚ ପାହାରେ, ପୁଷ ଠାକୁର ଦୁରକୁ ବାଟ କାହାରେ ।।

Digitized by srujanika@gmail.com

ମୋଠ ନାଠ, ନାଠ, ନାଠ ମଢର
ନାଠ୍‌ଏ ଚଟିଲେ ପଶିଲେ କୋ କଢର
କୃଷ୍ଣ ନାଚୁଥିବେ ଥେଇକ ଥେଇକ
ଅଣ୍ଟାର ଘାଘୁଡ଼ି ଚଳକୁ ଥୋଇ ।।

—o—

ଶୀତ ପଚୃଶଲ ମିତ ଭ୍ଲଳକ
ଲଙ୍ଗଳାଗାଣ୍ଡିଆ ଘରେ ନାହିଁକ ?
ଖାଉଛୁ ଗଞ୍ଜେଇ ଗାଉଛୁ ଗୀତ
କହୁଣୀ କୁଣ୍ଡେଇ ମାଇଲୁ ଶୀତ ।।

## ନାନୀ ଆଉଁସି ମାଉଁସି ଧଇଲା

ପୋଖରୀ ଭିତରେ ଚଜବ
ମାଛ ମାରିଗଲେ ଗଜବ
ଚୋଡ଼ ମାଛଟିଏ ପାଇଲେ
ମୋଡ଼ ମାଡ଼ କରି ଖାଇଲେ
ମାଆଙ୍କ ଛାମୁରେ କହିଲେ
ମାଆ ଖଡ଼ୁ ପଥାଟିଏ ମାଇଲେ
ବାପାଙ୍କ ଆଗରେ କହିଲେ
ବାପା ଶାଳା ଛୁଆ ବୋଲି ବୋଇଲେ
ନନାଙ୍କ ଆଗରେ କହିଲେ
ନନା ଗଡ଼େଇ ଚଡ଼େଇ ମାଇଲେ
ନାନୀଙ୍କ ଆଗରେ କହିଲେ
ନାନୀ ଆଉଁସି ମାଉଁସି ଧଇଲେ ।

---

ବାଇ ଲାଗିଲା, ବାଇ କନା ଖଣ୍ଡ କଏ ମାଗିଲା ?
ଚାଳ ସର, ଟୋକେଇ କୁଣ୍ଡେଇ ସଜକର, ଧରି ପଳାଇବା
ଧୁମୁସର, ଯା ପୁରୁର, ଚାଳରେ ପିଲେ ସଲସ
ସମସ୍ତେ ଖାଇଲେ ଖିରି ଖେଚେଡ଼ି ଜୁଳାକୁ ଦେଲେ କଲସ ।
ଅଇଲା ମାଳ, ମାଇଲା ଚାଳ

Digitized by srujanika@gmail.com

ଧରି ପଳାଇଲା ଖେଣ୍ଟୁଡ଼ି ଥାଳି, ପା ସୁର୍ ର୍ ।

---

କାହିଁକି କାନ୍ଦ, କାହିଁକି କାନ୍ଦ, ବାଳତ ନ ଥାଇ କଣ ବାନ୍ଧ ?
ମୋର କାହିଁକି କାନ୍ଦରେ, ଆମ୍ଭ ଦାନେ କାଆଁ କରିଁଆ ଗନ୍ଧରେ ?
ମୋର ବାଇ ବର
ବାଇବର ଧରି ଦେଲା ହରବର ।

## ନାନାବାଇଆରେ (କଟକ)

ନାନା ବାଇଆରେ, ନାନା ବାଇଆରେ, ମୋ କଥାଏ ଶୁଣ୍
ଝିଲର ମାଛ ଚିଲ ଖାଇଗଲା ଧଜର ଖଣ୍ଡିଏ ଚୁଣ୍,
ଖଣ୍ଡିଏ ଧଜର ସ୍ରେଠ ଦେଲି, ଖଣ୍ଡିଏ ଧଜର ମୋଠ
ସ୍ରେଠ ଖାଇଗଲା ସ୍ରେଠ ଗରଗଣ ମୁଁ ଗଲି ଗଜଡ଼ ଗୋଠ ।
ଗଜଡ଼ ଗୋଠରେ ବାଡ଼ି ଖେଳାଖେଳି, ଗଗନେ ଉଡ଼ଇ ଧୂଳି
ଶ୍ରୀରାମ ଠାକୁରେ ବିଜେ କରିଛନ୍ତି, ବଜନ୍ତି ଶଙ୍ଖ ମହୁରି ।
ବାଇଆ ମାଳେ ବାଜନ୍ତି, କୁମ୍ଭାର ଘରର ନଜନ୍ତି
ବଢ଼େଇ ଘରର ଶୁଆଟେଲି, ଲେଖି ଦେଉଥିବ
କଦଳୀ ପତରେ ପାଠ ପଢ଼ନ୍ତି ଶୁଆଳେ ।

---

## ପିଲାଙ୍କ ଗୀତ (ପୁରୀ)

ଘାପ ଜନ୍ତୁ, ନାଚି ଖେଳନ୍ତୁ, ବନ୍ଧୁ ଆସୁ, ହଳଦୀ ବାଟୁ
ମେଞ୍ଚ୍ ମେଞ୍ଚ୍ କରି କାହ୍ନୁକୁ ଗ୍ଲଠୁ ।
ଓଦା ଚାଲିକି କଞ୍ଚାକାଠ, ରାନ୍ଧୁଣୀ ମାରୁଛି କପାଳେ ହାତ ।
ଅକାଣ୍ଡିଆ ଗରଳ, ଚୂଳୁଳିଆ ଶାଗ
ପଢ଼ିବା ବହୁନେ ମରିବା ଯୁଗ ।
ବୁଢ଼ୀକି ଦେଲେ ପଖାଳ ଭାତ
ବୁଢ଼ୀକି ଧରିଲା ସନ୍ନିପାତ ।

Digitized by srujanika@gmail.com

ବୁଢ଼ୀକି ଦେଲେ ଜାଇଁ, ବୁଢ଼ୀ ପେଟ ହେଲା ହାଣ୍ଡି ହାଣ୍ଡି
ଢେଙ୍ଗା ପାନ ବଢ଼, କୁଷ୍ମାଣ୍ଡ ମୁଣ୍ଡି
ସନ୍ଧିଲା ଘଟକୁ ଆଉଷ ନାହିଁ ।

## ଗୋଟିଏ ମିଠେଇ (ମଜଦା, କଟକ)

ଝାମ୍ପୁଡ଼ି, ପୁଅ ଖା ଅମ୍ପୁଡ଼ି
ମିଠେଇ, ଶାଉଗୁଣା ତୋ ବଡ଼ କେଉଠଇ
ବୁଢା ଚଲେ କଟକ, ବୁଢ଼ୀ କାଢ଼ିଲା ଛଟକ
ବୁଢ଼ା ଚଲ ଟାଙ୍ଗି, ବୁଢ଼ୀ ଟଙ୍ଗା ଦେଲ ଭାଙ୍ଗି
ଟେପ ଟେପା ଟେପା, ଚଜକଆ ତୋ ବଡ଼ ବୋପା
ଟେପ ଟେପ ଚଜ, ଚଜକଆ ତୋ ବୋଉ
ଟେପ ଟେପ ଚଜଣି, ଚଜକଆ ତୋ ଭଉଣୀ । ୧ ।

ଏକୁଲ ଏକ, ଦୁବ ଦାସ୍ତିକ, ଛନୋଲ ମୀନ
ଗୁରେଙ୍ଗ ଚଢ଼ି, ପାଞ୍ଚଲ ମହ୍ନ, ଛଅଲ ଛୁଆ
ସାତଲଗୁଆ, ଅଠଲ କାଠ, ନଅ ନୁଆଣି
ଦେଜ ପୁଅଣି
ଜକେଇ ମୁକେଇ
ଧାନ ଦେଉରକରେ ଗୋଟିଏ ମିଠେଇ ।

## ପିଲାଙ୍କ ଗୀତ (ପୁଷ)

ଅସ ମାଉସୀ ଆସ ପିଉସୀ ନାଦ ଦେଇ ପାଆ
ଦାନ ଚଢ ଚଢ ଗୁଆ ପେଡ଼ ପେଡ଼ ବଟୁଆ ପୂରେଇ ଖାଆ ।
ଜକର ଚନାରେ ବାଇ ଚଢ଼େଇ ବଡ଼ ପହାଡ଼ରେ ଥାଆ
ଟୁନିଆ କାନ ମୋଚ ମେଚ ମୋଚ ସୁନିଆ କାନ ଖାଆ,
ସବୁ ପିଲାଏ ତ ଖେଳି ଆଇଲେ
ମୋ ପ୍ରେମ ସୁନ୍ଦର କାହିଁ···?
ଝାଡ଼େ ଚଣି ଝୁଡ଼ କୋଳି ଖାଉଛ ସେ
ଆକୁଡ଼ ଖଣ୍ଡି ଲଗାଇ ।

Digitized by srujanika@gmail.com

## ହଳିଆ ଗୀତ (କେନ୍ଦ୍ରାପଡ଼ା)

୧ । ଚନୁପାଚଳୀକ କନ୍ଦବ ପାସୋର ନାହିଁ ତୋତେ
ପିବୁ ଖଗ୍ରବେଳେ ମାଣ୍ଡିଁ ନେ ପାଣିକ
ପାଣିକ ସୁରନ୍ତ ଦେବୁ ମୋତେ ।
ସୁରନ୍ତ ଦେଜ ଯେ ପୀରନ୍ତ ନାଗିଲା
ଦୁଇକୂଳ ନାଗି ଯେ ଯମୁନା ବହିଲା
ସେହି ଯମୁନାରେ ହୋ କହ୍ଲାଇ,
କହ୍ଲାଇ ପଦ୍ମ ଯେ ତୋଳୁଥିଲା ହୋ ।
ଆରେ ପଦ୍ମ ଯେ ତୋଳୁ ତୋଳୁ ଦଂଶିଦେଲା କାଳୀ
କଠଜ ଚଳେ କ ପ୍ରଭୁଶରଣ,
ଶରଣରକ୍ଷଣ ବନମାଳୀ ହୋ ।

୨ । ନନ୍ଦ ତ ନନ୍ଦ ଯେ ଅଷ୍ଟବାଙ୍କ ନନ୍ଦ
ଆଗରେ ପାଞ୍ଚହଳ ପଛରେ ବୁଲେ ମଇ
ଆଗ ହଳୁଟା ନଣ୍ଡା କାଠେ ଘରକୁ ବାଇ ହୋ ।

୩ । କଖାରୁ ପତର ଯେ ଲମ୍ବା ଲମ୍ବା ଆଁଶୁ
ମାଠିଆ ଭାଙ୍ଗିଲେ ଫୁଲଟଲ୍ଲ, ଗାଳିଦେବେ ଶାଶୁ
ତୋତେ ମୁଁ ବୋଲଇ କୁମ୍ଭାରଆରେ ଭାଇ,
କଳସ ଦୁଇଗୋଟି ଯେ ଗଢ଼ିଦେବୁ ଭୁଣ୍ଡି
କାଙ୍କରେ ହାଣି ମାଟି ହସ୍ତରେ ଦଳିବୁ
ବାମ ଜଙ୍ଘ ପାଶରେ କଳସ ଗଢ଼ିବୁ
ଚାରିଭୁର ତ ଦେଇ ଉଆରେ ଦେବୁ ନେଇ
ବାନ୍ଧୁନେବେ କ ଗୋପର ତରୁଣୀ ଚନ୍ଦ୍ରମୁହିଁ ହୋ ।

୪ । ଆରେ ବଉଳା ବଳଦର ଗଜଚମ ଗୁଳି
ଥିର ହୋଇକ ଗୁଳରେ ବଉଳା, ଜଡ଼ବ ନଖ ବାଲି
ଜଡ଼ବ ନଖ ବାଲି ଦେହରେ ପଡ଼େ ଧୂଳି
ଗାଣ୍ଡ ପେଟେ କ ଥିଲୁରେ ବଉଳା,
ଆରେ ବଉଳା, ବାଛୁରି ରୂପ ଧରି ।

Digitized by srujanika@gmail.com

ବଡ଼ ଦେଉଳରେ କାକୁଡ଼ିଆ ଘାସ
ବେଗେ ବେଗେକ ଭୁଲ୍‌ରେ ବଉଳା,
ବଉଳା ଫୁଟିବୁ ଯମ ଫାଶ ହୋ ।

୫ । ବଡ଼ତ ଦେଉଳରେ ବଈଣୀ କବାଟ
ମାଛିକ ଶିକୁଳି ଯେ ଯମକୁ ନାହିଁ ବାଟ
ଅଛି ଅଛି ତ ବାଟ ଛୁଞ୍ଚି ପ୍ରମାଣେ ବାଟ
କେଉଁ ବିଶ୍ୱକର୍ମା ଗଢ଼ିଛି ଗଢ଼ିଛି ଆପେ ଜଗନ୍ନାଥ ।
ଜଗନ୍ନାଥ ଯେ ହୁଭୁ ହାଟିଆ ନାଗର
ହସ୍ତ ପକାଇଲେ ରାଧିକା ଉପର
ଚମକି ରାଧିକା ଯେ ନିଦରେ ଗରଗର
ଉଠି ବସି ଦୀପ ଜାଳହୋ ନଣନ୍ଦେ
ଛୋ ଘରେ ପଶେ ଚୋର ।
ନୂଆର କବାଟକୁ ବଚନ କଲଣି
ଚୋର କେଉଁ ବାଟେ କି ପଶିଲି
ପଶିଲ କୂଳର ଭୂଆସୁଣୀ ହୋ ।

୬ । ଆଷାଢ଼ ମାସରେ ତ ଶାଳୁଆ ମାରେ ରଜା
ନାଗ ତ ବନ୍ଧିବାକୁ ବଙ୍ଗଦେଶ ରଜା
ବଙ୍ଗ ଦେଶ ରାଣୀ ତା ନାମ ବଇଦେହୀ
ଅଠର ଗଣ୍ଡା ରାଣୀ କୋଳରେ କାହାର ପୁତ୍ର ନାହିଁ
ଛୁର ପୁତ୍ର ନାଗିରେ ରଜନ,
ରଜନ, ଯିବୁରେ ଯୋଗୀ ହୋଇ
ତୁ ହେଲେ ଯୋଗୀନାଥ ମୁଁ ହେବି ଯୋଗିଆଣୀ
ଭୁଲୁଥିବା ପଥ ଦୁଇଟି ଚରଣୀ
"ଅନେକ ପରବତ ଯେ ପାହାଡ଼ ଝୁଣ୍ଟିଲେ ପଡ଼ିବୁ
ଅନେକ ବାଘଭାଲୁ ଦେଖିଲେ ଡରିବୁ ।"
"ଖ ଜ ପଛେ ବାଘ ଭାଲୁ ତୁମ ସଙ୍ଗରେ ଯିବି
ଅଳସ ନାଗିଲେ ସ୍ୱାମୀ ପାଦ ମଠାଳିବି ହୋ ।"

Digitized by srujanika@gmail.com

୭ । ବାଗ ବାଇଗଣ ଯେ ତୋଳଇ ନଇଁ ନଇଁ
ଏକା କାଳିଆକୁ ମାଡ଼ୁଚି ଡରଲେ ପଶିବ ବାଡ଼ ଡେଇଁ
ପଶିବ ବାଡ଼ ଡେଇଁ ଧରିବ ଓହ୍ଲାଇ
ଛୁଆ ବସାକ ଗୁଣାଲେ ଖସିବ, ଦେଇଛୁ ନଣନ୍ଦେଇ,
ତୋ ଗୋଡ଼ ଝୁଣ୍ଟିଆଲେ ବାଜଇ ଝଇଁ ଝାଇଁ
ଆଜି ରାଇଜର କି ଗଡ଼ଣ, ଦେଇଛୁ ନଣଦେଇ ହୋ ।

୮ । ହାଡ଼ା ତ ବଳଦକୁ ଅସନ ଘୁଣ୍ଟିଆ
ଗୋଷ ତ ମାଇପକୁ ପାଜଁଳ ମାଠିଆ
ମୁଣ୍ଡର ମାଠିଆ ଲେ ଏଣିକ ତେଣିକି
କାଖର ମାଠିଆ ଲେ ଯାଉଚି ପାଣିକି
ଫୁଲତ ଗହଳରେ ନ ବୁଡ଼ଇ ମାଠିଆ
ସୋଲ ଗହଳରେ ନାଗିଲା ଗୋଡ଼ର ଝୁଣ୍ଟିଆ
ପଣତ ଗହଳରେ ନ ପଡ଼ଇ ଦୃଷ୍ଟି
ଫଳ ତ ଗହଳରେ ନ ଗଳଇ କୁଞ୍ଚ ହୋ ।

୯ । ହାତର ଅର୍ଜୁନର ଯେ ଲଗିଲା ଡବାଘା
ଶରର ସାଗର ବନ୍ଧ ଯେ ବାନ୍ଧିଲେ ବାଳାନନ୍ଧ
ଛୁଟରେ ଅରଜୁନ ମାଉସୀପୁଅ ଭାଇ,
ତୋ ବନ୍ଧ ଉପରେ ଯେ ଝୁଲିଯିବ ମୁଣ୍ଡ ।
ଦଶଦ୍ୱୀପ ମାଡ଼ ହନୁ ଝୁଲଇ ଦମକାଇ
ଭାଗ ନ ସମ୍ଭାଳୁରେ ଭାଇରେ ଅର୍ଜୁନ,
ଅର୍ଜୁନ ରୁଧିର ଗଲା ବନ୍ଧ ।
ଅବନ୍ଧା ଶର ଥିଲ, ରୁଧିର ଲୁହେଁ ହଇ
ନାଗି ଲୁଣି ପାଣିକି ମର୍କଟ,
ମର୍କଟ ହେଙ୍ଗୁଲା ଗଲା ବନ୍ଧ ହୋ ।

Digitized by srujanika@gmail.com

## ହୁଳିଆ ଗୀତ (ବାପଣ୍ଡା)

୧୦ । ଦଶରଥ ପଟରେ ହୁଟିଳ ଦେଲ ଘୋଅ
ବଟେ ତ ଦେଲେ ପଣା ଛତର ଜନକ ଋଷି ଝିଅ
ଜନକ ଋଷି ଝିଅ ଶ୍ରୀରାମଚନ୍ଦ୍ର ବର
ଭଙ୍ଗଟୋପି ମାଳ ବାସ ଚନ୍ଦନ ଅଯୋଧାରେ ଘରରେ

୧୧ । ଅଯୋଧାର ଲୋକେ ଯେ ଗୁଲନ୍ତି ଧାଡ଼ି ଧାଡ଼ି
ଶୁଭ ଲଗ୍ନ ଦେଖି ବାଳୀ ବାହାର ରାମଙ୍କୁ ନବା ବର
ରାମକୁ ବର ନେଇ ବେଦୀରେ ବସାଇ
ପୂଜିତ ବ୍ରାହ୍ମଣ ବେଦ ଉଚାରଇ
ନାରୀ ନାଗ ଲୋକେ ଯେ ହୁଳହୁଳି ଦେଇ
ବାଜିତ ମୃଦଙ୍ଗ କଂସାଳ ବଜାଇ
ଶ୍ରୀରାମଙ୍କ କୋଳେ ଝିଅ ସୀତାଙ୍କୁ ବରୁଣ ସମର୍ପଇ
ବରୁଣ ସମର୍ପିଣ ସମାଳ କୋଇଲେ
ଗାଈ ମଇଁଷିର ଅଧିକ ଧନ ଦେଲେ
କୁଆଁରି ବଦାଣ କୋଠ ଭଣ୍ଡାର, ଅମୂଲ୍ୟ ରତ୍ନ ଦେଲେ ।

୧୨ । ଖାଇ କଟକଟ ବାଙ୍କିଆ କରେ ଘାଉଁ
କେତେ କେକ ଭଙ୍ଗି ଗୁଣ୍ଡ ଅନାଉଁ, ପାଣିକ ପାଉଁ ପାଉଁ ।
ଗହ୍ମର ତଳରେ ମୁଠି ମୁଠି କଅ
ମୋତେ ଛୁଡ଼ି ଦଅର ନୋହିବ ଅନ୍ୟ କଥା
ଯଦି ଭୁହି ଭଲ ଦେବୁ ମ.' ବାପ କୋଲେ·
ଛୁଡ଼ାଇତ ନୂଳମୁକୁଟ, ବରୁଣ ବେଦୀ ତଳେ
' ନ ଛୁଡ଼ା ନ ଛୁଡ଼ା ମୋହର ଶୁଭ ବେଳେ
ଯେତେ ଜନ୍ମିବ ଜ୍ୟେଷ୍ଠ ବଦାଣ
ଏ ଦେଇଯିବ ଘରେ''
'·ଘରେ ଦେଇ ଗଲେ ଯେ ଜାଣିବେ ସମସ୍ତେ
ଦେଇତ ଯିବରେ ବୁକୁ ପଣତ ରହିବ ଗୁମରେ ।''

Digitized by srujanika@gmail.com

୧୩ ।    ବାଲିସକମକ ଭଙ୍ଗାଇ ଦେଲା ଯାଇ
ବାଂଛ ମାଇଜୀର ପ୍ରେମ ସୁହାଗ,
ଘରୁ ଘୁଡ଼ି ତ ଦେଜ ନାଇଁ ।

୧୪ ।    ଯାଇ ଯାଇ ବୋଇଲେ ଯାଇ ହବ କସ ?
ବୋହୂକୁ ମାଗିଲେ ପିଲା ଖାଇବୁ,
ଲେମ୍ବୁଜ ଚପି ରସ ।

୧୫ ।    କୋଇଲି ନେବ ବାଏ ଦୁଇପାଟି ରତା
କହଲେ ନୋଇଲି ଶ୍ରୀରାମ ବାରତା
କି ବାରତା କହବ ଶ୍ରୀରାମ ପିତା ମାତା
ଗୋଦାବରୀ କୂଳେ ଯେ ହରାଇଲେ ସୀତା
ସୀତା ହରଇଣ ଯେ ହରସ କଲେ ମନ
କଷ କଜପୁମ୍ମା ଯେ ବଭୂଷ ଭୂଷଣ
ଶିରେ ଜଟା ବୋନ୍ଧି ଯେବେ ଶ୍ରୀରାମ, ଖୋଜନ୍ତି ଘୋର ବନ,
ଖୋଜି ଘୋରବନ ନ ପାଇ ଜାନକୀ
ତରୁ ତୃଣମାନେ ତୁମେ ଥାଅ ସାକ୍ଷୀ
ହରତ ବ୍ରହ୍ମା ହେଲେ ମାରିବ, ନହେଲେ ଜାନକୀ
ନ ହଏ ଜାନକୀ ନ ପଶେ ଶରଣ
**ରଣ ଯୁଦ୍ଧ** କରି ନଷ୍ଟେ ମାରିବ ଉଦ୍ଧବ ଷମିପଣ
ଡଙ୍ଗର ରାବଣ ଲଗାଇଛନ୍ତି ବଡ
ନେକ ଶର ଛନ୍ଦ ବୀର ଲକ୍ଷଣ, ପଡ଼ିବ ମେଘନାଦ
ଇନ୍ଦ୍ରଜିତ ମଲା ମନରେ ନାହିଁ ଶଙ୍କା
**ପୁଡ଼ୁ** ରାବଣର ଦେଙ୍ଗ ଜଗତୀ, ଅଜସ୍ର ଗଡ଼ ଲଙ୍କା
ଅଜସ୍ର ଗଡ଼ ଲଙ୍କା ସୁବର୍ଣ୍ଣ ପାଚେରୀ
ତହିଁ ବସି କାନ୍ଦେ ରାଣୀ ମନ୍ଦୋଦରୀ
ଆହା ମୋ ଇନ୍ଦ୍ରଜିତ କୁମର, ଗଲା ମୋ ରାଜ୍ୟଶିରୀ ହେ ।

---

ରଣଯୁଦ୍ଧ—ଏପରି ପ୍ରୟୋଗ ଲୋକଗୀତରେ ବହୁଳ; ପୁଡ଼ି —ପୋଡ଼ୁ ;

Digitized by srujanika@gmail.com

୧୬ । ଝିଙ୍ଗିରି ଶୁଖୁଆ ମାଛଲି ମହୁର
ଦେଢ଼ଶୁର ପୁଅ ଅତି ସୁନ୍ଦର ନୋହିଲା ଦିଅର
ଦିଅର ହୋଇଥିଲେ ପରଷି ଦ୍ୟନ୍ତ ଭାତ
ମୁହଁକୁ ଅନେଇ ଅନ୍ନ ଭୁଞ୍ଜନ୍ତି, ପ୍ରାଣର ସଙ୍ଗାତ ହୋ ।

୧୭ । ଜହ୍ନର ପାଖରେ ତରା ଗୋଟି କ୍ଷୀଣ
ଝୁରୁଥିବେ ଶତ ରତନ ପୁରୁଷ ଗୁଣି ମାନ
ପୁରୁଷ ପୁଅକୁ ନ ବୋଲିବ ମାନ
ଗୋଠା ପୁଡ଼ୁରୁ ଚଟିଆ ଖାଏ ଧାନ
ସେଇ ପରକାରେ ମାଣ୍ଡ ଗଧିକେ, ଖେଣ୍ଡିଆ ସାଧନ ହୋ ।

୧୮ । ଜଡ଼ଇ ଗେଣ୍ଡାଳିଆ ଗରଜଇ ପକ୍ଷୀ
କୋଢ଼ ରଣ୍ଡ ପୁଅ କାଣ୍ଡ ବଢ଼ୁଚି, ଯାଉଁଳି ଥନ ଦେଖି ।

୧୯ । ଦିଅର ଭାଉଜ ବସିଲେ ପଟିଆରେ
ମମା କଣ୍ଟ କଲେ ପିତ୍ତଳ ଥାଟିଆରେ
ପିତ୍ତଳ ଥାଟିଆ ଭାଙ୍ଗି ରୁଜି ଯିବ
ହସ୍ତ କଣ୍ଟ କର ସାନ ଦିଅର, ରହିବ ଯୁଗାନ୍ତର ହୋ ।

୨୦ । ନଣନ୍ଦ ଭାଉଜ ସେ ଗଲେ ମାଟି ଖୋଳି
ମାଟି ଖୋଳାଠାରେ ଉପୁଜିଲା କଳି
ନଣନ୍ଦ ଯେବେ ପରୁଚରେ ମୋ ଭାଇ କେଡ଼େ ଭଲ
ନଣନ୍ଦ ଗୋ ଯେବେ ପଚାରିଲୁ ମତେ
ଛଦ ଛଦ କରି ଯେ ବତାଇ ଦେବି ତତେ
ନ ବାଣୀ ପଟିଆ ଛବାଣୀ ଛୁଡ଼ିଲା
ଜଉଲଗା ଘର ମାକେଶ ଦମକିଲା
କୋପା ପୁଚ୍ଛ ଘରେ ଯେ ଖୁଦକୁଣ୍ଡା
ବାରହାତ ଲୁଗା ଯେ କାନଏ ଚିରିଲା
ମୁଇଁ ଯେ ହାରି ନାହିଁ ତୋ ଭାଇ ହାରିଲା ।

Digitized by srujanika@gmail.com

ଘନ ଅଧଠାରେ ଚୋବଗି ପିଚିଲେ
ମୁଙ୍କେ ଘଣ୍ଟ ଝିଅ ନ ଦେଲ ଚୋବଣି
କଳସ ଗୃହରେ ସ୍ୱାମୀ ଖାଉଥିଲେ ପାଣି
ଜଉ କଳ ବେଳ ଯେବେ ଶୁଇଛ, ଭେଣ୍ଡିଆ ଗୁଣମଣି ।

୨୧। ବାଆ ଖଲୁଖଲୁ ଉଲର ଡଙ୍ଗା ମଙ୍ଗ
ଛୁଲା ଶେଯ ପ୍ରାୟେ ଯେବେ କଅଁଳ ଗୃଷର ଜାନୁଜଙ୍ଘ
ଗୃଷର ଜାନୁଜଙ୍ଘ ଭାଗ୍ୟ ଥିଲେ ପାଇ
ଅଗ୍ନି ପାଶେ ଜଉ ଯେସନେ ତରଳଇ

୨୨। ବାଆ ଖଲୁ ଖଲୁ ଉଡ଼ାଇ ନେଲ ଛଣ
ଦାଶ୍ଚ ତ ଘରେ ଚୋର ପଶିଲେ, ଭଙ୍ଗିଲେ ଦରପଣ ।

୨୩। ତନୁ ପାତଳୀକ ବସ୍ତ୍ର ବାର ତେର
ଭେଣ୍ଡିଆ ଦେଖିଲେ କମ୍ପାଇ ଆଣେ ଜର
ତନେ ଜର ଜର ଯେ ମନେ କଲା ଜର
ଲୁଣ୍ଠି ପାରୁଆ ଯୋଡ଼ ଯୋଡ଼କ, ନିଗମ ଥାନେ ଘର
ନିଗମ ଥାନେ ପଶି ନିବଶ କଂପା ହେଉ
ନିଜର ଦଉକୁ ଗ୍ରାସିଅଛୁ ରାହୁ ।

୨୪। ନିଶକତ କାଳେ ଉକତ ପର୍ଦ୍ଦା ନାହିଁ
ମାଗା ଉଚ କାଳେ ଯେ ପିତାର ବାଛ ନାହିଁ
କାହୁଁ ଜନମିଲୁ ଜଠା ଯୋଗିଆ, କହିବୁ ଜ୍ଞାନ ଥାଇ ।

୨୫। ଖଡ଼ୁ ରୁଣୁ ଝୁଣୁ ବାଇଗଣ ବାଗ
**ମୁଣ୍ଡ୍ରେଷ** ପାତଳୀ ପଜବନ ଘର
ଜଙ୍ଘ ବାହା ତଳେ ଗୁଷ୍ଟ ରଖିଛୁ, ଭେଟିଛୁ ଜଣ ସ୍ବର
ଭେଣ୍ଡିଆ ଜଣ ସ୍ବର କୁହଁାଉଆ ଜାତ
ମାଟି ପିଣ୍ଡ ପ୍ରାୟେ ଯେବେ ଦଳନ୍ତ କୁଚର ହିକତ ।

---

ମୁଣ୍ଡ୍ରେଷ-- ମଣିଷ;

Digitized by srujanika@gmail.com

୨୬ । ରାଧା ଘରେ ମାମ'ବ ଚୁରାଇ ପଶିଲେ
ଗଜଦନ୍ତ ପଲଙ୍କେ ପହଡ଼େ ବସିଲେ
ପହଡ଼େ ବସିଣ ଶ୍ରୀଅଙ୍ଗ ଦେଲେ ହସ୍ତ
ଚନ୍ଦ୍ର ଚମକ ରାଧିକା ମାଇଲେ ଯୋଡ଼ା ନାଠ
ନାଠେ ମାରି ହାତେ ଫୋପଡ଼ାଇ ଦେଲେ
ଗଜଦନ୍ତ ପଲଙ୍କୁ ମାଧେଇ ପଡ଼ିଲେ
ପଡ଼ି ଝଡ଼ଝାଡ଼ି ଯେ ମାଧେଇ ବସିଲେ
ରାଧା ମୁଖ ଚାହିଁ ଅଳପ ହସିଲେ
ଟେଥାଞ୍ଜି ତ ଥିବ ବେନ ଚରଣ,
ଘଷିଦ୍ଦ ବୋଇଲେ ହେ ।

୨୭ । କାଠିଲ କଣ୍ଠଙ୍ଗ ଛେଦିଲ ଅଟେସ
ଶୁଖ ଯାଉଥିଲା ଯଜ୍ଞବନ ଭରସ
ମୁଁଇ ଯାଉଥିଲ ପାଟଳ ଶୁଆ କେଶ
ସାନ ତ ବୋଲି ଉତ୍ତ ନ ଦେଲା
ପଞ୍ଚମେ ଝୁରିମଲା
ବୋଲାଉ ନାମ ନାମ ସାନ ବୋଲେ କାହ୍ନେ
ଏବେ ତ ଡାକୁରେ କୁଞ୍ଜବନକୁ
ତୋ ମୁଖେ ଲଜ୍ଜା ନାହିଁ !

୨୮ । ଡେଇଁଲା ସଜଳ ପଇଲା ମୂର୍ଚ୍ଛା ମାଡ଼ି
କେଉଁ କଟଡ଼ାଏ ଗୃଷ୍ଠ ପଇଲୁ
ଗଜରା ଥନ ମାଡ଼ି ।

୨୯ । କାନ୍ଦ କହୁଛନ୍ତି ଜନକଝିଅ ସୀତା
ବନ୍ଦୀ ତ ଘରୁ ବାଟେ ଜନ୍ଧର ଦଇବ ବିଧାତା
ଦଇବ ବିଧାତା ହେ ମୋ ଦେଲୁ ଦୁଃଖ
କି ହୋଇ ରଜନୀ ବାଟରେ ପାହିବ,
ଦେଖିବି ସ୍ୱାମୀ ମୁଖ ।

Digitized by srujanika@gmail.com

୩୦ । ସ୍ୱାମୀ ମରା ନନ୍ଁ ହୋଇଲ ଁ ଅବେକ୍ଷା
କେବେ ପିନ୍ଧନାହିଁ ··· ପାଟ ଛୁଟ କ ଝୀନ ବାସ
ସ୍ତ୍ରି ଶ୍ରୀ ବୋଲେ ସ୍ୱାମୀ ଭୁମ୍ଭଠି ଅଛୁ କାର୍ଯ୍ୟ
ବାଟ ଗବ ଗଛ ହଣାଇ ଦେବ ଆଜ ?
ଗୁର ମାଛିପିଳ କଅଡ଼ ଦେଲେ ପାଇ
ବାଟ ଗବଗଛ ନ ଯମ୍ବୁଲା, ପିଠିର ସାନଭାଇ ।

୩୧ । ରାଧିକା ଦୂତିକା ଏ ଦୁହେଁ ସାଙ୍ଗଁରଆ
ନଖ ଚ ଭୁଟ ବେଳ ବୁଢ଼ାନ୍ତ ଶ୍ରୀକୃଷ୍ଣ ’ନାଉରଆ
ଶ୍ରୀକୃଷ୍ଣ ନାଉରଆ ନମ ନମ ଅଣ୍ଟ
ଉଡ଼ିଯାଇ କୁଣ୍ଡ ଧଇଲେ ରାଧିକା ବେନ ଭୁଜ
ରାଧିକା ବେନ ଭୁଜ ଭାଗ୍ୟେ ଥିଲେ ପାଇ
ନଥାଁ ପାଖେ ଜଳ ଯେସନେ ତରଳଇ
ଢେଳକ ପେଣ୍ଡ୍ର ଯେସନେ ଛପି ଥାଇ
ଗାଈକ ବାଘୁଣୀ ଯେସନେ ପଲଣଇ
ମୀନକୁ କଣ୍ଟି ବଗ ଯେସନେ ଜଗିଥାଇ
ବେଙ୍ଗକୁ ଅଇର ଯେସନେ ଗିଳଇ
ମାଛିକ ମାକଡ଼ା ଯେସନେ ବଳଥାଇ
ସେଇ ପ୍ରକାରେ ମାଙ୍କୁ ରାଧିକା,
ନ ଦେଲେ ନ ଛାଡଇ ।

୩୨ । ମଞ୍ଜନ ହୋଇ ରାମ ସଭାରୁ ଉଠିଗଲେ
ଜାନୁରେ ଲକ୍ଷଣ ଧନୁରେ ଗୁଣ ଦେଲେ
ଧନୁ ସେ ରଡ଼ମଡ଼ କରଇ ପ୍ରଚଣ୍ଡ
ଭାଙ୍ଗିଲା ଧନୁ ସଭା ମଧ୍ୟର
ସେ ହେଲା ନବଖଣ୍ଡ
ଖଣ୍ଡ ଖଣ୍ଡ ହୋଇ ସେ ନବଖଣ୍ଡ ମହୀ
ଖଣ୍ଡକ ଉପରେ ଖଣ୍ଡେ ଅଛି ରହି

Digitized by srujanika@gmail.com

ଖଣ୍ଡା କାଟି ଖପର ତ୍ରିଶୂଳ ବଗଜଇ
ଖଟୁଲି ଉପରେ ଧୂଳି ବାଙ୍କିଆ,
ଲକ୍ଷ୍ମୀନ୍ଦ୍ର ଝୁଲୁଥାଇ ।

୩୩ । ଡେଙ୍ଗ ଶିଉଳରେ ବଣି କରେ ବାସ
ଫୁଲ କଢ଼ି ଲାଗି ପୋକେ ମେ ବର୍ଣ୍ଣ ମନରେ ହରଷ
ଫୁଲ ଗନ୍ଧ ଉଡ଼ ଯେ ପଚର ଗନ୍ଧ ଝଡ଼
ସେହ୍ନ ପରକାଟେ ପରପୁରୁଷ ଜବାବେ ଗନ୍ଧ ହାଗ ।

୩୪ । ରାବଣ ସଭାରେ ପ୍ରତିଜ୍ଞା କରେ ବୀର
ଅଜ୍ଞା ଦେଇନାନ୍ତି ଶ୍ରୀ ରାମଠାକୁର
ଆଜ୍ଞା ଦେଇଥିଲେ ମୋଡ଼ନ୍ତା ରାବଣ ଦଶ ଶିର ହେ
ଦଶ ଶିରକୁ ଯେ ଦଶଭୁଜ କଲା
ବାମ ତ କରେ ହଳ ମୂଷଳ, ହୃଦରେ ବନମାଳା ହେ
ହୃଦରେ ବନମାଳା କଣ୍ଠରେ ତୁଳସୀ
ଯେତେ ପାପମାନ ଦହନ, ଗୋବିନ୍ଦ ନାମ ଘୋଷି ହେ
ଗୋବିନ୍ଦରେ ଗୋପାଳ ତା ନାମ ଗୋବର୍ଦ୍ଧନ
ଗରୁଡ଼ ପିଠିରେ ବିଜୟେ ଭଗବାନ
ମତେ ଦେଖାଇବୁ ପକ୍ଷୀ ଗରୁଡ଼, ଦ୍ୱାରିକା ଭୁବନରେ
ଦ୍ୱାରିକା ଭୁବନରେ ଈଶ୍ୱରଙ୍କ ଥାନ
ତାଙ୍କି ତ ମଲେ ଗତି ମୁକତି
ତା ପିଣ୍ଡକୁ ଉଦ୍ଧାରଣ ହେ ।

୩୫ । ଫୁଲ ଚୋକ୍ତ ଚୋକ୍ତ ଦଂଶିଦେଲା କାଳୀ
ପଦ୍ମପତ୍ର ପରେ ଢଳଲେ ବନମାଳୀ
କାଳୀ ଦଂଶି ଅବା କରିବ ଯେ କଣ
ଯାହାର ବାହନ ପକ୍ଷୀ ଗରୁଡ଼,
ଉଡ଼ାଇ ଦେବ ବିଷ

---

ଶିଉଳ—ଶିମିଳି ।

Digitized by srujanika@gmail.com

ଏ ବିଷ ନେଇ ଯେ କରାଇବ କସ
ସାରି ତ କରେ ଗୁଜ ଲଙ୍ଗଳ ଲଗାଇ ନେଉଛ ଭସ
ହେ ଭିଷ ପଶୁ ପଶୁ ଯେ ବାହୁଟି ପଶିଲ
କର୍ଣ୍ଣ ତ ମୁଣ୍ଡ ପହର ହଳଆ ବୁଢ଼ ମଲ
ମୋ ହଳଆ ଭଦିଗଲ ।

୩୬ । ରାଧା ଗଉଡୁଣୀ ଡାକେ ହେଲ ବାଇ
ରାମର ଭଉଘର ନ ଗଲୁ ବଦାଇ
ତେଣୁ ତ କର ଶାପ୍ୟ ପାଇଛୁ
ବୁଲଇ ବଲୁ ତନ୍ତ
ଏ ସାଇ ସେ ସାଇ ବଣିଆ ମଟି ସାଇ
ଦଧି କଣ ବୋଲି ଡାକ ପକାଇ ଏ ଚନ୍ଦ୍ରାବଳୀ ରାଙ୍କ ଙ୍କେ ।
ଚନ୍ଦ୍ରାବଳୀ ରାଣୀ ଗୋ କେ ଖାଇବ ଦହି ?
ବଡ଼ ଦୋଗୁରୁଣୀ ମାଙ୍କ ରାଧିକା କହ୍ନାଇ ଏଙ୍ଗେ ବାଇ ।
ସମସ୍ତେ ବୋଲନ୍ତି କହ୍ନାଇ ସଙ୍ଗେ ବାଇ
କାହ୍ନ ପଣତରେ ହନେ ଦେଖି ନାହିଁ
ଲୋକ ନଇଜାକୁ ଘୃର ମରୁଛନ୍ତି ଜହର ବିଷ ଖାଇ
ଜହର ବିଷ ଖାଇ ନ ମରନ୍ତି କେହି
ଆହୁରି ଦରପେ (ଦ୍ରବ୍ୟ) ଘୃରି ଖାଇ ସିନ୍ଦୁର ଚୁଡ଼ା ଜହି ।

୩୭ । ଛାଳ ତ ପଲଖ ଖଜୁରି ଥ.. ବାଙ୍କ
ମଣ୍ଡପ କଣରୁ ଗୁରା ଡାକଇ ରେ ପଞ୍ଜବନ ଡାଏ (ଡାକିବା)
ଡ ପିଲ ଡ଼ୁପିଲ ଘୃରଇ ନେଲ ଠିପି
ଛ ପଣ ନ ଗଲ ଥନ ଗୁଣ୍ଡକ ଧ୍ରୁରକୁ ହନେଣ ଫିଟି ।

୩୮ । କାଳିଆ କୁକୁର ପଞ୍ଜରାରେ ଛଉ
ଘର ତ ପୁଅ କଥା ମନେ ପଡ଼ିଲେ ହାଣ୍ଡି ନେଜ ଥାଇ

Digitized by srujanika@gmail.com

ହାଣ୍ଡି ମାଜୁ ମାଜୁ ଲଗିଗଲା କଳା
ତୁମେ ତ ଗଛ ଆମେ ବକଳ ତୁ ମତେ ଧରି ପଳା
ଧରି ପଳାଇଣ ନ କରିବୁ ମାନ
ଶରଧାରେ ଗୁହ ଡାକିବୁ ଆସ ମୋ ନୂଆ ଜହ୍ନ
ଆସ ମୋ ପ୍ରାଣଧନ ।

୩୯ । ଡାକଲେ ଶୁସଇ କାଠର କଣ୍ଢା
ଗୃଷ୍ଟ ନ ହବ ଲେ ବଡ଼ ଦାରୁଣ, ସୁଦସ୍ତା ବସ୍ତୁ ନାଇଁ
କେ ଦୟା କରିବ **ବୋପାଇ** ଘରେ ଥାଇ
ଚମ୍ପାକଢ଼ି ଫୁଷ୍ଟ ନଗା ନୁହେଁ ବିକାଶଇ
ଯୋଉଦିନ ଚମ୍ପାକଢ଼ି ଫୁଟି ବିକାଶିବ
ସେଦିନ ଗୃଷ୍ଟର ଦୟା ବର୍ଷିବ
ମାତାକୁ ଆଗୋଚର
ପିତାକୁ ନମସ୍କାର ହେ ।

୪୦ । ବନସ୍ତ ପୋଡ଼ଇ ଶାଳୁଆ ମେଲେ ଗଜା
ଦଉଡ଼ା ପକାଇ ହସ୍ତୀ ଧଇଲେ ମହାବଳୀ ରଜା
ମହାବଳୀ ରଜାର ଅଠରଗଣ୍ଡା ରାଣୀ
କାହାର ନୋହିଲା କୁଳ ସମ୍ପତ୍ତି ସେ ଗଲେ ଯୋଗୀ ହୋଇ
ତୁମେ ନାଥ ଯୋଗୀ ହେଲେ ମୁଁ ହେବି ଯୋଗିଆଣୀ
ଏକା ପଥେ ଯିବା ଦୁଇଗୋଟି ପରାଣୀ
ତୁମେ ହେ ନାଥ ବସିଥିବ ଉତ୍କଳ ବଟମୂଳେ
ମୁଁ ଭିକାରୁଣୀ ଭିକ୍ଷା କରିବି ଏ ବଙ୍ଗ ବଜାରରେ
ବଙ୍ଗ ବଜାରରେ ତେଲେଙ୍ଗୀ ଭୂଆସୁଣୀ
ଶାଗ ପୂଡ଼ଗଲା ଝିଅ ଜ ଆଣି
ଗଙ୍ଗାରୁ ନୀର ଆଣି

---

ମଡପ – ମଣ୍ଡପ; ଗୁହ—ଗୋହ, ଛାଗ—ଛାଙ୍କ । ବୋପାଇ—ବାପା ।

Digitized by srujanika@gmail.com

ଗଙ୍ଗାରୁ ଘର ଆଣି ଲେଉଟାଣି ବେଳେ
କୃଷ୍ଣଙ୍କୁ ଭେଟିଲା କଦମ୍ବ ତରୁ ତଳେ
କଦମ୍ବ ତରୁତଳେ ବସିଛି କଳାକାହ୍ନୁ
କରରେ ଭିଡ଼ିଛି ଅପୂର୍ବ ନୂଆ ବେଣୁ
କଟି ତ ତଟେ ପୀତ ବସନ, ପିନ୍ଧିଛି ଗାଳ ଭାନୁ
ବଡ଼ ରସଦାୟୀ ପ୍ରାଣସଜନୀ ଚିହ୍ନିଛି ବାଳଭାନୁ ।

୪୧ । ଜାଗନାମେ ଶବର ବନରେ ବୁଲୁଥିଲା
ଶର ପେଷିବାକୁ ସେ ବୃକ୍ଷିଏ ପାଞ୍ଚିଲା ।
ମନ କରେ ଧରେ ଚୈତନ୍ୟ କରେ ଗୁଣ
ଦେହକୁ କରେ କଟଣ ବିବେକ କରେ ବାଣ
ସେତେକ ବାଣ ବିନ୍ଧି ନେଉଥିଲା ମୋର କଚ୍ଛି
ରାଧା ପାଦ ଲାଗି ସେତେବେ ଶ୍ରୀଅଙ୍ଗ ବଥାଉଛି ।

୪୨ । ଆଖୁ ତ ମଧୁର ଗୁଡ଼କୁ ଖାଏ ଜନ୍ଦା
ସବୁ ଗୁପୀମାନେ ଗୁପ ମଥୁରା ରାଧିକା ରତ୍ନ ବନ୍ଧା ।

୪୩ । ଗୁଉଁକଲ୍ପତ ମନ୍ଦରେ ଘିଗିଡ଼ୀ ଦାଣ୍ଡକୁ,
ତିନି ରଥ ସଜ କର ସେ ମଞ୍ଚ ମଣ୍ଡଳକୁ
ତିନି ରଥେ ତିନି ଜଣ ବାମନ ମୂରତି,
ରଥ ରକ୍ଷିବାକୁ ଅର୍ଜୁନ ସାରଥି
ବେଗେ ରଥ ବାହା ଘଣ୍ଟରେ ଅର୍ଜୁନ,
ଦ୍ୱାରକା ପାହୁ ଘଣ୍ଟରେ ଢ ଢ ଢ ଢ
ଦ୍ୱାରକାନ୍ତ ଭୁବନ ଈଶ୍ୱରଙ୍କ ସ୍ଥାନ,
ସେ ସ୍ଥାନେ ନ ଲଭିଲେ ଗତିକ ମୁକତି
ଜୀବନ ଅକାରଣ ହୋ ଛି, ଛି, ଛି, ।

୪୪ । ନିକଟେ ରବ ଦେଉ କଳା କ କୋଇଲି
ଶାଶୂ ତ ଦୁରୁଜନ ନଣନ୍ଦ ଜଞ୍ଜାଳୀ,

Digitized by srujanika@gmail.com

ଜହ୍ନୁର ହୋଇଲେ ମାଉଁ କ ଖାଇବୁ
ଝିଗାଂସି ଦେବେ ଗାଳି, ଢୋ ଢ ଢ ଢ
ଏ ମୋ···ଅଳପର ବୟସରେ ନବୁଝଇ ଖିଆ,
ରାଧିକା ହୋଇଲେ ଜଳକ କେଉଁଣ୍ଡି
ଶ୍ରୀକୃଷ୍ଣ ପାଣିଲୁଆ ଢୋ ଢ ବଜଲା—ବଜଲା !

୮୫ । ଅମୃତ ଧାର ଧାଉ ପଣସ ଝାଙ୍କୋଷ,
କାହା ବୋଲେ ପୁଅ ଜେଇଁଲେ ପାଟେଶ୍ୱ
ପାଟେଶ୍ୱର ଜେଉଁ ଜେଉଁ ମଠକଲ ଝଣ୍ଡା,
ମୋ ପୁଅ ଲାଗି ଯେ କରିବ ମଙ୍ଗଳବାର ଓଷା
ମଙ୍ଗଳର ବାର ଓଷାରେ କ କ ପୁଷ୍ପ ଲୋଡ଼ା ?
ଜାଣ୍ଟି ଯୁଇ ମଲ୍ଲୀକ ମାଳତୀ କେତକୀ ଶତଦଳଯୋଡ଼ା
ଢୋ ଢ ଢ ବଜଲା ଟି···ଟି···ଟି ।

୮୬ । ମୋ···ସେ ପୁଷ୍ପ ର ତୋଳୁ ତୋଳୁ ଦଂଶି ଦେଲ କାଳୀ,
ପଡ଼୍ ପଦରେ ଭ୍ରମ୍ଭ ପଡ଼ିଲେ ଅପସର,
କୁଆଡେଇଗଲା କାଳୀ ତା କେଶ ଆଣ ଧର,
ତୁଳି କଠାଉ ଛଳେ କରେ ଶରଣ
ପଡ଼ନ୍ତି ପାଦତଳେ ଢୋ ଢ ଢ ଢ ।

ଦ୍ରଷ୍ଟ:—

୮୭ । ହଳ ପୋତ ଦେଲ ମଞ୍ଜି ତ ମଣ୍ଡଳକୁ,
ସେ ହଳ ବୁଲୁଅଛି ଯେ ଅଗାଧ ଜଳକୁ,
ଅଗାଧ ତ ସିନ୍ଧୁ ଜଳରେ ବୁଣିଲ ଧାନବତ ମଞ୍ଜି
ତା ଡାଳ୍ପତ ତଳକୁ ଯେ ତା ଚେର ଉପରକୁ
ତା ଡାଳି ଭେଦଛି ଯେ ପାତାଳ ବମ୍ବରକୁ, ଢ ବଜଲା ।

Digitized by srujanika@gmail.com

ସ୍ଥୂଳ ତ ବନ୍ଧନରେ ନ ବାନ୍ଧିଲ କିଛୁ, ସୂତର ବନ୍ଧନରେ
ସେ ନ ଭୁଲିଲ କୃଷ୍ଣ
ଜାଣିଥିଲେ ଭାଇକି ମନଆ ଜାଣିଥିଲେ କହରେ ମ ମ ମ ।

ଉତ୍ତର—ଏ ମୋ...ମନ ତ ପବନକୁ ପୋଛି ଦେଲରେ ମନ
. ସେ ମନ ବୁଲୁଅଛି ଯେ ଏ ମହାମଣ୍ଡଳ ଅ...ହା...।

୪୮ । ରେ...ବାଉଳା ତ ବଳଦରେ ଗୁଣେ ଶିଖ ଗଲେ
କି କଥା କହିବ ଭାଇରେ ମନଆ, ଜାଣିବୁ ଅମୂଲ୍ୟରେ ।

୪୯ । ମନ ତ ପଶୁରଇ ଜ୍ଞାନ ସନ୍ଧିବାଟ, କେମନ୍ତ ପ୍ରକାରେ ସେ
ବସିଛି ଗୋଲିହାଟ
ମାନ୍ଥୁକିତ ସାଂକୋଳ ପମକୁ ନାହିଁ ବାଟ,
କେମନେ ଫିଟିବୁ ଯନ୍ତ୍ର କିଳଣି
ମୁଁ ଯିବ ଗୋଲିହାଟ ।

୫୦ । ଗୋଲିହାଟ ସେ ପାଖରେ ଶ୍ରୀହରି ପାଟଣା,
ଗୋବିନ୍ଦର ନାମଟି ଲଗିଛି ବିକାକିଣା
ହାଟ ସରିଗଲେ ତ ମନାଇ, ବଜାରେ ହେବୁ ବଣା ।

୫୧ । ସଲଖ ସୁନ୍ଦର ଯେ ଗଉଡୁଣୀ ହୋ ଟୋକୀ
ଆଜକତ ଗୋପପୁରେ...ଯାଇବା...ଏ
ଏ...ଆଜକତ ଗୋପପୁରେ ଯାଇବା
ନ ନେବୁ ଦହି ଦୁଧ
ନ ନେବୁ ଦହି ଦୁଧ ହୋ
ଏ...କଂସର ଭଣଜା ନାମକରେ ହଟିଆ,
ମାଗିବ ରତ୍ନଦାନ...ଏ ମାଗିବ ରତ୍ନଦାନ ହୋ



Digitized by srujanika@gmail.com

ରତ୍ନ ବେଦି ସୁରକ୍ଷିତ ଯେ ତୋଷିଲେ ତାଙ୍କ ମନ
ସରଳ ସୁରତ ମାଣିଁ ରାଧିକା···
ସରଳ ସୁରତ ମାଣିଁ କରେ ରାଧିକା,
ସମ୍ଭାଳ ପଜବନ ହୋ
(ଘୋଷା ଉପର ଧର) ବାଟର କାଙ୍କଣୀ ବୁଢ଼ୀ କରେ ମାଜସୀ,
ସମ୍ଭାଳ ପଜବନ ହୋ ।

୫୨ । ମାଲ୍ୟାଣୀ ମାଜପୀ ବୁଲଇ ବନ ବନ
ଏକା ପୁଷ୍ପ ଲାଗି ଜଳଇ ନୟନ
ତୁଳୁଥାଇ ପୁଷ୍ପ ପୁଛୁଥାଇ ଲୁହ
ନ ଯାଇ ଜୀବନ ସାଙ୍ଗ ରହିଛୁ
କହ୍ନାଇ ଲାଗି ଦେହ ହୋ···
ଏ···କଦମ୍ବ ତରୁତଳେ ବଜାଉଛନ୍ତି ବୀଣା
ନାଚୁଛି ଛନ୍ଦରେ ଗୋପୀ ଗୋପାଳ
ମଝିରେ ଚନ୍ଦ୍ରସେଣା
ଚନ୍ଦ୍ରସେଣା ବୋଲଇ ମୋ ଘର ବୁଡିଲା
ହିପଣ୍ଡ କଳାଭୂତ ରାଧାକୁ ଗିଳିଲା
ହିପଣ୍ଡ କଳା ଭୂତର ସରୁ ସରୁ ଦାନ୍ତ
ରାଧାକୁ ଗିଳିଲା ଲାଗିଲା ରକତ ।
ଏ···ମୋତେ ଗିଳିବାକୁ ଭୂତ ବସିଛି ଖୋଜୁଛି ଦାଣ୍ଡ ବାଟ
ଖୋଜି ଦାଣ୍ଡ ବାଟ ନ ପାଇଲା ଭେଟ
ଜଗିଛରେ ଥିବ ପୁଷ୍ପ ବାଗରେ
ଏ ଜଗିଛରେ ଥିବ ପୁଷ୍ପ ବାଗରେ···
ଅବଶ୍ୟ ଦେବ ଭେଟ ।
ବାଟର ପଳଶା ଆଡ଼କରେ ଲହସା
ଅବଶ୍ୟ ଦେବ ଭେଟ ହୋ···।

୫୩ । କଳା କାଇଁଚଆର ଯେ ହରିଣିଆ ବୁକୁ
ନାଗ ତ ବିଷ ଦେଇ ମାଇଲେ କାଳିଆ ପୁରୁଷକୁ

Digitized by srujanika@gmail.com

କାଳିଆ ପୁରୁଷର ସେ ଉତ୍ତମ ବେଶର
ଚନ୍ଦିଁତ ମଣ୍ଡପ ଚଢ଼ି ଉପର
ଭ୍ରମର ଗୁମ୍ଫା ଘର ହୋ···
ଭ୍ରମର ଗୁମ୍ଫା ଘର ମୟୂର କରେ ନାଚ
ସ୍ୱମ ଅରଗଡ଼ ଯମ ଦୁଆର
ସର୍ପକୁ ଅଛି ବାଟ ହୋ···।

୫୪। କହ୍ନା ଝରମଳ ପୁନଅଁ ହବ ବୋଲି
ଗୃହ ବନ୍ଦାଇବ ଝିଅ ରୁକ୍ମଣୀ
ଗଙ୍ଗାରୁ ନୀର ଆଣି···
ଗଙ୍ଗାରୁ ନୀର ଆଣି ଲେଉଟାଣି ବେଳେ
କୃଷ୍ଣଙ୍କୁ ଭେଟିଲେ ଅଧ ବାଟରେ
କଦମ୍ବ ତରୁ ତଳେ ହୋ···

## ହଳିଆ ଗୀତ (ପାରଳାଖେମିଡ଼ି, ଗଞ୍ଜାମ)

୫୫। ଆଜର ଖଗଠାରୁ କାଲର ଖଗ ଟାଣ
ପଞ୍ଚଶରଜନ ଖଗ ଯେନଇ ପବଣ
ବୋଇଲୁ ବନ୍ଧ କ ବନ୍ଧାଇଛି ଶ୍ରୀବମ
ବରଷା କଲୁ ଟାଣ ଯେ।

୫୬। ହଳ ତ ବାନ୍ଧିଲାରେ କପିଳା ବଳଦକୁ
ଶଗଡ ବାନ୍ଧିଲ ରେ କାଆଟୁ ହାଟକୁ
ଆହା କହୁଥିଲୁ ଶଳା ଗଉଜ, ଶିଢପାନିଆକୁ ରେ।

୫୭। ଗାତ ତ ଫୁଟୁ ଫୁଟୁ ତୁଣ ଘଡ଼ୁ କଲ
ବାଡ଼ ତଳେ ଗୀତ ଶୁଭଇ···ଗୀତ ଶୁଭଇ
ଶଗଡ଼ ବାହୁଡ଼ିଲ···ହୋ।

Digitized by srujanika@gmail.com

୫୮ ।	ସକାଳୁ ଉଠିଲେ ତ ଘଇତା ମାରେ ମୁଖି
ବାଳତ ବାନ୍ଧ ନାହିଁ ଝୁମ୍ପୁ ଚିମୁଣ୍ଡୀ ଚୁଙ୍କା
ଆହା ଗୁଳର ଚ ନଥା ତ ମୂଷା ଘେନଗଲା
ଘଡ଼ର ମାଳପା ପିଲା ଢାଳ ଦେଲା
ବୋଇଲା···କା ଘେନ ବାଳ ହୋ ବାନ୍ଧିବ
ରଜମା ପାହ୍ବଗଲା ସେ···ହେ···ହେ ।

୫୯ ।	ମାଆ ତ ବୋଲେ ଝିଅ ଲୋ ଗେଲାଇ ଦୁଲାଇ
ବାପା ବୋଲେ ଝିଅ ଲୋ ରୂପାର କୁନ୍ଦାଇ
ଓହ୍ଲା ଘାଇ ରଇଜଲା ଡ଼ାକଇ ଅପୂର୍ବ ଖଜାଗୀଇ ଯେ ।

୬୦ ।	କାଲୀ କେଉଟୁଣୀ ସଖୀରେ ନୁଳଆ ଘର ବୋହୂ
ଭେଜ ପଣତରେ ହୋ ଧରିଛୁ ଲେମ୍ବୁଜ
କୋଉ ରଇଜଲା ଲୋ ଦେଖିଲ
ପାଶଲେ ଚୋକ ଖାଉ ହେ ।

୬୧ ।	କାଳଆ ଜାହ୍ନଆ ଧନରେ ବାନ୍ଧଥିଲ ହଳ
ହାବୁଡ଼ ତ ଗଲା କୋଉଗଛ ମୂଳ
ବୋଇଲା ଧୀରେ ଧୀରେ ଅଡାଅ ମୋ ହଳଆ
ଭାଙ୍ଗିବ ଲଙ୍ଗଳ ହେ ।

୬୨ ।	ବୋହୂ ବୋହୂ ବୋଲି ଲୋ ଡ଼ାକଇ ସାହ୍ନ ସାହ୍ନ
ବୋହୂ ତ ଯାଇଛୁ ହୋ ନଈକି ଗାଧୋଇ
ତରସ ତରସ ହୋ ବେଳ ତ ଗଲା ଆସି
ସାଧବ ସାଧବାଣୀ ହୋ ବୋଇତ ମଙ୍ଗେ ବସି ।
ଶାଶ୍ ପଚ୍ଚରଇ ବୋହୂ ଲୋ, କେତେ ରାତ ଅଛୁ
ଝଁକମକ ତାର ପହଜେ ଟେକିଛୁ
ତୁମ ପୁଅ ବଡ ହଟିଆ ପୁଅକୁ ଖେଳାଉଛୁ ଯେ ।

Digitized by srujanika@gmail.com

୬୩ । ମେଘ ତ ବରଷଇ ଅସରା ଅସରା
ତୋର ବାଟ ମୁହଁରେ ବଣିଆ ପସରା
ତୋର କଣୁଥିଲି କି ଧନିଆ, ହଲଇ ନାକଚଣା ଯେ ।

୬୪ । ହଟହଟାଇକି ଧରିଲା କମ୍ପଜର
ବୈଦ୍ୟ ଲଗିଅଛି ହଟିଆ ନାଗର
ନାଡ଼ି ଛପି ବଡ଼ ବାନ୍ଧିଲେ ଧରଣ କରି କୋଳ ଯେ ।

୬୫ । ଅନାଇ ଅନାଇ ତ ନୟନ ଟଳିଲା
ଏତେବେଳେ ଯାଏ 'ଘୁଟଣା' ନ ଆସିଲା
ଶିଙ୍ଘୁଥିଲା ମୃଗ ପଇତ—ବାଟରୁ ବାହୁଡ଼ିଲା ଯେ ।

୬୬ । ବେଳ ତ ବୁଡ଼ିଲା ହୋ କାଉ ଖୋଜେ ବସା
ଆହା ତୋର ଖୋଜ ନାଲି ଗାମୁଛା···ଗାମୁଛା ଯେ
ଭେଣ୍ଡିଆ ଝାଳ ପୋଛୁ ଯେ ।

୬୭ । ଆଷାଢ଼ ମାସ ସଟିରେ ମେଘର ଗର୍ଜନ
ବୋଇଲି ମୋର ଲଖଦନ୍ଧା କନ୍ୟାକୁ ହୋ
ପାଣ୍ଡବ ଅର୍ଜୁନ ଯେ ।

୬୮ । ଆଜ ଗୁରୁବାର ସଖୀରେ କେଉଟର ପାଳ
ପାତିଲା ସରୁ ଜାଲ ପଡ଼ିଲା ମହୁରାଳ
ମହୁରାଳ ମାଛକୁ ହୋ କରଇ ରାଇତା
ବୋଇଲା—ଘଇତା ମଲା ବୋଲି କରି ହୋ
ଲଙ୍କାରୁ ଆସିଲା ବାରତା ଯେ ।

୬୯ । ସକାଳ ହେଉଁ ହେଉଁ ବୋବେଇଲା କାଉ
କଳା ବୋଦା ଦେବି ମାତା ଗୋ ମଙ୍ଗଳା, ବୋଇତ ଚଳିଯାଉ ।

୭୦ । ପର୍ବତ ଶିଖରେ ଗୋ ଭାଙ୍ଗିଲି କଅାଁର
ସୁନାର ଲଙ୍ଗଳକୁ ରେ ରୂପାର ଜୁଆଳି
ମଣିମାଣିକ୍ୟର ଯେ ବଳଦ ହଳିଆ ବନମାଳୀରେ ।

୭୧ । ଭାସିଲା ବୋଇତ ନ ଲାଗଇ କୂଳେ
ଭାସିଗଲେ ମାନରେ ଗୋବିନ୍ଦ ଅକାତ ଜଳରେ ।

Digitized by srujanika@gmail.com

୬୨ । କାନ୍ଦ କାନ୍ଦ ହୋଇ ନ କାନ୍ଦ ବଇଦେହୀ
ବେନ ମାସେ ରାମ ଆସିବେ ଅଯୋଧ୍ୟା ପାର ହୋଇ ।

୬୩ । କହଇ ମଚ୍ଛିନ୍ଦ୍ର ଶୁଣ ହେ ଗୋରଖ
କମଳ ଶତଦଳେ ମନକୁ ରୁନ୍ଧି ରଖ ।
କାଳଜଳ ଗରଳ ଉଭୁର ପାନ୍ତୁ ଯେବେ,
କି କରିବ କାଳେ ହେ ମଚ୍ଛିନ୍ଦ୍ର,
କଟାକ୍ଷ କରେ ଥିଲେ ହେ ।

୬୪ । ଖଣ୍ଡ ଖଣ୍ଡ ହୋଇ ନବଖଣ୍ଡ ମହୀ
ଖଣ୍ଡକ ଉପରେ ଖଣ୍ଡେ ଅଛି ରହି ।
ଖଟଦୋଳି ଉପରେ ବାଙ୍କିଆ ଖେଳଇ
ଖଡ଼ଗ ଖପର ତ୍ରିଶୂଳ ବିରାଜଇ ।
ଖଟନ୍ତି ଚରଣେ ହୋ ମଚ୍ଛିନ୍ଦ୍ର, ବାଙ୍କିଆ ଖେଳୁଥାଇ
ଗୁପତେ ଗୁମ୍ଫା ମଣିକ ଜଗି ରହିଥାଇ ।

୬୫ । ଘନଶ୍ୟାମ ପ୍ରଭୁ ମଦନମୋହନ
ଘୋଟି ରହିଛନ୍ତି ଚତୁର୍ଦ୍ଦିଗ ଜାଣ ।
ଘଟସ୍ଥେ ବନ୍ଧ ବାନ୍ଧ ଆଣ୍ଠୁ କରି
ଘଟର ଶବଦକୁ ବସନ୍ତି ଆବୋରି ।
ଘଟ ଛାଡ଼ି ଘଟେ ରହ ଅନ୍ୟ ଦ୍ୱାରେ ଯାଇ
ଘୋଟିବ ଅଚଳେ ହେ ମଚ୍ଛିନ୍ଦ୍ର, ଘାଟିଆ ଯିବେ କାହିଁ ?
ନଶି ଦ୍ୱାର ନୁହଇଟି ବାଟ
ନଷ୍ଟପ୍ରେ ଦେଖିବୁ ମାଳାନ୍ଦ୍ର ବହାଘ ।

୬୬ । ନାନା ଲୀଳା କଉତୁକେ କରନ୍ତି ବିହାର
ଲୀଳା କରୁଛନ୍ତି ଅମନ ଶିଖ
ସ୍ୱରଧାମେ ସ୍ୱର ରୂପେ ଛନ୍ତି ରହି
ଚତୁର୍ଭୁଜେ ଶର ଆୟୁଧ ବିରାଜଇ ।

Digitized by srujanika@gmail.com

ଚଞ୍ଚଳ ମନକୁ ଥିର କରୁ ନପେବେ
ଚନ୍ଦ୍ରଘରେ ରୁକ୍ମିଣି ମହୁନ୍ଦ , ଜଳ ପଡ଼ୁନେବେ
ହଂପାଖୁଡ଼ା ମଧ୍ୟ କେଶର ଝରାଇ
ଛନ୍ଦ ଚନ୍ଦନବନ ଆମ୍ବ'ରମ ଯେନରେ ମହୁନ୍ଦ, ଭ୍ରମର ଚୁମ୍ବଇ ।

୭୭ । ଆସିଲା ଖରାକାଳ ଛରା ବେଣ୍ଟ ଘୁଇ
ଚଇତ ମାସରେ ପେ ନମ୍ବ ବଉଳାଇ
ଭୁନେମ୍ବ ବଉଳ ଗୋ ରାଧିକେ, ଶ୍ରୀକୃଷ୍ଣ ଦେହ ଛୁଇଁ ପେ ।

୭୮ । ଚକ୍ଷୁସି ରାଧିକା ଚତୁରପଣ କଲା
ବେଣୀ ମୂଳ ଗୁଣା ହଜାର ପଦକେ ଖୋଜାଇଲା ।

୭୯ । ସଭାରେ ବସିଛନ୍ତି ଦଶରଥ ପୁଅ
ତାଙ୍କ ଦୃଷ୍ଟି ଦେଲେ ଜନକ ଋଷି ଝିଅ ।
ସତେ ଯଦି ଈଶ୍ୱର ଖଞ୍ଜନ୍ତା ଏହି ବର
ଲକ୍ଷେ ଚମ୍ପା ଶିରେ ମୁଁ ମଣ୍ଡିବି ପେ ଗମ୍ଭୁଣ ମନ୍ଦାର ହେ ।

୮୦ । ଆଜ ତ ଗୁରୁବାରେ ଲିପଇ ଘରଦ୍ୱାର
ଓଷାତ ପୂଜିବାକୁ ହୋଇଛୁ ତିଆର
ଓଷାତ ପୂଜୁ ପୂଜୁ ଆସିଲା କମ୍ପ ଜ୍ୱର
ବଇଦ ଲାଗିଛି ଛଇଳ ନାଗର ହୋ ।

## ହଲିଆ ଗୀତ (ଭୂୟାଁ କେଉଁଝର)

୮୧ । ଓଡ଼ବ ବାଇଦରେ ମୃଦଙ୍ଗେ ଦେଲେ ଟିପ
ପ୍ରଥମେ ବନ୍ଦାଣ ପଣ୍ଡ ବଡ଼ାମର ବୁଢ଼ା
କୁନ୍ଧାଇଲା ଗୁଡ଼
ଏ ପଦ ବନ୍ଦଣା ଲାଗେ ବଡ଼ାମର ବୁଢ଼ୀ ।

Digitized by srujanika@gmail.com

କାଟିଗଲ ଚୁଅ
ଏ ପଦ ବନ୍ଧାଣ ବଡାମର ଚୁଅ ।
କାଟିଗଲ ମଞ୍ଜୁ
ଏ ପଦ ବନ୍ଧାଣ ଲାଗେ ବଡାମର ବନ୍ଧୁ ।
ଫିଟାଇଲ ହାଣ୍ଡି
ଏ ପଦ ବନ୍ଧାଣ ପଢ଼େ ବଡ଼ାମର ନାତି ହୋ ।

। ୨ । ପିଚ ଚଡ଼ାଇର ନାଞ୍ଜି ହଳଦିଆ
ମୁଣ୍ଡ ହଳଦିଆ
ଡାଳ ଘର ମାର ସ୍ୱାମୀ ରଙ୍ଗର କଟକ ବଳଦିଆ
ଖାଅ ଖାଅ ବଳଦ ଜଳରେ ଦୋଷ ନାହିଁ
ପାଣିରେ ଦୋଷ ନାହିଁ
ବାର ବରଷର ନବ ତରୁଣୀ, ଭମରା ଛୁଇଁ ନାହିଁ ।

୮୩ । ନୂଆ ପୋଖରୀରେ ମାଛରଙ୍କା ବୁଡ଼ମଲା
ଘରେ ଘରେ କାନ୍ଦଣା ପଡ଼ିଲା କା ଘରେ କିଏ ମଲା ।

୮୪ । ଘଣ୍ଟ୍ କଣ ଚୂଡ଼ା କୁଟେ ଧମକ ଉଠଇ ଯେ ଭୂଇଁ
କରେ ବାଙ୍ଗଶ ସରୁମୁହାଁ
ଯା ବୋଲି ପଠାଇଦେଲି
ପାରବେ କି ନ ପାରବେ ପୋଲା ପାଣି ବୁହା
କରେ ବାଙ୍ଗଶ ସରୁମୁହାଁ ।

୮୫ । ହଳ ମୁଁ ଫାନ୍ଦିଲି ମନ ପବନକୁ
ପଥର ବୋହିଲି ହୋ ବଡ଼ ଦେଉଳକୁ
ବଡ଼ ଦେଉଳରେ ଝିଞ୍ଜିର କବାଟ
ମାଛିକୁ ଶିକୁଳି ହୋ ଯମକୁ ନାହିଁ ବାଟ
ଆହା ମୋ କେଉଁ ପଥେ ଗ୍ରେର ହୋ ପଶିବେ
ଭଙ୍ଗ ବେ ରହ୍ନଖଟ

Digitized by srujanika@gmail.com

ରତ୍ନଖଟ ଭାଙ୍ଗୁ ଭାଙ୍ଗ୍ ଭାଙ୍ଗିଲେ ପାଟେଶ୍ୱରୀ
ତଳ୍ପଁ ବସି କାନ୍ଦେ ହୋ ରାଣୀ ମନ୍ଦୋଦରୀ
ରାଣୀ ମନ୍ଦୋଦରୀ ହୋ ତୋହର କେହୁ ମଲା
ମଲା ଇନ୍ଦ୍ରଜିତ ହୋ କୁମର
ଏ କୁମର ଲଙ୍କାରୁ ଶିଖ ଗଲା ହୋ
(ଲଇଡ଼ା, ସମ୍ବଲପୁର)

୮୬। ବାନ୍ଧଲା ସେତୁବନ୍ଧ ଯେ ଅକାରଣ ହୋଇ
ଅଯୋଧ୍ୟାକୁ ଚଲେ ପତ୍ଥରଇ ଆଣ୍ଠ
କାହିଁ ହଜାଇଲେ ଶ୍ରୀରାମ, ଲକ୍ଷ୍ମଣ ପରା ଭାଇ ହୋ ।

୮୭। ଲକ୍ଷ୍ମଣ ପରା ଭାଇକୁ ବୁଝାଇ କହିଲା
ଆଜିର ଯୁଦ୍ଧକୁ ନ ଯିବୁ ବୋଇଲା
ଆଜିର ଯୁଦ୍ଧରେ ଯେ ପଡ଼ିବ ଇନ୍ଦ୍ରଜିତ
ଅଯୋଧ୍ୟାକୁ ବାରତା ନେଇଛି ହନୁମନ୍ତ
ଭଲ କହେ ମୂଢ଼ରେ ମନୁଆଁ,
ନେଇଛି ହନୁମନ୍ତ ।

୮୮। ହୁଙ୍କାରଇ ହନୁ ଯେ ଡାଳେ ବସି ଆଗର
ଜନ୍ମୁ ବୋଲି ଶ୍ରୀରାମ ମାଇଲେ ଖକ୍ଷ୍ମଶର
ଖକ୍ଷ୍ମଶର ଯେ ହନୁ ଓପାଡ଼ି ଫିକନ୍ତି
ଶ୍ରୀରାମ ଦେଖିଲେ ଯେ ମର୍କଟ ହୀନ ଜାତି
ଯାଅ, ଯାଅ ମର୍କଟେ ରାମର ଆଜ୍ଞା ପାଇ
ବନର କଷା କେନ୍ଦୁ
ମିଠାରେ ବଡ଼ ମଧୁ
ବନରୁ ନ ଛାଡ଼ଇ ହୋ ।

୮୯। ବାଡ଼ିଆଡ଼ରେ ତାଳ କାଇଁଣ ଆହ୍ଦ କୁଣ
ପୋଡ଼ ହଳଆକୁ ଯେ ମାଇଲା ସନ୍ଧିଘାତ

Digitized by srujanika@gmail.com

ନୁକୋ କର ରକ୍ଷକୁ ରକ୍ଷଣୀ ବୃକ୍ଷଲମାନ ଘର
ଉପର ବାଡ଼ର ଗୁଦାଳ ଢେଢେଳ
କଣିକାର ମାଛ ଯେ
କଣିକାର ଗୁଇ ମାଛ ନ ଫକାନ୍ତୁ ପିତ
ସେ ପିତ ଖାଇଲେ ଯେ ଫଳାଏ ସନ୍ନିପାତ ।

୯୦ । କାଳଆ କୁକୁର ଦାନ୍ତେ ମାରେ ହାଉ
ମୁହଁ ଆଡ଼ ଖଣ୍ଡ ପଡ଼ୁଛି ପଣତ ଦଅ ଗୁଇ ହୋ ।

୯୧ । ପୋଖରୀ କୂଠରେ କରଞ୍ଜଗଛ ଗୁଇ
ଫୋଡ଼ଯାଉ ବାଡ଼ ଗାଧୁଆ
ପିଠି ତ ଭିଜୁନାହିଁ ମୋ ।

୯୨ । ନୂଆପୋଖରୀ କ ପୁରୁଣା ବରଝାଞ୍ଜି
ଅବେଳେ ମେଲିଲ ଜାହାଜ ଦରିଆ ମଝାମଝି
ଦରିଆ ମଝାମଝି ସୁବର୍ଣ୍ଣମୟୀ ଲଙ୍କା
ଭଲ ଠାବ କଲୁ ବାନର ଅଶୋକ ବନେ ସୀତା
ଅଶୋକ ବନେ ସୀତା ୍କ କରୁଥିଲେ ବସି
ନଖେ ଚିରୁଥିଲେ କେଶକୁ ତଳକୁ ମଥା ପୋତି ।

୯୩ । ଫାଇକ ଧାଉଡ଼ ନଗଡ଼ ଖଣ୍ଡ ବେଳେ
ଦଣ୍ଡେ ଉଣ୍ଡି ଝାଳ ମାଇଲେ ମାଧବୀଲତା ତଳେ
ମାଧବୀ ଲତା ତଳେ କୃଷ୍ଣ ଖେଳୁଥିଲେ ଡୋଳ
ମୃଗ କର୍ଣ୍ଣ ପ୍ରାୟେ ଦଶିଲ୍ପ ପଦ ଯୋଡ଼
ଚିହ୍ନି ନ ପାରିଲୁ ଶବର, ମାରିଲୁ ଯୋଡ଼ାଗୁଳ
ମାରିଲୁ ଯୋଡ଼ା ଗୁଳ ତୋହର ଦୋଷ ନାହିଁ
ତୋହର ପିତାକୁ ବଧି ଯେ ଥିଲ ମୁହିଁ
ଏବେ ପିତୃରଣ ଶୁଝିଲୁ ଆପଣା ରାଜ୍ୟେ ରହି ।

---

ନୁକୋ କର—ଭଲ କର
ଢେଢେଳ—ଢଳୁଳ

Digitized by srujanika@gmail.com

## ହଳିଆ ଗୀତ (ଢେଙ୍କାନାଳ)

୯୪ । ଏକଣ ବଜ୍ରଳରେ ସେ କଣେ ଝଁଟକଇ
କଳା ମେଘେ ଧଳା ବଜଦ ନିଷ୍ଟପୁ ବରଷଇ
ବରଷିବୁ ମେଘ ନ କର ଝର ଝର
ରାମ ଥିବା ଘୋର ବନର କରଞ୍ଜ ଡାଳ ଘର
କରଞ୍ଜ ଡ଼ାଳକୁ ରେ କନଆର ବଡ଼ା
ଗଣ୍ଡିକେ ଭିଡ଼ିଲେ ରାମ ଛ' ଯୋଡ଼ା ମୁକୁତା
ଘର ବୋଲି ରାମ ମଣିଲେ ନିକୁଞ୍ଜ ବନ ଲତା
ରାମ ଯୋଗୀ ହେଲେ ସୀତା ଯୋଗିଆଣୀ
ଜଉଶାଳ ଘରକୁ ବୋହୁଲେ ଯୋଡ଼ା ପାଣି ହୋ ।

୯୫ । ଆଜ ଗୁରୁବାରେ କନ୍ଦରାପାଣ ହାଟ
ଝିଅ ଜେମା ଦେଖ ଓଗାଳୁ ଥିଲେ ବାଟ
ହାଟ ଲେଉଟାଣି ଆଣିବରେ କଳାମେଘୀ ପାଟ
କଳାମେଘୀ ପାଟର ଦୁଇ ମୁଣ୍ଡେ ଦଶି
ପାଟ ପାଣଦେବୁ ପାଟରାରେ ଯାଜିଁଲ ଅମ୍ବ କଷି ।

୯୬ । ଢଅରକୁ ଗଉଜ କରୁଥାଇ ଯେ ଅଳ
ମୋ ପାଇଁ ଗଢ଼ିଦେବୁ ହୋ ସରୁ ଚନା ମାଳ
ବେକକୁ ଚନାମାଳ ନାସାକୁ ଯେ ବଣଣି
ଆଜର ଦରବେ ହୋ ଭେଣ୍ଡା ଅଛୁ ମୋ ମାଗୁଣି ।

୯୭ । ବାଇଦ ବାଜଣା ଦାଣ୍ଡରେ ଗଲ ବର
ବନ୍ଧାଇ ଯିବାକୁ ଲାଜ ହୋ ମାଉଇ
ନଣନ୍ଦ ନାଶବର ହୋ
ନଣନ୍ଦ ନାଶୁବର ହଟିଆ ଯେ ନାଗର
ହସ୍ତ ପକାଇବେ ହୋ ରାଧିକା ଉପର
ଉଠିଣ ରାଧିକା ନଦରେ ଯେ ବିହ୍ୱଳ

Digitized by srujanika@gmail.com

ଉଠି ପାପ ଜାଲ ଗୋ ନଣନ୍ଦେ ମୋ ଘରେ ଅଛି ଚୋର
ଚୋର ଯେ ଚୋର ବୋଲି ନ କର ଚହଳ
ଗୋପପୁର ଲୋକେ ଜାଣିବେ
ଜାଣିବେ ଭଣଜା ତୁମର ହୋ ।

## ହଳିଆଗୀତ (ଭୂୟାଁ, କେଉଁଝର)

୯୮ । ପୂର୍ବରେ ଭାନୁ ପଶ୍ଚିମେ ଉଦେ ହେବ
ଲୁଣିଆ ସମୁଦ୍ରରେ ମଧୁର ହୋଇ ଯିବ
ତେବେ ମୁଡ଼ମନ୍ତ ରାବଣ ମୋ ଦେହ ଛୁଇଁ ଯିବରେ ।

୯୯ । ହରି ହରି ବୋଲି ଡାକିଲେ ଭରତ
ହରି ହୋଇଥିଲେ କେଉଁ ସ୍ଥାନୁ ଜାତ ?
ଖୋଜ ଲୋଡ଼ିଆଣ ହରିଙ୍କୁ କହିବ ଜ୍ଞାନ ପଥରେ ।

୧୦୦ । ମାତା ଡ଼ାକଦେଲେ କହ୍ନାଇଁ କହ୍ନାଇଁ,
ସେ ଡାକ ଶୁଭିଲା ଅରଣ୍ୟରେ ଯାଇ
ଲେଳ ବୁଢ଼ଗଲା ଆହେ କହ୍ନାଇ
ଚଳାଇ ଆଣ ଗାଈ ।

୧୦୧ । ମନ ପଞ୍ଚୁରଇ ଚଇତନ ଭାଇ
ଜୀବ କେଉଁ ଠାରେ ରହିବ ସେଠାବ ଖୋଜ ଯାଇରେ ।

୧୦୨ । କହଇ ଚଇତନ ମନୁରାଜା ଶୁଣ
କୃଷ୍ଣ ଯଶଗୁଣ କର ଶ୍ରବଣ କୀର୍ତ୍ତନ
କାରଣ କରିବାରୁ କମଳାର ସାଇଁ
ଖେଳା କରୁଛନ୍ତି ଜୀବ ସଙ୍ଗତେ ପରମ ଆତ୍ମା ହୋଇ ।

୧୦୩ । ବାଆ କଲା ଭାଇରେ ବଛାସ ହୋଇଲା
ସେଦିନ ରାଧିକା ବାହାରେ ଶୋଇଲା
ଷୋଳ ପରସ୍ତର ଲୁଗା ସତେ କାଞ୍ଚୁଲି ବାଆକୁ ଉଡ଼ିଲା ।

Digitized by srujanika@gmail.com

୧୦୪ ।　ବଡ ଦେଉଳକୁ ଥିର କରି ଅନା
ଉପରେ ଉଡ଼ୁଛି ନୀଳଚକ୍ର ବାନା
କବାଟ ଫିଟିଲେ ଦେଖିବୁ କାଳିଆ ଦାରୁବ୍ରହ୍ମ ରେ ।

୧୦୫ ।　ଡାକ ହାକ ରାମ ଯେ ସୀତାଙ୍କୁ ବଣ ଦେଲେ
ମଧୁଶଯ୍ୟା ଘରେ ନସୁମ କରାଇଲେ ।
ଚୋଦ ବନା ଅନ୍ୟ ଯେ ନୋହିବ ପିଣ୍ଡରେ ପ୍ରାଣ ଥିଲେରେ ।

## ହୁଲିଆଗୀତ (ଲଇଡ଼ା, ସମ୍ବଲପୁର)

୧୦୬ ।　ଅଇଲା କମଜ୍ଜୁଣୀ ଆଉ ତ ମୁଣ୍ଡେ ଠିଆ
ଗୀତ ଗୃରପଦ ଭୁ ଗାଇବୁ ହଳିଆ
କ ଗୀତ ଗାଇବୁ କହ ଭୁ କମଜ୍ଜୁଣୀ
ପୂର୍ବର କଥା ମନେ ପଡ଼ୁଛି, ବଜଳରେ ହୃଦୟ ହୁଏ ହାଣି ।

୧୦୭ ।　କାଳିଆ ବଳଦ ପେଟ ତଳେ ଗିନା
ପେଜ ଆଣିଦେବୁ କ ଦୁଲଣା
　　　　ମୁଁ ଦେବ ଫୁଲଗୁଣା ।

୧୦୮ ।　ଏଇ ପରବତେ ରେ ଭାଲୁ ଖାଏ ଘାସ
ଖେସାକୁ ମାଇଲା ରଙ୍ଗ ବଜୁଲି
　　　　ବୃଜଁଶ ଗଲା ନାଶ ।

୧୦୯ ।　ଆଜିର ରାତିରେ ତରତିଆ (ତୃତୀୟା) ଜହ୍ନ
ରାତି କାନ୍ଦେ ସ୍ତ୍ରିଶ କ ରତନ
　　　　ପୁରୁଷ ହେଲା ସାନ ।

୧୧୦ ।　ପର୍ବତ ଶିଖରେ ଫୁଲେକ ଫୁଟିଲା
ଗନ୍ଧ ନାହିଁ ବାସ ଫୁଲ ଯେ ଶୂନ୍ୟରେ ଉଡ଼ିଲା ହୋ ।

୧୧୧ ।　ଏକ ଗୋଟି ଡମ୍ବରୁ ଦୁଇଗୋଟି ଛୁଆ
ଗୁଟେ ନୀଳବର୍ଣ୍ଣ ଗୁଟେ ଧର୍ଜଁରିଆ

Digitized by srujanika@gmail.com

ପାଣି ନୁହେଁ ବନ୍ଧ ସେ ଲହଡ଼ା ମାରୁଛି
ପକ୍ଷୀ ନାହିଁ ହଂସ ସେ ଶୂନ୍ୟରେ ଉଡ଼ୁଛି
ଏହା କହିଦେବ ପଣ୍ଡିତ ମୂର୍ଖ ସେ ପଚାରୁଛି ।

୧୧୨ । କାଳିଆ କାଳିଆ ବୋଲନ୍ତି ଯାହାକୁ
ମାରନ୍ତି କାଳିଆ ଦହଲଯାଏ ବୁକୁ
ଜାଣିଥିଲେ ଝଗଡ଼ା କି ହୁଅନ୍ତା
କାଳିଆ ପୁରୁଷକୁ ହୋ ।

୧୧୩ । ଧାନ ବୁଣିଗଲ ସେ ଉପର ବାହଲ
ଏବେ ହାନମାନ କ ଭାଇ କସାନ
ଭୂତଆ କୁଲ ସାନ ।

୧୧୪ । ଆମ ସାହୁକାରେ ବଡ଼ ଦେଢ଼ା ଦାମ
ଚଉଳ ଉଖାଲେ ମେଲଦେଲେ ପାନ
ଦନ୍ତ କଲ କଲ କ ସୁଆମ
ନ ରୁଚେ ଅନ୍ନପାଣି ।

୧୧୫ । ଯାକି ଧର କର୍ଣ୍ଣି ଫାଟିଯାଉ ମାଟି
ରାଜା ସିଂହଦ୍ୱାରେ ଟହଲଇ ହାତୀ
ହାତୀ ବଳବନ୍ତ ସେ ଉଡ଼ାଇ ଖାଏ ଡ଼ାଲ
ଘୁଡ଼ା ବଳବନ୍ତ ହେ ଖାଏ କେରୁଆଲ
ତଘ ବଲବନ୍ତ ମୂଢ଼ରେ ମନୁଆଁ,
ସାଙ୍ଗୁଁ ଟିବାନ୍ଧେ ବାଲ ।

୧୧୬ । ଉଦୟ ଚନ୍ଦ୍ରମା ଜଳରେ ଫଳ ହୋଇ
ଛଳି ପଡ଼ୁଥାଇ ଢେଙ୍କାନାଳେ ଯାଇ
ଢେଙ୍କାଣ୍ଠ ଶବଢେ ଗାଇ ସେ ଗଲା ଗୀତ
ଡାକେ ହରାଇଲା କ ଭେ୍ର ନାଥ,
ଚନ୍ଦନ ବୋଇତ ହୋ ।

---

ଲେଦାକାଟି ଖାବଡ଼—ଗାଡ଼ରୁ ଡ଼ାବଲପୁଆ କାଠିମାରିବା ।
ଭୂଢଆ—ମଳ୍ଳଆ ସୁଆମ—ସାହୁଆଣୀ

Digitized by srujanika@gmail.com

୧୧୭ । କାଠର ଘରକୁ ବାଉଁଶର ବତା
ଗଣ୍ଠିକ ଗଣ୍ଠି ଯେ ଲଗିଛୁ ମୁକୁତା
ଏକା ସୀତା ଲାଗି ନାଶ ଯାଉଛୁ
କନକମୁହାଁ ଲଙ୍କା ।

୧୧୮ । କ ଗୀତ ଗାଇଲୁ ହଳିଆ ନ ଶୁଭଇ ମୋତେ
ଲେଦା କାଟି ଖାବଡ଼ କ ମାରବ
ବଉଲରେ ବୋହିତ ନେବା ଡତେ ।

୧୧୯ । ପର୍ବତ ଶିଖରେ ଯେ ଖସିପଡ଼ୁ ରନା
କେଉଁଠ ଘରକୁ ଯେ ପଶିଲା ଡମନା
ଦେଖ କେଉଁଠୁମା କ ଭାବନା
କଅଁଡ଼ୋ ଲଅ ଘନା ।

୧୨୦ । ବାଂଠର ବେଣୁଆ ଧଅକ ଗଲା ତେଲ
ଭୁକେ କଲବଲରେ ହଳିଆ
ଲେଉଟିଗଲା ବେଲ ।

୧୨୧ । ବାଂଠର ଫଲସା ବଲଇ କରେ ବସା
ବନା ମେଘେ ପାନ କ ବରଷା
ଭିଜାଇ ଦେଲା ଖୁସା ।

୧୨୨ । କାଲୀ ଗୁସ ହୋଇ ଅବଲା ଯୁବତୀ
କାଲୀକ ଗୁବଲା ନାଗେଶ୍ବର ଶତ
ଗୁଷ ଦେହେ ବଷ କ ଘାରଇ
ଏ ଷୂଲଡ (ଷୋଳ) ଘଡ଼ ଗତ ।

୧୨୩ । ହଳିଅ ହୋଇ ଯେବେ ନ ଗାଇବ ଗୀତ
କେମନ୍ତେ ଗୁଲିବେ ବଗୁ କ ବଲଦେ
ହଳିଆ ମୂରୁଖ ତ ।

Digitized by srujanika@gmail.com

## ହଳିଆଗୀତ (ଧୁଆ)

୧୨୪ । ବଡ଼ ହଣ୍ଡା ପଗୁରଇ ସାନହଣ୍ଡା ଘାଇ
ବାଇଶମାଣ ଚଷା ଆଣିଛୁ କାହାପାଇଁ ?
ଚୋଟେ ନେଉ ସାହୁ ମତେ ନେଉ କାଉ
ଚଲ ଭଗତକୁ ରେ କହିବୁ ,
ଏକା ମୃଦଙ୍ଗ ଟିପୁଥଉ ।

୧୨୫ । ହଣ୍ଡାକୁ ମାର ନାହିଁ ହଣ୍ଡାର ଦୋଷ ନାହିଁ
ହଣ୍ଡା ମଲେ ତ ହାଡ଼ କଣ୍ଡ଼
ଗଙ୍ଗାକୁ ନଅନାହିଁ ।

୧୨୬ । ନଣ୍ଡ ତ ସେ ପାଶରେ ଦଅରଙ୍କର ଗୃଷ
ଡ଼ଙ୍ଗା ଚଢ଼ି ଘାଟ ବୁହାଇବୁ ଏକା
ଆଷାଢ଼ ଗୃଷମାସ ହୋ ।

୧୨୭ । ଶ ଗଡ଼ ଭୁମ୍ବ ପ୍ରାସେଷୁ ଲକ୍ଷ୍ମଣର ବୁକୁ
ମାରେଛୁ ବ୍ରହ୍ମଶର ଭେଦଛୁ ପାତାଳକୁ
ତିନଧାର ହୋଇ ରୁଧିର ଗଲା ବୋହି
ଦେଖିଲ ରଘୁନାଥ ବିକଳ ଲକ୍ଷ୍ମଣ ପଗ ଘାଇ
ଲଙ୍କା ତ ଗଡ଼େ ପ୍ରାଣ ହାରିବ
ଏକା ଜାନକୀ ଦେବୀ ପାଇଁ ହୋ ।
ଆରେ ଜାନକୀ ଶୁଭ୍ରକେଶୀ ଅସୁର ଘରେ ବନ୍ଦୀ
ଲକ୍ଷ୍ମଣ ଶକ୍ତିଭେଦ ଶ୍ରୀରାମଚନ୍ଦ୍ର କାନ୍ଦ
ସବୁ ତ ଅକାରଣରେ ଜାମ୍ବେବ ସମୁଦ୍ରେ ବନ୍ଧ ବାନ୍ଧ ।

୧୨୮ । ଗାଧୋଇ ପାଧୋଇ ଗୋଖ ଧରମକୁ ସାକ୍ଷୀ
ସାହା ତ ହୋଇଥିବୁ ରେ ଧରମ
ମୋ ସ୍ୱାମୀ ନସ୍ତମାଖି ।

Digitized by srujanika@gmail.com

## ଶଗଡ଼ିଆଗୀତ (ପୁଷ)

ଶଗଡ଼ିଆ ଭାଇ
ଶଗଡ଼ବନ୍ଦାରୁ କ କ ସୁଖପାଇ
କାଠିମସ୍ ଭାତ ଲୁଣ ପେଜ ଖାଇ
ସରୁ ମ ସୁହ୍ନାଣରେ ବାକୁଳ
ଦଉଡ଼ା ପାଶ ଶୋଇ ହୋ ।
ଶଗଡ଼ ବୋହିଯିବୁ ପଶ୍ଚିମ ଦେଶକୁ
ମାଳଚନ୍ଦ ବାନାରେ ଏକା ଜଡ଼ୁଛି
ପଶ୍ଚିମ ରାଇଜକୁ ହୋ । ୨ ।
ଆଗରେ ଶଗଡ଼ ବୋହୁ ଦହ କଲ୍ ଷୀଣ
ପଛ ତ ଶଗଡ଼ିଆର ନ ସରଇ ଦନ
ମଟି ତ ଶଗଡ଼ିଆକୁ କହ୍ବବ
ଚାଟିଆ ମଙ୍ଗେ ଲୁଣ ହୋ ହୋ । ୩ ।

## ମଇଁଷିଆଳ ଗୀତ (ଚେରଦଳ, ପୁଷ)

ଚିତା କୁଟାଇଲୁ ଓଠେରେ କାଳିଆ
ଚିତା କୁଟାଇଲୁ ଓଠ
ଯାହା ଲଗି ଚିତା କୁଟାଇଥିଲୁରେ ଦେହେର
ରହିଚ ମଇଁଷି ଗୋଠେ ।
କଳା କୁମ୍ଭାଟୁଆ ବୁକୁରେ କାଳିଆ
କଳା କୁମ୍ଭାଟୁଆ ବୁକୁ
ନାହିଁ କରୁ କରୁ ବଳେ ଧଇଲେ
ଗଛର ଗୁଇ ମୂଳକୁ ।
ଠିକ ଠିକ ଧାନ ଲମ୍ବ ଶହନ
ନଇଁ ପଡ଼ ଛୁଇଁବାକୁ
ଡୋଟେ ଯୋଗ ନାହିଁ ଶଲ ଗଜଡ଼ରେ
ସ୍ତ୍ରିଷ ଜଙ୍ଘ ଛୁଇଁବାକୁ ।

Digitized by srujanika@gmail.com

ବାଲିଘାଇ କଥାପଟ

ବାଲିଘାଇ ଠେଇଁ ମାଇଲି ଡାକ
ଅଦନ ବୃନ୍ଦ, ତୁ ପଖାଳ ନଥିବୁ ଭାତ ।
କଟକ କାକୁଡ଼ ପିତା
ବାଆଁ ଜଙ୍ଘ ମାଡ଼ ବାଟୁ ହଳଘା
ବାଆଁ ଭୁଜରେ ଯେ ଶଙ୍ଖା ।
ଗାଈଙ୍କ ବାଛୁରି ଟୋପିଟୋପିକା
ମଇଁଷି ବାଛୁରି କଳା
ବେଗି ଭାତ ରାନ୍ଧ ଡାଳପୋହଳାରେ
ମଇଁଷି ଯିବେ ଭଅଁରା ।
ପାଆରେ ମାପିଲି ଘିଅ ରେ କାଳିଆ,
ପାଆରେ ମାପିଲି ଘିଅ
କୋଠଦେଶିଆଙ୍କୁ ନ ଦେବ ଝିଅ
ରେ ଅଦନ ବୃନ୍ଦ,
ପଣତେ ପୋଛୁବ ଲୁହ ।
ଧନୁଆ ନନ୍ଦ **କେଉଟି**
**ଓଳଧଳା** କଥା ପଟିବ ନାହିଁ
ଘରକୁ ଆସ ଲେଉଟି ।
ଜହ୍ନୁନା ଧାନ ଗଉଣୀ
କାଖରେ ମାଠିଆ ପେଟରେ ପିଲା ଲୋ
ଦଶନ୍ତି ଭାଇ ଭଉଣୀ ।
ମାଛ ମହୁରାଣ୍ଡି ମୀନ
ସବୁଙ୍କ ଜୀବନ ଏକା ଜୀବନ
ଗଉଡ଼ି ଜୀବନ ସ୍ନାନ ।
ନଡ଼ିଆଗଛ ଚଅଁର
କାଖେ ବାଉଁଶିଆ ସଙ୍ଗେ ଦଅର
ଅଦନ ବୃନ୍ଦ,
ତୁ କାଲି ଯିବୁ ବାପଘର ।

Digitized by srujanika@gmail.com

ମଇଁଷି ଶିଙ୍ଘ ଗୁଟେଣି
ବାହାନଗା ଖଣ୍ଡ ଦେବେ ଉମୁଠା
ବାଲେଶ୍ୱର ଲେଉଟାଣି ।
ଗାଣ୍ଡି ଚରେଗଲେ ହୁଡ଼ହୁଡ଼ାଇ
ବାଛୁରି ଚରିଲେ ଘର୍ମ
ବେହେରା ଘାଟରେ ଦେବେ ଖବର ହେ
ଗଡ଼ାଇବେ ଠେକା ଚକ
ଗାଣ୍ଡିଆ ଗଉଡ଼ ଭଲ
ଗାଈ ବଦଳାଇ ମଇଁଷି କଲା
ଛଚା ତଳେ ଢନ ଗଲା ।
ହାଲ ମଇଁଷିର କାନ
ହାଲିଆ ନୋହିବ କରମହୀନ
ଛଚା ତଳେ ପିବ ଢନ ।
ଛଚାରେ ବାନ୍ଧ ବଇଁଶୀ
ଶାନ୍ଧି ବାଡ଼ି ଦେବ ସୁନା ଖଡ଼ିକା
ଧନୁଆଁ କୂଳେ ମଇଁଷି ।
ମେଘ ଉଠେଇଲା ନାଗସୋରିଆ ଲେ
ବଜ୍ରଜଳ କଡ଼ାଏ ବାଠ
କୋଉ ଖଇଜରେ ଧନ ମାଇଲା ଗୋଠ
ଢଣ୍ଟୁନାହିଁ ବାଠଘାଠ ।
ନାଳ ନଡ଼ିଆର ପୁର
ସୁଉକୁ ସୁଜକୁ କାଢକୁ ନାହିଁ
ଦାଣ୍ଡିଆ ବାଟଘର ।
ମଇଁଷି ଦୁଧ ଚ ଚନ ନବାତରେ
କେମିତି ଲଗଇ ମିଠା

---

କେଉଟି—ମଇଁଷାର ଉପାଦାନ, ଧନୁଆଁ; ନଈ କୂଳରେ ଜନ୍ମେ
ଓଲଧାଳ—ମୂର୍ଖାଣ୍ଡିଆ, ଘର୍ମ—ଗ୍ରୀଷ୍ମଘାସ ।

Digitized by srujanika@gmail.com

ଜଅଳ ଚଣ୍ଡିରୁ ଫିଟିଲେ ସାଙ୍ଗରେ
ସୁମରୁଥିବ ସେ ବୋପା ।
ଝିପାପୁଅ କରଡ଼ିଆ
ଭାଇଙ୍କ ମଇଁଷି ଚନ୍ଦା କରେଇ
ବାନ୍ଧୁ ନେବେ ବରଡ଼ିଆ
ବଣିଆ ଘର ଜୁଆଣି
ମଣିଷ ପାଚିଲି ଖାଡ଼ିଆ ଝଣ୍ଟା
ଅଦାନ ଗୃନ୍ଦ ଲୋ ପଡ଼ିଛ ପାଣି ବୁହାଣି ।
କଙ୍କଡ଼ା ଗଳିଲେ ଫାଟେ
ମାମୁଁଙ୍କ ମଇଁଷି ଘୋଡ଼ାଝାପୁଅ
ଉଠିଲେ ଡଗର ବାଟେ ।
ମଇଁଷି ପଡ଼ିଲେ ମହାନଦୀରେ
କାପଡ଼ୀ ଖାଇଲେ ଖଇ
ନେଟରେ ପାଗକର ମାଆ ମଙ୍ଗଳା
ବାଆଁ ଗୋଡ଼େ ଦେବ ବଳା ।

## ମଇଁଷି ଖାଇଲେ ବର ଉଠିଆ ଲୋ (କଅଁରପୁର, ପୁରୀ)

ମଇଷି ଖାଇଲେ ବର ଉଠିଆ ଲୋ
ଖର ପଡ଼ିଆରେ ଗୋଠ
ଦୁହିଁ ବେଢ଼ିଆ ଅଲଗା କର ଲୋ
ବୋହୂ ମଡ଼ାଇବେ ଖର ।
ମାଆ ମାଇଲ କି ବାଆ ମାଇଲ
କ'ହା ବୋଲେ ଗଲ ରୁଷି
ଆ'ଣେ ପାନଆ ମା'ରେ ଉକୁଣି
ଖଞ୍ଜା ମହୁଡ଼ାରେ ବସି ।

---

ଜଅଳ - ଦଉଡ଼ି, କରଡ଼ିଆ—କରଡ଼ା, ଶଳ; ଚନ୍ଦାକରେଇ—ଛଡ଼ା, ତା ମୁଣ୍ଡରେ ଗୃନ୍ଦ; ଖାଡ଼ିଆ—ସରୁ ।

Digitized by srujanika@gmail.com

ବା ଝଗଣୀ ଝିଅ ଟେଗଣୀ
ଟେକ ହେଲେ ଭାତ ଖାଇବୁ ବାଟି
ମୁଁ ଯାଉଛି କଙ୍କଡ଼ା ନାଟି ।
ଧୋବାକୁ ଧୋବଣୀ ଗାଳି ଦଉଛି ଲୋ
ଭୁଠେଠ ରଖିନାହୁଁ ନଆଁ
ଆମ ଗୁଣନିଧି ପରବାସିଆ ଲୋ
ଘଜ ସନ୍ଧୁପିଆ ଗାଆଁ ।

## ସୁଆର ଡ଼ାକ ଗୀତ (ରେଞ୍ଜଶାସନ, ପୁରୀ)

ହୁମୁଗ ଭାଇ ଲୋ
ଖବର କର ଲୋ
ଦବର ଦାଣ୍ଡ ଲୋ
ନଦର ନଳ ଲୋ
ଧୀର ଗଡ଼ିବୁ ଲୋ
କୋଇଲ ଅଖା ଲୋ
ମଳାଶୁର ପୁଅ ଦିଅର ଲେଖା ଲୋ ।
ବାଲେଶ୍ୱର ଗୁଣ୍ଡି ପାନରେ ଦବୁ ଲୋ
ପାନ ଭାଙ୍ଗୁଥିବୁ ଖିଲେଇ କରି ଲୋ
ଚୂନ ଚୂନ ଗୁଆ ଖଇର ମିଶା ଲୋ
ବଡ଼ ନଈ କୂଳ ବଡ ଉଠାଣି ଲୋ
କେମିତି କାଟିବ ଗରରେ ପାଣି ଲୋ ?
ଗାମୁଛ କାନରେ ଆଣିବ ଛାଣି ଲୋ
ଅଣ୍ଟା ନକ ନକ ବାଉଁଶ କଣି ଲୋ ।
ଆଳ ପିଙ୍କଲ ଲୋ
ଗଧା ମଙ୍ଗଳ ଲୋ

---

ବରଡ଼ିଆ—ବାଛୁରି ବା ଯେଉ ଗାଈ ଦୁଧ ଛଡ଼େଇ ଯାଇଥାଏ, ଦୁହାଁ ହେଉ ନଥାଏ ।

Digitized by srujanika@gmail.com

ପବାର ଚଳ ଲୋ
ପାଳଙ୍କି ମେଳ ଲୋ
ଟଳମଟଳ ଲୋ
ଗଡ଼ଉଥିବୁ ଲୋ
ହଲଉଥିବୁ ଲୋ
ପାଣି ଛୁଟିଆ ଲୋ ।
ଦେଖ ପିଙ୍ଗଳ
ଦେଖ ମଙ୍ଗଳ
ପଡ଼ୁଛି ଦେଖ
ଛୁଟୁଛି ଦେଖ୍
ଗଡ଼ଲ୍ଲ ଦେଖ୍
ହାବୁଡ଼ା ଦେଖ୍
କାମୁଡ଼ା ଦେଖ୍
ପଢ଼ଟଲ୍ଲ ଦେଖ୍
ଭଢ଼ଅଣି ଦେଖ୍
ଦେଖ୍ ଟେକି ନେ
ଧୃପ ବେଳ ଦେଖ୍
ଖଗ୍ରବେଳ ଦେଖ୍ ।
ଡାଙ୍ଗିଣୀ ମୋର ଲୋ
ହଲଉଥିବୁ ଲୋ
ଚଲଉଥିବୁ ଲୋ
ବାଆଁକୁ ମୋଡ଼ ଲୋ
ଡ଼ାହାଣେ ଛୁଡ଼ ଲୋ
ପକଉଥିବୁ ଲୋ
ଉଠଉଥିବୁ ଲୋ
ଗଡ଼ଉଥିବ ଲୋ ।
କୋଦେଇଟାଏ ଲୋ

Digitized by srujanika@gmail.com

ଥାକୁଲାଣ୍ଠା ଏ ଲୋ
ଆଗେଇ ବଅ ଲୋ
ପଛେଇବଅ ଲୋ
ଶାଶ୍ ଖେଣ୍ଣେଇ ଲୋ
ଦେବ୍ ଅଣ୍ଣେଇ ଲୋ
ଠୋକା ଢଅର ଲୋ
ହସିବ୍ ନାଣ୍ଟିଁ ଲୋ
ପାଞ୍ଚଟିପାଜ ଚ ଗୋଟିଏ ହୋଇ ଲୋ
ଆସିଚ ଧାଇଁ ଲୋ ।
ତୁମ ଦାନ୍ତକାଠି ତୁମେ ଘଷିବ ଲୋ
ଆମ ଦାନ୍ତକାଠି ପକ୍କେ ଲେଟିବ ଲୋ
ମୋ ସାଂଗମାନେ ଲୋ
ପାନ ଖାଇ ପିକ ଫୋପାଡୁଥିବ ଲୋ
ସାଙ୍ଗ ଗୁଡଗଲେ କାହ୍ନୁଁ ପାଇବ ଲୋ ?
ଭାତ ଗୁଡଗଲେ କାଲ ଖ'ଇବ ଲୋ
ବଡ ନଣ୍ଡକୂଳ ବଢ଼ ଜଠାଣି ଲୋ
କେମିତି କାଢ଼ିବ ଖସ୍ରରେ ପାଣି ଲୋ ?
ସେରେ ବୁଜଲକୁ ଗସ୍ରଏ ପାଣି ଲୋ
ଜାଲ ଦେଇଥିବ୍ ଜମେଇ କରି ଲୋ
ବସିଥିବ୍ ଗୋଡ଼ ଲମ୍ବେଇ କରି ଲୋ
ଯେତକ ବୁଜଲ ସେତକ ଲୁଣ ଲୋ
ପାଣି ଦେଇଥିବ ଅଟକଇ ଗୁଣ ଲୋ ।
ଖସ୍ର ଦେଳଆଟି
ଧୂପ ଦେଳଆଟି
ପାଣିକାଟିଆଟି
ଛେଲ୍ଲୁକୁଟିଆଟି
ବଜଲଜଠାଟି
ଘୁଗ ନେଉଠାଟି ।

Digitized by srujanika@gmail.com

ହୁମ୍ବ ଭାଇରେ
ଖବଡ଼ ଖାଡ଼ରେ
ଧବଡ଼ ଧାଡ଼ରେ
ଅନଶା କରିରେ
ଢାଇଡା କଶରେ
ପଡ଼ବୁ ଗଡ଼ରେ
ଊଆସ ଗଳାରେ ।

## ହୈସା

କଦମ୍ ଗଛ
ଝାଣୁଥା ଭଇ
ହଲ୍ଲଇ ଗମା
ଝର ଝରଣା
ଘରକରଣା
ଖରଖଗ୍ସି
ମାଲ୍ ଖଲ୍ସି
ଖଲ୍ସୀ କଏ ?
ଜବାବ୍ ଢଏ ।
ରୁଲକ ରୁଲ
ଦେଉଥା ପେଲ
ଧରମ୍ ଚାଲ
ମାରୁଥା ଠେଲ
ପାଣିରେ ଘର
ହେଲଣି ଜର
କାହାକୁ ଡର ?
ଭଇରେ ମୋର
ଡାକର ପାଣି
ନେଉଥା ଟାଣି

ମୋ ଗ୍ରାମ ରେଞ୍ଜଶାସନରେ ପ୍ରଥମେ ବିଜୁଳିତାର ଟଣାହେଲା ବେଳେ ।

Digitized by srujanika@gmail.com

ଝିଙ୍କର ଖଗ
ବରଷା ଧାଗ
କାନ୍ଦୁଅ ଘାଙ୍ଗି
ନେଉଥା ଠାଣି
କାହାକୁ ଡ଼ର
ଭଇରେ ମୋର
ବୋହୁଚ ଝାଳ
ହଉଚ ଭେକ
ହଉଚ ଶୋଷ
ନାହିଁ ମୋ ଦୋଷ
ଠାଣୁଆ ଭଇହେ —ହେ—ହେ ।

## ଚୃଙ୍ଗୁନାଚ ଗୀତ (ବାମଣ୍ଡା)

ଝାଲିଆ ମୟୁର ଲଲ୍ କଣେଇ ଘଷୀ
ଝାଲିଆ ମୟୁର ନାଚ ଦେଖାଏ ଭୁଇକ ଦେଖି ଦେଖି
ପାଣି ଘାଉ ଘାଉ
ଭ୍ରମର ନାକର ଫୁଲ ଦଶେ ଡ଼ାଉ ଡ଼ାଉ
ଝାଲିଆ ମୟୁର ଲଲ କଟାଇ ପଷୀ
ଝାଲିଆ ମୟୁର ନାଚ କରୁଚ ଭୁଇକ ଦେଖି ଦେଖି
ଦହଲିଆ ମଞ୍ଜା
କାନର ଝଲକ ଦେଖି ନ ମରଲ ପେଲୁ
ପାଣିର ମୁଣ୍ଡାଣି
ବାଟଘର କରଥିଲ ପିବ ଚଣ୍ଡାଣି ।
ମୃଗ ଭଉଁ ଭଉଁ
ଦେଖି ଦେଖି ଝାଲିଆ ମୟୁର ଲଲ ପାହୁଁ ପାହୁଁ
ଝାଲିଆ ମୟୁର ଲଲ କଶୋଇ ପଷୀ
ଝାଲିଆ ମୟୁର ନାଚ କରୁଚ ଭୁଇକ ଦେଖି ଦେଖି ।

---

ପାଣିର ମୁଣ୍ଡାଣି—ନଇମୁଣ୍ଡ; ଚ ଣ୍ଡ ଣି—ଅନ୍ଧାରକୁ ଯାଇ କଥାଭଷା ହେବା

Digitized by srujanika@gmail.com

## ଗୃଙ୍ଗୁ ଗୀତ (କେଉଁଝର)

ନବ ଢେଙ୍କିଆରେ, ଢେଙ୍କିରେ କୁଟଇ ଧାନ (ଘୋଷା)
ଢେଙ୍କିଆ ଶବଦେ ନାଚେ ଇ ଖାଇଲା ଗୁଆପାନ
ପଣ୍ଡୁଲା ଆଡ଼େ ମ ଡ଼ ଦେଉଥିଲେ ସବୁ କରୁଥାଇ ଗୁଣ୍ଡା
ରେ ନବ ଢେଙ୍କିଆ······(୧)
ମୂଷୁଣ୍ଡା (ମୂଷଳ) ବୋଲଇ ମୁଣ୍ଡି ଧଳା ମୁଣ୍ଡା
ଧୀର ଧୀର କରି ପେଲ ଦେଉଥିଲେ ସବୁ କରୁଥାଇ ଗୁଣ୍ଡା
ରେ ନବ ଢେଙ୍କିଆ··· । ୨ ।
କୁନ୍ଦରି ବୋଲଇ ମୁଣ୍ଡି ବ୍ରହ୍ମୁଣ୍ଡା ଉପରେ ଥାଇ
ମଝିଆ ବୋହୂ ଲୁ ନକେ ଚଲେ ଦୁନ୍ଦୁରି (ଧମକେଇ) ଦେଉଥାଇ ।
ରେ ନବ ଢେଙ୍କିଆ··· । ୩ ।
ବୋଇତାଳୁ ବୋଲେ ମୁଣ୍ଡି ପିଢ଼ା ଉପରେ ଥାଇ
ବଡ଼ ବୋହୂ ଲୁଳକେ ଗଲେ ଗଲଟି (ଗଡ଼ିବା) ନୁଲୁଥାଇ ।
ରେ ନବ ଢେଙ୍କିଆ·· । ୪ ।

## ଧୂଡ଼ୁକି ଗୀତ (କେଉଁଝର)

ଧୁନ୍ଦୁକି ଡଉଡ଼ ଉଣି
ପାଣି କାଢ଼ୁଥିବ ବାଉଣୀ ଝିଅ
ଯୋଡ଼ ନନ୍ଦ ବନ୍ଧେ ବସି । ୧ ।
ଧି ଧି କରି ଧିକର ଧିକର
ମେଘ ଉଠେଇଲା ଗମ ସୋରଆରେ
ବଜୁଲି କଢ଼ାଏ ବାଟ
କେଉଁ ଗଇଜରେ ମାଇଚ ଗୋଠରେ
ଦଶୁନାଙ୍କ ହୁଡ଼ ବାଟ ।
ଛତାରେ ବାନ୍ଧ ବଇଁଶୀ
ଦୂର ବାଟ ବୋଲି ଭଇ ବସିଚରେ ଚଇଲ ମାନେ ମଇଁଷି ।
ଗାଆଁ କୁ ଆସଲେ ନୂଆ ଅମୀନ ଲୋ

Digitized by srujanika@gmail.com

ମାଣ ଦେଇଗଲେ ଡାବ
ଯାତଗ୍ର ଦେଖାଇ ନବ ।
ଗାଣ୍ଠ ନାଆଁ ଦେଲ ଗୁଆ
ଗୁଆ ଆଜ ଦନ ଯିବେ ବସିକ ନେ
ଘରେ ବୁଲୁନାହାଁ ଖୁଆ ।
ବଉଳ ଗଛର ଛେଲ
କାଠପାଣି କର ଘଇତା ଜଲ, ମାଡ଼ ଖାଇ ଖାଇ ମଲ ।

## ଧୋବାନାଠ ମାଗୁଣି (ଢେଙ୍କାନାଳ)

ସାଆନ୍ତ ବାଠ୍‌ମେ କଠ
ମୋର ସାଆନ୍ତ ଯେ ବଡ଼ ରସିକ
ଦେଖୁଥିଲେ ଧୋବା ନାଠ ।
ଖଡ଼ର ଉପରେ ଖଡ଼
ମୋର ସାଆନ୍ତ ଯେ ଶାଢ଼ୀ ଦେବେ
ମଟିଠା ଯାଉଛୁ ଗୁଡ଼ ।
ଚନ୍ଦଣ ବାଡର କେନା
କନା ଚାଞ୍ଚଡ଼ାର ନ ଦେଲେ ସାଆନ୍ତ
ଦାଣ୍ଡେ ଘ୍ନନମାନ ଦିନା ।
ଝଲାରେ ଚଣିଲ୍ଲ ନାଗ
ମୋ'ର ସାଆନ୍ତ ଯେ ଶାଢ଼ୀ ଦେବେ
ବୁଲଛ ବାନ୍ଧବ ପାଗ ।
ସବୁ ଧୋବାଗଲେ ଖାର ପୋଡ଼ କ ନେ
ମୋ ଧୋବା ରହିଲ ଘରେ
ଝିଅ ଥିଲେ ସିନା ଘଠା କରନ୍ତ
ଖାଆନ୍ତେ ତମ୍ବୁର ଘରେ ।
ତଣ୍ଡ୍ରକଳ ମାଛ ଦୋ ଚରଜା ନେ
ଆଜ ଘରକଟ କେତେ ?

Digitized by srujanika@gmail.com

ଭଗାର ହାତରେ ମାଡ଼ ମାରୁଛୁ
ପୋଇଲ ଧୂଅ, ମୋ ହଦ ସହିବ କେଂତ ?
ଧଲ ଟବେଂତ ଟିଖର ଲଞ୍ଜି
ଗ ଦୁଡ଼ ବୃଜଲ ଘତ ହୋଇଛୁ
ମଣ୍ଡା ବାଇଗଣ କାଞ୍ଜି ।

## କରମା ଗୀତ (ଲଇଡ଼ା, ସମ୍ବଲପୁର)

ଅଇଲାରେ ଭୁଦୋ ମାସ
ରସିଆ ଗଲା ଘସିଆ ପାଶ
ଏ ହାଟେ ଘର ନାହିଁ ଜଠେ ଗୋ
ପାନ ପୁଡାର ବକଡ୍ ନାହିଁ ଫୁଟେ
ଦଶପୁର ଭିତରେ ଡାକ ଗୁରଂଭେଲା, ନଗର ଭିତରେ
ବାମଣ୍ଡା ବଣାଇ ଗାଙ୍ଗପୁର ରୁଶକଣ୍ଠରେ
ଯାଇଥିଲ ଗୋ ପହିଲି ପାର, ଅଂଣିଥିଲି ଗୋ ମହାଜାଲ
ସେ ଜାଂଲେ ପଡ଼ଲା ଗୋ ସିଙ୍ଗି ମାଛର ଝୁରି
ରାନ୍ଧି ଜାଂଣିଲେ ଝୋଳ ମିଠା
ପୂଜାଇ ଦେଲେ ପିଠା ଗୋ
ଖପରା ଘରର ମାଖନ ପତର ଖାଇ ଦେଲେ ପୋକ
ଝଟକେ ସକେ ନାଇଁ ଦେଲେ କାଏଁ ବଲବେ ଲୋକ ।
ମାଦଳ ବାଜିଲାରେ ମାଦଳ ବାଜଲା
ନୂଆ ଭୂଅସୁଣୀ ଆନନ୍ଦେ ନାଚଲା
କବାଟ କଳସ୍ତା ଲାଟେକ ମାରସ୍ତା
ଭିତରେ ପଶିଲେ ହରି
ରାଧାର ଅଙ୍ଗରେ ହାତଲ ଗାଇଣ
ଛୁଡକୁ ଉଡ଼ଲେ ଧରି
ଦୁଷ୍ଟ କାହାସଙ୍ଗେ ଗଲ ?
ମଥୁରାକୁ ଗଲ ବେଳେ କୃଷ୍ଣ ମାରେ ଢେଲା ।

Digitized by srujanika@gmail.com

ଗୌଣ୍ଡିଆ ଘରର ଘନ ଶାଗ ଖାଇଦେବା ପୋକ
ଅଧଲେ ପଏସେ ଦେଉନ୍ତ ଯେ କାଏଁ ବଲବେ ଲୋକ ?
ଏ ଘର ଲଉଫୁଲ ସେ ଘରକୁ ଯାଉ
କରମସାନ ବର ଦେଉଛେ ପିଲାଗୁଟେ ହେଉ
ଆଗୋ ମା' କରମସାନ,
ଅରୁଆ ଗୁଉଳ ଦୁବ ଘେନ
ବନ୍ଦାଇବା କରମସାନ
ଆଜ ତ କରମ ସାନ ମନ୍ଦାଇ ପୁରେ
କାଲି ତ କରମ ସାନ ଗଙ୍ଗାର ଘରେ ।

## ଘୁମୁରା ଗୀତ (କାମାକ୍ଷା ନଗର, ଢେଙ୍କାନାଳ)

### ବନ୍ଦନା

ପୁରୁଷ— ଶଇର ଗଲ ବଣାରେ
ଏକ୍ସପର ଗୀତ ବନ୍ଦାଣ ଗୀତ ଲୋ
ବନ୍ଦଇ ବସୁମାତା ।

ସ୍ତ୍ରୀ— କଅର ଡାଳ ବଣାରେ,
ଏକ୍ସପର ଗୀତ ବନ୍ଦାଣ କରୁଛୁ
ବନ୍ଦଇ ଧର୍ମଦେବତା ।

ପୁ— କମାର ଗଢ଼ଇ କାଣ୍ଡ ଲୋ
ହଅଁ ନ ବନ୍ଦୁଣୁ ଦେବତା ବନ୍ଦଲୁ
ବନ୍ଦଲୁ ଗୁଆର ଦାଣ୍ଡ ।

ସ୍ତ୍ରୀ— କେନ୍ଦୂ ପତର କଣା
ଏକ୍ସପର ଗୀତ ବନ୍ଦାଣ କରୁଛୁ
ଅନ୍ଧାରେ ନୋହିବ ବଣା ।

ପୁ— ତଇଲ ମୁଣ୍ଡରେ ଆଛୁ
ଆସୁ ସରସତୀ କଣ୍ଠରେ ବସୁ
ଆଁ କଲେ ଗୀତ ଆସୁ ।

---

ମାଖନ—ଜଖାରୁ;

Digitized by srujanika@gmail.com

ସ୍ତ୍ରୀ— ମାଠିଆ ଉପରେ ଟେକ
ଆମ ସରସ୍ୱତୀ ମୋ କଣ୍ଠେ ବସି
ଗଳା ଧରିଥିବ ଟେକ ।

ପୁ— ଉଡ଼ିଲା କୋଚିଲା ଖାଇ
ଉଡ଼ିଲା କୋଚିଲା ଖାଇ
ଦେବତାମାନଙ୍କୁ ବନ୍ଦାଣ କରୁଛୁ
ବାଙ୍କିରେ ଘୃତକାଇ ।

ସ୍ତ୍ରୀ— ଗନ୍ଧର କନକ ପାଟ
ଦେବତାମାନଙ୍କୁ ଜଣାଣ କରୁଛୁ
ଚେଙ୍କାନାଳେ ମହାପାଟ ।

ପୁ— ଗରଗଡ ଫୁଲ ରତା
ଉଇଁ ଆସୁଛନ୍ତି ଧର୍ମ ଦେବତା
ଟେକ ଧର ପାଟ ଛତା ।

ସ୍ତ୍ରୀ— ପିଟିଲ କୋଲଥ ବୋଡ
ଶୁଣିଥିବଟି ଲୋ ମାଆ ଭଉଣୀ
ଫିଟିଲା ପୁରୁଣା ପୋଥି ।

ପୁ— ଚଉଲା ମୁଣ୍ଡରେ କଣି
ଯେତକ ଜାଣିଲି ସେତକ ବନ୍ଧିଲି
ଆଉ ନ ଜାଣଇ କଛୁ ।

## ଗୀତ

ପୁ— କଅଁଳ ଆମ୍ବ ପତର
ତୋତେ ଦେଖି ନାହିଁ ଧନ ପଦର
ଦଇବ କଲା ଅନ୍ତର ।

ସ୍ତ୍ରୀ— କରଞ୍ଜକାଠ ଫାଳିଆ
ଆମ ଘଇଜର ହୋଇଥାଆନ୍ତୁ
କରନ୍ତୁ ପାଣି ଘରୁଆ ।

Digitized by srujanika@gmail.com

ପୁ— ନକମାଗଚର କଣ୍ଠି,
ଶାଳୀକ ଝଟଣେଇ ଆଖି କରଚ୍ଛି
ଭୁଜଆ ପିଣ୍ଡାରେ ବସି ।

ସ୍ତ୍ରୀ— ନକମାଗଚ କଣ୍ଠା
ଠୋକା ପାଣିବୁହା ଦେଖିବୁ ବୋଲି
ବାଟରେ ମାଗଚ୍ଛ ମଞ୍ଜା ।

ପୁ— କାଳିଗାଣ୍ଡି ମୁଣ୍ଡେ ଟିକା
ଆଖିରୁ କଜ୍ଜଳ ଲଗାଇ ପକା
ଆସୁଚ୍ଛି ଛନକା ଠୋକା ।

ସ୍ତ୍ରୀ— ଯାଉନାହୁଁ ଜବାରକୁ
ମୂଲ ଆଣିଦେବୁ କେତେବେଳକୁ
ରାନ୍ଧିବ କେତେବେଳକୁ ?

ପୁ— ଭୁମ୍ବି ଲୋ ଚଭୁଙ୍ଗ ମାଣ୍ଡ
ଖସବେଳେ ଧାନ ଶୁଖାଉ ନାହିଁ
ସଞ୍ଜ ହେଲେ ଉଗୁଳଇ ।

ସ୍ତ୍ରୀ— ହାଣ୍ଡିକି ଗୁଣ୍ଡଳ କେତେ
ପେଟ ନ ପୂରିଲେ କହିବୁ ମତେ
ବାଢ଼ିଦେବି ଶାଗ ମେଞ୍ଚେ ।

ପୁ— ଅଁଳା ପଟର ବେଣୀ
ଖୋଷା ଖୋସୁଥିବ ମରମ ଜାଣି
ଗଡ଼ଚଳ ପାଇକାଣୀ ।

ସ୍ତ୍ରୀ— କବାଟ କୋଣ ବାଉସି
ଶହେ ଟଙ୍କା ନଉ ଝଗିଲା ଆସି
କୋଉ ଗାଁ ପରବାସୀ ।

Digitized by srujanika@gmail.com

ପୁ— କଣ୍ଠ ଦେଇଥିଲୁ ନଣ୍ଠ କୂଳକୁ କ ଗଣ୍ଡକୂଳକୁ
ବାଘ ଭାଲୁ ଖାଇବାକୁ ।

ସ୍ତ୍ରୀ— କାଲ କହିଥିଲ ସକାଳୁ ଉଠି କ ଶେଯରୁ ଉଠି
କାନରେ କରଥା ଗଣ୍ଠି ।

ପୁ— ବାଲଜଦା ଧାଡ଼ ଧାଡ଼
ତୋତେ ନ ସାଜଲା ଚକଆମାଳୀ କ ପୋହଳାମାଳୀ
ମୋତେ ଦେଉଥିଲୁ ଗାଳ ।

ସ୍ତ୍ରୀ— ବାଘ ଦେହ ସନ୍ଧା ସନ୍ଧା
କୋଉ ଗୋଷ୍ଠ ସଙ୍ଗେ ପୀରତି କଲୁ
କାନ୍ ନୋଳ ଦେଲୁ ବନ୍ଧା ।

ପୁ— ଘୁମୁରାରେ ଦେଲ ଚଟା
ସବୁ ଘୁମୁଷ୍ଟ ସମସ୍ତେ ଏକା
କାହାକୁ ତୁମର ଇଚ୍ଛା ?

ସ୍ତ୍ରୀ— ଜଂଘା ବାଜେ ଘଇଁ ଝାଇଁ
ଲୁହା ଭାଙ୍ଗିଗଲେ କମାର ଯୋଡ଼ବ
ମନ ଭାଙ୍ଗିଗଲେ କାହିଁ ?

ପୁ— ନାଣ୍ଡି ବରଗଛ ଛାଇ
ନାଣ୍ଡୀକି ଧରି ମୁଁ କ ଘର କରିବ ?
ନାଣ୍ଡ୍ରୀ ଛ ମ ରଣା ଟାଙ୍କା ।

ସ୍ତ୍ରୀ-- ବଢଗଛ ଚଢୁରାଇ
ଶୋଇଲା ଶେଯରୁ ନେବ ଉଠାଇ
ମଲ୍ଲୀଫୁଲ ମନୁରାଇ ।

---

ଘୁମୁରା—ଯେ ଘୁମୁରା ବାଦ୍ୟ ବଜାଏ ।

Digitized by srujanika@gmail.com

ପୁ— ବରପାଖେ ମୋର ଘର
ବର୍ଷାରେ ପଡଇ ବର ପତର
ଶୁଭୁଥାଇ ଖର ଖର ।

ସ୍ତ୍ରୀ— ଆମ୍ବପତ୍ର କାହାଳିଆ
ତେଲ ହଳଦୀରେ ପଟେଇଥିଲି
କିଏ ନେଲା ମାହାଳିଆ ?

ପୁ— ହଳେଇ ବେକରେ ହଦ
ପର ପୁଅକୁ ତୁ କଣ୍ଢ ଦେଇଛୁ
ଘରେ ଶୋଇଅଛୁ ନିଦ ।

ସ୍ତ୍ରୀ— ପଇସା ଦଇସା ବଡ ପଇସା କି ସାନ ପଇସା
ଘୁମୁଷି ବଡ଼ ଖଇଲୁ ।

ପୁ— ଗାଣ୍ଡି ମାଡ଼ଗଲେ ଗୋଡ
ଗେଙ୍ଗୁଟି ପଥର ବଣ ହଳଦୀ
ଶିରେ ଶିରେ ଗଲି ଭେଦ ।

## ପାଟୁଆ ଗୀତ (ଭେଣ୍ଡା, କଟକ)

ବନ୍ଦିଲି ବନ୍ଦିଲି ଚୌଦିଗ ବନ୍ଦିଲି ବନ୍ଦୁଅଛି ବସୁମତୀ
ବନ୍ଦାଏ ବରୁଣ ଦଶଦିଗ ବନ୍ଦେ ବନ୍ଦୁଅଛି ଗଣପତି ।
ଆଗେ ଗଣପତି ପଛେ ଦିବାକର ତୋର ପାଦେ ନମସ୍କାର
ଅଜ୍ଞାନ ବାଳୁତ କିଛି ନ ଜାଣଇ ପଢ଼ୁଛି ମହା ମନ୍ତ୍ରର ।
ମହା ମନ୍ତ୍ର ପଢ଼ି ଗୁରୁ ସେବିଥିଲି ଗୁରୁ ହେଲେ ସୁପ୍ରସନ୍ନ
ସଂକଟେ ଘାଉଡ଼ି ପଦ ମଣ୍ଡାଉଛି ଧନ୍ୟ ସେ ଗୁରୁ ବଚନ ।
ଛଉଣି ବଦାଡ଼ି ଚକି, ଫୁଲ ଛନ୍ଦ ବାଣ କିଏ ମାରୁଛି
କରେ ପାଟୁଆ, ତୋ ଦମ ଗୁଲିକି ଦେଖି ।
ଦୁଧରେ ପଡ଼ୁଛି ସର,
ପାଟୁଆ ଘରିଯା ଶୋଇଛି ଘର

Digitized by srujanika@gmail.com

କହ ଟାପୁକରେ, ବାଜୁବନ୍ଧ ନେଲୁ ଶ୍ୱେର ।
ଦୁଧରେ ପଡ଼ୁଛି ମାଛି,
ପାଟୁଆ ଘରଯା ପଚ୍ଛୁରୁଅଛି
କୁହ ଗାପୁକରେ, ଜୁଡ଼ା କେତେ ଦିନ ଅଛି ?
ନୂଆ ଆଟିକାରେ ଲୁଣ,
ଭେଡ଼ା ନାପୁକାଣୀଙ୍କର ବହୁତ ଗୁଣ
କରେ ପାଟୁଆ, ସେ ବୁଲାଇଲେ ଘରକୋଣ ।
କିଏ ଦେଲା ତୋତେ ଗଳା ଘୁପ ସରି କିଏ ଦେଲା ତୋତେ ଛାଟ
କିଏ ଦେଲା ତୋତେ ପୟରେ ନୂପୁର ?
କିଏ ଦେଲା ତୋତେ ବେତ ?
ମଙ୍ଗଳା ଦେଇଛି ପୟରେ ନୂପୁର ବାଶୁଳୀ ଦେଇଛି ବେତ ।
ଗବଗଛ ଛନ କେନା
ସରଦା ବାଳକି ଦେଲ ଅନାଇ
ଜଟେଡ଼ ବାବୁ ସିନା ଛନରଥେ ଛନ ବାନା ।
ବାଡରେ ବାଡ଼ଆ ଗବ
ଆଜ ମଲେ କାଲି ଦ ଦିନ ହବ!
ସେ। ମନରେ ପକାଉଥିବ ।
ହାଡ଼ ଡେଇଁ ଗଲା ରଣା,
ଆଇଲେ ପାଟୁଆ ଖାଇଲେ ପଣା
ବାଲବନ୍ଧା ଗୃହଅଣା ।
ଜଡ଼ାଇ ଦେଲି ପାଉଁଶ,
ବାବୁଘର ସେଉଁ ଢେଙ୍କା ଉଆସ
କହ ପାଟୁଆରେ, ଢେଙ୍କଳପିଆ ବାଉଁଶ ।
କଙ୍କଡ଼ା ଗୋଡ଼ଆ ମାଟି,
ବାବୁ ତୋଳଥିଲେ ଘର ଦୁଇଟି
ଶୂନ୍ୟରେ ଜଳାକବାଟି ।
ତୋଟାକୁ ତୋଠା ଲାଗିଛି
ମଧୁବନ ତୋଠା କିଏ ଜଗିଲା

Digitized by srujanika@gmail.com

ଏବେ ଡାଳମ୍ବ ଦୋଳପଡ଼ୁଛି ।
ନୂଆ ପୋଖରୀରେ ଗୋଡ଼,
ଠାକୁର ଉହ୍ୱାଳେ ଜଳରେ ବୁଡ଼
ଏବେ ଦଶୁଛି ସୁବର୍ଣ୍ଣ ଚୂଡ଼ ।
ମାଆ ମଙ୍ଗଳା ତୁ ସର୍ବ ମଙ୍ଗଳା
ସଙ୍କଟରୁ କର ପାର
ଦେଶକୁ ଗଲେ ମୁଁ କଳାବୁଦା ଦେବ
ସନ୍ୟ ବଳ କର ପାର ।
ହସ୍ତକେ ଘେନୁଛି ସଞ୍ଜ ସଳିତା ମା
ହସ୍ତକେ କଜଳପାତି
ମାଆ ମଙ୍ଗଳାକୁ ବନ୍ଦିଲାବେଳେ
ନିଶା ଗରଜଇ ରାତି ।
ମାଛ ବାଲୁଙ୍ଗର ବେକ,
ଅଣ୍ଡିରା ମୟୂର ଦଉଛି ଡାକ
ନୟନ ଫୁରାଇ ଦେଖ ।
ନଈରେ ନାଆ ଯାଉଛି
କାଳିକତାଠାରୁ ପୁରସ୍ତମ ଯାଏ
ଭୁମର ନାଆଁ ବାଜୁଛି ।
ପଗୁ କାନକୁଳୀ କଣ୍ଠା
ବାବୁ ଦେଇଥିଲେ ଡୋରିଆ ମଠା
ଭାଙ୍ଗି ଗୁଲୁଥିଲୁ ଅଣ୍ଟା ।
ବଳଦ ପିଠିରେ ଚାଟ
ଫିଟାଇ ଦେବକ ଦାଣ୍ଡ କବାଟ
ଦେହା ପାଟୁଆ କରିବେ ନାଟ ।
ମୂଷାମାଟି ଝର ଝର
ଦେଉଳ ଭିତରେ ଡାକେ ମୟୂର
ପିଠି କଣ୍ଟା ନେଲା ସ୍ୱେର ।

Digitized by srujanika@gmail.com

ଠେକରେ ନାଇଲ ଚୂଡ଼ା
ଗାଆଁ ଗାଆଁକ ମୁଁ କହ୍ବ ଆସୁଛି
କାଲି ହେବ ପିଠିପେଡ଼ା ।

## ରସର କେଲି (ଲଇଡା, ସମ୍ବଲପୁର)

ଚୂନ ଚୂନ ଖପରରେ ରହୁଁର ପାନ
ଚଲରେ ନଣ୍ଦ କଲହାଣ୍ଡି ପାଏନ
କଲହାଣ୍ଡି ପାଏନରେ ନଣ୍ଦ ମାଛ ମୁଣ୍ଡା ମୁଣ୍ଡା
ମାଛ ମାର ଝୋଲ ପିଆଇ ଚଲପିବା ବାମଣ୍ଡା
ବାମଣ୍ଡା ରଜାର କରେ ସୁନାର ପାଞ୍ଜଣ
ଆଗେ ପଛେ ଲମ୍ବିଛନ୍ତି ଛ'କୋଶ ଧାଙ୍ଗଡ଼ୀ
କାଠ ଦୁଆର ଚାଟି
ବାଜେ ନଶା ଘଣ୍ଟ
ବାର ଅନାର ଖଜାର ଖାଇ ଶୁଇ ପଡ଼ିଲୁ ଘଣ୍ଟ
କାହିଁ ଯାଇଥିଲୁ ?
ପଡ଼ିଥିଲା ପଲଙ୍କ ଖଟ ଅଚେତା ହୋଇଲୁ ।
ପଲଙ୍କ ଖଟ ବାଜା
ଘଣ୍ଟ ଲାଗେ ମଜା
ଦୀପ ଜାଳ ଦେଲୁ କ ? ଘଧିକା ହେଲେ ଦୋଷ !
ଝଟ୍ କର ବେଣ ହୋଇ ଆସି କୋଳେ ବସ
ଘି କୁଣ୍ଡି ପାଚଲ
ତେଲ କୁଣ୍ଡି ପାଚଲା
ଜଗତୀ ଉପରେ ବସି କର ମଲ୍ଲୀଫୁଲ ଯାଚନା ।
ରେ ବାପୁର ମନ
ଛୁଏ ଛୁଏ ଘଡ଼ମସ ଜଳ୍ପ
ତୋ ଲାଗି ଭେଟିଲି ସପନ
ନଣ୍ଦାରେ ଗାଙ୍ଗଦେବୁ ପାନ
ରସ ଯା ବୁଲିଯା ।

Digitized by srujanika@gmail.com

ଦେଉଲର ଘଣ୍ଟିକୁନେ ଘଣ୍ଟା କବାଟ
ଜଲି ଭଜା ବଝ ଭଜା ପଖାଲ ଢାକର
ଚୋଟେ ଲଟେ ପାଲ୍ଲିଜର ମଟେ ଲଟେ ଡର
'ଷା, ଲୁସ୍କୁ ଲୁସା
ଧର ପଇସା
ଭିନ ଖିସ୍ସା
ମୁଢି ମିଶା
ଛନ ଗଡ଼ଶା
ନଡ଼ିଆ ତେଲ
କର୍ସି ଗେଲ
ଦାନ୍ତି ଖଜା
ମନକେ ବୁଝା
ଟକା ଲଡ଼୍
ମନେ ପଡ଼୍
ଧୃର ଗୋ ଧାର
ତୋର ଘରେ ନାହିଁ ଅରୁଆ ଭାତ ।
ଝଗଡ଼ ଝାଇଁ
ଏନ୍ତା କଥା ମନକେ ନାଇଁ ।
ଶୁଖିଲ ପଥର
ଭୁଇକା ନମ୍ମ ଦ୍ୱାମର ବତର (ଆମ ସରଶା) ।
ବାଉଁଶ ନଲ୍ଲି
ଭିତରେ ଭିତରେ ଯାଉଛୁ ଗଲ
ଶୁଖା ଛଗଡ଼
ମନ୍ଥା ସମ୍ବଲପୁର କନ୍ଦଡ଼ କନ୍ଦଡ଼
ଗୁଡ଼ୁଢିଅ ଡ଼ବାଘର ମକର
ଛଡ଼ାଇବ ଜର ।
ଭସ ଯା ଘୁଲଯାରେ ।

---

Digitized by srujanika@gmail.com

## ମୁଖରୁ ବୟସ ଗଲେ କିଏ ପଚାରିବ ? (ମାଇଲଜଡ଼, ବାମଣ୍ଡା)

ଏଇ ପରବଟେ କରେ ଘଇଗଛ ମନ
ଘଇଗଛ ମରୁ ମରୁ ପଦ ସଜାଡ଼ନ
ଗୋପୀ ମୁଣ୍ଡେ ଟୋପିରେ ବାନ୍ଧି ନା ମୁଣ୍ଡେ ଜଟ
କୃଷ୍ଣ ଅଙ୍ଗେ ପାନ କରେ ପତର ଗୁଘ ଛଟପଟ
ମାଇଲ ଜଡ଼
ଜଡ଼କୁ ଘୁଡ଼ ବରଗଡ଼ରେ ମାଇଲ ଜଡ଼ । ୧ ।

ଗାଈ ପେଟ ଭିତଲ୍ କରେ ତେଲ୍ ମଖା ଗିନା
ପୁଅ ହୋଇଥିଲେ ମୁଇଁ ଆନନ୍ତ ବନ୍ଦଣା
ଝିଅ ହୋଇ ଗଲୁରେ ନଣାନା,
ଘର କଲୁଛନାରେ, ମାଇଲ ଜଡ଼ । ୨ ।

କାଣ୍ଡ୍ ଶର ଭାଙ୍ଗିଲା କରେ ଫୁଲ ଶର ଭାଙ୍ଗିଲା
ଭୁଇ ହେଲୁପରା ବୁଲରେ ବଜଲ, ମୋ ମନ ଭାଙ୍ଗିଲାରେ
ମାଇଲ ଜଡ଼ । ୩ ।

କାହିଁକି କାନ୍ଦୁଛୁରେ ବାଲ କୁଦେ ବସି
ମାଣ ଦେବ ପାନକିରେ ଲହଡ଼ା
ଜଲେ ପିବୁ ଭାସିରେ, ମାଇଲ ଜଡ଼ । ୪

ବାହାରର ଖଏର ଡାଲ ଧୂଳକୁ ଝଣେ ଲାଲ
ଦୁଇ ପଇସା ଜଡ଼ା ତେଲରେ ବଜଲ,
କୁଞ୍ଚ_କୁଞ୍ଚ_ବାଲରେ, ମାଇଲ ଜଡ଼ । ୫ ।

ଏଇ ପରବଟେ କିରେ ଖସରି ଆସେ ରଣା
ହଟି ଗଲା ନାକର ଗୁଣାରେ ବଜଲ
ଖୁଜି ଖୁଜି ବଣାରେ, ମାଇଲ ଜଡ଼ । ୬ ।

ଧାନ ଦାଇଗଲା କେଣ୍ଡା କେଣ୍ଡା ପଜେଇଗଲା ନସା
ସୁଆସେନ୍‌ମାନଙ୍କର ନଜ ଘଇତାରେ ବଜଲ,
ଝାରର ଦଣ୍ଡ ବର୍ହା ରେ ମାଇଲ ଜଡ଼ । ୭ ।

Digitized by srujanika@gmail.com

ଆମ ଗଛେ ଜାମ ନାଇ କାହିଁକି ଲବଡ଼ ମାରୁ
କାଏନ୍ ପଣରେ ପଇସା ନାଇରେ ବଜଲ,
କାହିଁକି ନପୁନ୍ ସାରୁରେ ? ମାଇଲ ଜଡ ।୮।

କାଠ ଖଣ୍ଡେ କାଟିଗଲ ଦୁଇମୁଣ୍ଡେ ଘୁଲ
ବୁଡ଼ୀ ଗୁଟେ ଥାଏନ୍ ଥିଲ ସେ ଆଷାଢ଼ ମାସେ ଚଲ
ଟୁକେଲ ଗୁଟେ ଆଏନ ଥିଲିରେ ବଜଲ,
ବଡ଼ା ଦଶା ଦେଲାରେ, ମାଇଲ ଜଡ ।୯।

ବାହାରର ଗରଗଡ଼ ଘିଚ ଦେଲେ ପିବ
ମୁଖରୁ ବୟସ ଗଲେରେ ବଜଲ,
କିଏ ପଚୁରବ ରେ, ମାଇଲ ଜଡ଼ ।୧୦।

## ରସର କେଲି (ଲଇଡ଼ା, ସମ୍ବଲପୁର)

ରସରକେଲିରେ
ଏଡ଼େ ବଡ଼ ସଇଜରେ କୟାଁ ଗଛ ନାହିଁ
କୟାଁ ଖାଇ ବୟାଁ ହେଲୁ ନମ୍ମର ମା' ଛଡ଼େ ଦୟା ନାହିଁ
ବାହାଲର ଗରଗଡ଼ ବାଣ୍ଟୁଦେଲେ ପିବ
ମୁଖରୁ ବୟସ ଗଲେ ନମ୍ମର ମା' କିଏ ପଚୁରବ ?
ନଣ୍ଡ ଆରପାରେ ପିଲ କୁକୁର ଭୁକଇ
କୁକୁର ନୁହେଁ ସଖୀରେ ଦଅର ଡାକଇ
ଦଅର ହେଲେ ସଖୀରେ ନଣ୍ଡ ଡେଗି ଆସୁ
ପଡ଼ଅଛୁ ଶେଯ କିରେ ପଲଙ୍କ ପାଖେ ଆସି ବସୁ ।
ରସରକେଲିରେ
ଏଡ଼େ ବଡ଼ ସଇଜରେ ଅପାଲକ କଲ
ଝୁଁଟି ମୁଁଡ଼ କାଟିକିରେ ଟେଁଡ଼ା ଗଢ଼ାଇଲ
ଦୁଇଗୁଡ ଗାଭୁନ ମଧ୍ୟରୁ ଜଏ ପାନ ।
ଏଇ ପରବତରୁ ରେ ଖସିପଡ଼େ ରନା
ଗୁଣ୍ଡ କାଖ ତଲେ ଦେଖ ବେଦନା ମଧ୍ୟରେ ରସଦନା

Digitized by srujanika@gmail.com

ଯାନଗଲ ଖଲ ଖଲ ଛୁଡ଼ଲ ଜଗଲ
ଦୁଇ ପଇସାର ଜଡ଼ାତେଲ ନଖର ମା' କୁଁଚ କୁଁଚ ବାଲ
ବାନ୍ଧି ଯାଇଥିଲ ପିଲ ଏତେ ବେଲ ହେଲ
ବାରଘଡ଼ ଜହ୍ନାହେଲା ରାତି ବୁଡ଼ଗଲା
କୁକୁର ଡ଼ାକି ପାହାନ୍ତି ହେଲାକ, ରସରକେଲିରେ ।
ବେଲ ତ ଉଦେସ୍ସ ରେ କୁସୁମ କୁହୁଭେଲି
ନ ପଣ ଢଅରରେ ମରର ବୁଟି ମେଲି
ଘରେର ଅଣ୍ଟୁ ରଙ୍ଗ କରେର ମନ୍ଦାର
ଲଗାଅ ଝାରେର ମଲ୍ଲୀ, କ ରସରକେଲିରେ ।
ଆସିବ ବୋଲି ଭେଣ୍ଡ୍ରୀ ଦେଇଥିଲ ଲପେ
ଜହ୍ନ ବୁଡ଼ ରଜନୀରେ ଯାହ୍ଵଲ
ଭେଣ୍ଡ୍ରିଆ କଲ ଉପେ, କି ରସରକେଲିରେ ।
ଏସୁଟଲ ସାକେଲ ପଡ଼ଲା ହୁଦବୁଦ
ବୁଢ଼ାବୁଢ଼ୀ ଘର ଜଗିଲେ କୁଟୁମ୍ବ ଦେଲେ ଖେଦ
ଶ୍ରଦ୍ଧା ଦେଲେ ପାଲିଝାଲି ପାନ୍ଧଛନ୍ ପଲାଇ
ହଇଲେ ଚାଟକା
ବୁଢୀ ମାଇଝୀକି ଲାଲ କବଟା
ଭଁଗାଇ ବୁଲେ ଅଁଟା ।
ଭୁହୁକି (ପଙ୍କତ) ଯୁବତୀର ଯାନ ବୁଦେ ଝର ଝର
ଜନକର ନାଁ ନୂରରେ ଜନକର ନାଁ ଦୂର
ଜନକର ନାଁ ବେଡ଼ରେ ଜନକର ନାଁ ପାଟ
ଆଣ୍ଡ ଜନକର ନାଁ କହିଲେ ପିମା ଧମାଦାଟ, କି ରସରକେଲିରେ ।
ଗାଁ ଗୁରଚରା ମହୁଲ ବୃକ୍ଷ
ଅଗି ତରେ ଡାକେଲ ବସି ଭଲଇ
ବୟସ ଗଲା ଗୁଲି
ଆପୁସ ବୟସରେ କେତେ ଧନ ଥିବ ?
ମାଗିତରେ ଯାଚ ତରେ ଖାଇବ
ଧରଇ କଏ ଦେବ ? ରସରକେଲାରେ ।

Digitized by srujanika@gmail.com

ଆସ ଆସ ଟୁକେଲମାନେ ଝାର ବୁଲି ଯିମା
ଝାରବୁଲୁ ଝାରେ କରେ ଏ ଗୀତ ଗାଇମା ।
ଗୀତ ସରିଗଲେ କିରେ ଗାଆଁକୁ ଚଲିମା
ଗାଁ ଲୁକେ ପଚୁରଲେ କି ବୋଲି ବଲିମା
ଶାଶୁ କିରେ ନନନ୍ଦକୁ ଭୟ ନାହିଁ ମୋର
ଘରର ସଏତା ହେଲେ କାଲିଆ,
ସବୁ ହେବା ପର କି ରସରକେଲିରେ ।
ପାନ ନେଇଗଲିରେ ହାଉଁଲି ବନ୍ଧକୁ
ମାଇସିଙ୍ଗ ମାଛ କିରେ ମଇଲ ନୁଲିଆ ଖୋସାକୁ
କୁମ୍ଭ ଧରି ଜାଲ ମଝେ ହୋଇଥିଲି ଠିଆ
କଦମର ମୂଳେ ଥାଇ କରି କାଳିଆ
କଲେ ଟିପୁରିଆ (ଚାପରା) କି ରସରକେଲିରେ ।
ପାନ ପତର ମଲାରେ ସୁପାରି ପନତ ମାଲ
ହୋଇ ହୋ ପ୍ରାଣେଶ୍ୱର ପାସରା ନ ଗଲ
ନ ପାସେ ରେ ଚନ୍ଦେ ରେ ସୁରିତ ଦେବୁ ମତେ
ଉଲି ଉଲି ଗଲି ମୁହିଁ ସରିଆ ବୁଟାକେ
ପମନ କିରି ଏ ଡେଲ ମାଇଲେ ଡଲିଆ ଖୁସାକେ
ମୋର ଦୁଃଖ କହିବି କାହାକୁ ?
ମୋର ମୋର ବୁଝାଉଛୁ ମୋହର ମନକୁ
ମୋର ଖୁସା ପିଏ ନବ କଞ୍ଚା ପଉଳ ଦେବ
ସୁନା ପ୍ରାଏ ଝିଁକ ଥିବ ।
ଚୋଚେ ବାଇକଲାରେ ନମ୍ରି କେନ୍ଦୁ ପତର
ସକାଲରୁ ଟୁପା ଚୋକେଇ ଧରି ବୁଲୁ ଝାର ଝାର
ମାଚା ଚିହ୍ନା ଲାଲ ମନା କରେ ଠିକାଦାର
ବାଛୁ ବାଛୁ ଭୁଲି ବୁଲୁ ବନ ବପହର
ଛୁଆ ଗୁଡ଼ ଅଇତ (ଅହ୍ୟ) ବଣ୍ଡୀ ବୁଲେଝାର ଝାର
ଚପ୍ର ଗୁସ (ଗୋରସ) ପିଇ ଛୁଆକେ ଧଇଲା ଖାସିକର

Digitized by srujanika@gmail.com

କେ ବୋଲଇ ଚାଲ ଆଣ ହେଲାନି ଉତ୍ତୁର
ବୋଝା ବୋହି ଘରେ ଥୋଇ ପଉ ବାସିଥିର
ପେଖା ଛୁନ ମୁର ହେନ ଫେରଯାଅ ଘର କି
ରସର କେଲରେ ।

## ଡାଲ୍‌ଖାଇ (ବାମଣ୍ଡା)

ଡାଲ୍ ଖାଇବୋ...
ବାହାଲର ଶେମଲାଫୁଲ ନାଲ ଦିଶୁଥାଏ ନାହି
ସେନ୍ଧପଠ ତାର ମଲ୍ ମଲ କେନ୍ତେଁ ଝଗେ ନାଇଁ
ସାଗିଆ ଧାନକେ ମଞ୍ଜୁର ବାଏ
ଖାଏ କ ନ ଇ ଟେହେଙ୍ଗ୍ ଥାଏ
କାନ୍ଧୁ ଯା ଯା ପଳାଇ, ଭୁଞ୍ଚା କଥାଟାକୁ ଭୁନ୍ଧ ହେଉଛୁ ଉଣ୍ଡେଇ ।

ଯାଅ ହେ ଘରକୁ,
କାଏଁ ବାଇ ହେଲୁ ଶିଲ୍ ଡାଲ୍ ଖାଇ ଗୀତକୁ
ବାଜଯିବ କତରିଆ ଟେଳେଇ ଯିବୁ ଠାସକୁ
ଚଇତ ମାସରେ କରେ ଚଇତିଆ ମଲ୍ଲୀ
ଡାଲ୍‌ଖାଇ ଗୀତରେ ତୋର ମନ ଯିବା ଭୁଲି
କଟକିଆ ଭାଷା, ଉପର ବାମ୍‌ଣ୍ଡିଆ କାନ୍‌ଚଲିଆ ଖୁସା
କାଲି ନୂଆଁ ବଜାର ଚଲେ ନେଇଗଲୁ ପଇସା
ଆଶା କରଇଲ ଭୁକ୍ତି ପଳାଇଲ ଗଲୁ, ହେଲା ଲୁକ ହସା ।
ରସ ଯା ଗୁଲିଯାରେ ।

ଡାଲେ ଡାଲେ ଗଲ ଡାଲୁଆ ମୂଷା
ଗଲେ ଖ୍ୟିଥିଲୁ ତାଲିଆ ଖୁସା
ନାକେ ନାକଠଣା ଝିଲକା ଦଣ୍ଡୀ
ଗୁଡେ ଗୁଡ ବଳା ଅଣ୍ଟା ଗୁଇଁଠ
ମୋତେ କହିଥିଲୁ ଧଲ,
ଏସୁ ମର ମନେ ପଡ଼ିଣଗଲା

Digitized by srujanika@gmail.com

ସପୁର ବାଲି, ପିମା ବରପାଲି
କଲ କାହ୍ନୁର ଗୁଲି, ଦେଖି ପିମା ଲାଲି
ଭରନା କଲା, ହୁଲ ହୁଲା ଡାଲି ଶୁଣି କଲାକାହ୍ନୁ
ମନ ପିବା ଭୁଲି କ ଡାଲ୍ ଖାଇରେ । ୨ ।

ଡାଲ୍ ଖାଇବୋ—
ବଡ଼ ବଡ଼ ନପୁରର ସାନ ସାନ କାନ
ଭୁଣ୍ଡ କରି ଯାଇଥିଲି ଧାନ ତିନମାଣ
ଧାନ ତିନ ମାଣ କେରେ କୁଟିଗଲି ଭଆ
କୁଟିଗଲି ଭଆ କେରେ ରନ୍ଧିଗଲି ଜାଉ
କା ପଛରେ କାହା କତିକି ସାନ ନଣନ୍ଦ ଖାଉ
ନଣନ୍ଦ ଗଜଣା ଦାଉ, କାହାକୁ କହିବ ଆଉ
ଫାଟଲେ ପଟ୍ଟେ ପୁଡ଼ପାଉ ମନେ ମନେ ଥାଉ
ନାଲ ଫାଲିଆ, ଚଉଦ ଗାଲିଆରେ ବଙ୍ଗାଲିର ଛୁଆ
ମଝିଦାଣ୍ଡେ ମତେ କରିଛୁ ଠିଆ
ପଏସା ଦଣ୍ଡିସ କାଏନ୍ ରେ ଧଇଲି
ଝିଙ୍କୁରି ଦେଲେ ପଡ଼ବକି
ଦାଇ ମଲିକେ ଆସିଥିଲେ ବଲି ଏକଥା କଏ ଜାଣିବକି ?
ଗଜରି ମଲ୍ଲୀ, ନାଇ ଜାନ କରି ପୀରତି କଲି
ଏକା ଦେଖି ମତେ
ଥଙ୍କା କରୁ କେତେ
ଧାନ ଗରିଆ ଗୁଡ଼
ଷିହଲ ଜୁରି ପାଏନ୍ ଟେଣ୍ଡ୍ରି ଦେବ କଲା କାହ୍ନୁ
ଶୁଇ ପଡ଼ବୁ ରାତି
ଡାଲ୍ ଖାଇବୋ । ୩ ।

ଡାଲ୍ ଖାଇବୋ—
ଝିଲର ମଲର ଲନ୍ଦର ଫନ୍ଦର ଡେଙ୍ଗୁରିଆ ଖୁସା
ଦେଖି ଦେଖି କାଟି ନେଲ କାନଡଲିଆ ମୂଷା

Digitized by srujanika@gmail.com

ନଣଦେ ନଣନ୍ଦେ କଟଗା କାମୁଣ୍ଡରେ ଘଟ
ରଜା ଘରେ ଘୁଡ଼ା ମଠର ପରଜା ଘରେ ଖଟ
ବଡ଼ ବଡ଼ ବାବାଜୀଙ୍କର ବଡ଼ ବଡ଼ ଜଟ
ଆକାଶରେ ଜହ୍ନ କରେ ପଉଗରେ ତାସ
ନ ଯା କୃଷ୍ଣ କଳାକାହ୍ନୁ ମୋହନ ହୋ
ଚୁରି କଲେ ଦୁହେଁ ଯିବା ଧରା
ମିଛେ ଲୁକ ହସା ରସ ଯା ଖୁଲିଯାରେ ।

## ଗୁଁଡିଆ କଥା (ଲଇଡ଼ା, ସମ୍ବଲପୁର)

ଶୁନ ଶୁନରେ ମାଲିଆ ଭାଇ, ଗୁଣ୍ଡିଆର କଥା କହେଁ ମୁହିଁ
ଘର ଦୁଆର ଜାଣ ଖୁଲି, ବେଲ ବୁଡ଼ଲେ ଗୁଣ୍ଡିଆର ପାଲି
ଗୁବର ଗଦା ଭରକୁଲା, ତହିଁ ଗୁଣ୍ଡିଆ ମଲକଲା
ପୋଡ଼ ଛପର ପୁରା ପୁରା, ବସିଥିବେ ତହିଁ ଚଢ଼ଚଢ଼ା
ଠାବେ ଠାବେ ହୋଇ ମନର ଠାନେ, ରୂବ ଆନବେ ନାକେ କାନେ ।
ପୋଡ଼ ପାନ ଦେଲେ ବୁଡ଼ି ଗୁଣ୍ଡିଆର ଉଡ଼ଲେ ଗୁଡ଼
ଗାଏ ଗୁହାଲେ ଗୁଣ୍ଡିଆ ବାଜେ, ବେକେ ଘନ ଘନ ଘଁଟି ବାଜେ ।
ଗୁଣ୍ଡିଅର କହନିଆ ଦୁଇଗୋଟି, ଘୁନ୍ ଘୁଟି ଆଉ କୁଉ୍ କୁଟି
ସେଦିନ ଦସନ ତାର ମଙ୍ଗଲବାର, ଦେଖାକେ ଦେବା ରକତ ଧାର
ଗୁଣ୍ଡିଆ ଚଲ୍ ସ୍ଥର ବେଲେ, ନାଇଁ ଆସଲେ ନାଇଁ ଚଲେ ।
ଦେଖଲ ତଷ୍ଟ୍ କୁହୁଳା ଧୁଆ, ଗୁଣ୍ଡିଆ ବଏଲା ନାଇଁରେ ବୁଆ ।
ଇନେ ପଶଲେ ମରବ ବେଗି, ଜୀବନ ଯିବା ମାଏଝୀର ଲାଗି
ନୂଆ ମାଏଝୀ କରମି ପଛେ, ଜୀବନେ ଯିବା ମିଛେ ମିଛେ
କୁହୁଳା ଘର ମଟେ ଅଡ଼ଆ, ଏନ୍ତା ବଲି ଉଡ଼ଲା ଗୁଣ୍ଡିଆ
ଯାଇ ଲୁକ୍ ଲୁକ ଲୁକର ଝଲି, ଠାନ ଜାନ କର ହୁଙ୍ଗମି ବଲି
ଜନେ ବସିଥିଲା ପଛ କରି, ଚୁଟଲେ ବଏଲା ଝଟ୍ କରି ।
ଲମ୍ ଲମ୍ ଗୋଡ଼ ଲପ୍ ଲପ୍, ମୁହଁକେ ହୁଙ୍ଗଲା ଟପ ଟପ ।
ହାଏ କରିଦେଲା ଆପର କୁଟି, ଝରି କରି ଦେଲା ସଲତା ବଁଟି ।
ଦରବୁଡ଼କା ନାଇଁ ବାଜଲା, ବାଜଥିଲା କାଏଁ ଜୀବନ ଥିଲା ?

Digitized by srujanika@gmail.com

ଚଉସର୍ ଗଲା ଜୀବନ ଧରି, ଗୁଣ୍ଡିଆ କନିଅର କାନ ଧରି ।
ଆସେଜ୍ ମଙ୍ଗଲବାର ଉଷାଭବାର, ଦେବୀଙ୍କେ ଦେବେ ରକତ ଧାର ।
ନାକେ ଗୁଣ୍ଡିଆର ମରଦଟା, ଯୁଡ଼ାରେ ମାଏଝୀର ଉଡ଼ୁଆଟା ।
ଯାହା ଖାଇଲୁ ଖଇପାରୁ, ମରଦ ହେବାର ମୁହଁ ପୋଡ଼ୁ ।
ଚ ଭୁଇ ରକତ ଧାରେ ଆନ୍, ନହେଲେ ଏଛେନ୍ ଗଲା ଜାନ୍ ।
ଆଜି ଦେଖୁଥିବ ସବୁ ଜନେ, ଭୁଇ ବସିଥିବୁ ଗୁଟେ ଠାନେ ।
ଗୁଣ୍ଡିଆ ବଏଲା କାଏଁ କହେମି, ତୋର ବଚନ ନାଇଁ ସହେମି ।
ନାଇଁ ପାରେ ମୁଇଁ କଚରକାଚର, ଭୁଇ ଯିବୁ ହେଲେ ଯାଗୁଡ଼ରେ ସୁତର
ଦଶ ଘଡ଼ିକେ ପାଇଲି ଚେତା, ମଡ଼ିଯାଇଥିଲେ କେନ୍ତା ହେତା ।
ମାଏଝୀ ଜନମ ବଡ଼ା ସାଫୁଲ୍, ଖାଇ ଦେଉଥିବ କାପୁଲ କାପୁଲ୍ ।
ଏନ୍ତା ମାଏଝୀ ଘର କରି, ଦେଖଲା ବେଲକୁ ସର ପାରି ।
ଉଆଁସ ଦିନେ ରନ୍ଧବା ଭୁନ, ଚନ୍ଦ୍ର ଲଗିଥିବା ଅଲପ ନୁନ ।
ଯାହାର ପୂର୍ବେ ଭାଗ୍ୟ ଥିବା, ଏନ୍ତା ମାଏଝୀ ବଶ ହେବା ।
ଭୁଁଗା ଧୁନ୍ଶର ମାଏଲା କଣ୍ଡ, ଘଏଟା ମଲେ ମାଇପ ରାଣ୍ଡ ।
ମନ ଜାନିକରି ମାଏଝୀ ସ୍ୱାନ, ମନ ମିଳିଥିଲେ ଯାଏ ସୁଖେ ଦିନ ।

## ଝାଲିଅନା (କୋରାପୁଟ)

ଦିନେ ମାଛମରା ଦିନେ କନ୍ଦା ଖୋଡ଼ା
ମୋ ଝାଲିଅନା
ପଡ଼ିଲ ଦୁଃଖୀର ଘରେ
ନ ଯିବା ଜୀବନ ଢଲେ ବାନ୍ଧନେଲ
ହେ ଝାଲିଅନା
ହେରେ ସିଂହ ଦୁଆରେ ।
ଭୃଶଆଡେ ମୁହିଁ ମୁରୁଗା ଲଗାଇ
ମୋ ଝାଲିଅନା
ମହିରେ ନାଉଡ଼ ସାଜି
ଝନ୍ଦିପିତ ଟଣ କଟିଥିଲି ମୁଞ୍ଜି
ମୋ ଝାଲିଅନା
କା ସଙ୍ଗେ ହୋଇଛୁ ବାଇ ।

Digitized by srujanika@gmail.com

ଆମ ନବରଙ୍ଗପୁରେ ସୁନାଶ ସଙ୍ଗ
ମୋ ଝାଲିଅନା
ସୁନା ରୂପା ଦୁଇଭାଇ
ଅନ୍ତ ପିଠ ପଶ କଲେ କ ହେବ
ମୋ ଝାଲିଅନା
ତମର ଠିକଣା ନାହିଁ
ହାକ ଡ଼ାକ ଦେଇ ଖମନେ ପଶିଲି
ମୋ ଝାଲିଅନା
ମାରଲି ଧଁଅଡ଼ା ଢ଼େଲି
ବାନ୍ଧୁନ ପିଲକୁ ବୁଲାଇ ମାରୁଛ
ମୋ ଝାଲିଅନା
ବାରବରଷର ଭାଇ ।

## ଛେରେ ଛେରା ଗୀତ (କୋରାପୁଟ)

ଚୁନ ଉପରେ କୁମୁଣ୍ଡା
ମର ମାଙ୍କଣା ଉମୁଣ୍ଡା, ଛେର୍ ଛେର୍, କୁଲେକେ ଛେର୍ ।
ଚୁନ ଉପରେ ବରେଇ ଢ଼େର
ମର ମାଙ୍କଣା ପାଣ୍ଢୋଇ ଗ୍ଲେର, ଛେର୍ ,,
ଚୁନ ଉପରେ ଟେଣ୍ଡ୍ରୁର ,,
ମର ମାଙ୍କଣା ମୁଣ୍ଡ୍ରୁଚ, ,,
ଚୁନ ଉପରେ କାକୁଡ଼ ,,
ମର ମାଙ୍କଣା ମାକଡ଼, ,,
ଆଜ ପୁନ କାଲି ପୁନ ,,
ଫଠା ଭୁଠା ଭୁନା ଭୁନ ,,
ଛେର ଛେଗ ମୁଷା ମଗ ,,
ଢରି ପଇତ ଗୁଖଡ଼ା କଗ ,,

Digitized by srujanika@gmail.com

## ଡାଲମୂଳିଆ ଗୀତ (କୋରାପୁଟ)

ଝୁଣ୍ଡୁ ଝୁଣ୍ଡୁ ଖୁଣ୍ଟି ଉଙ୍ଗାରଲା ମାଟି
କଉଳୋଳ ଦାନ୍ତକାଠି
ଦେଖ ଦେଖ ବୋଲି ଜଠାଇ ନେଉଛୁ
ଆମର ଘରର ବେଟୀ ।
ତିନ ଡାକ ଦେଲି ତିନ ଦୁଆରେ
ଗୁଟେ ଡାକ ଦେଲି ଘରେ
ରଣ ବେଲକଣ୍ଠା କୁଦଲି ଗୋଡ଼େ
ତମକୁ ଖୁଜଲି ବେଳେ ।
ଲଦଲଦ ଗଛେ ଲଦ ଭୁରଙ୍ଗା
ଗଡ଼ଗଡ଼ ବନ୍ଧେ କଇଁ
ମୁଣ୍ଡେ ହାତ ଦେଇ ନ କାନ୍ଦ ସଙ୍ଗୀ
ବୁଝାଇବା ଲୋକ ମୁହିଁ ।
ଆସିଥିଲି ଅରେ ନ ଥିଲ ଘରେ
କରଞ୍ଜ ଦାନ୍ତୁନ କରେ
ଧୀର ଧୀର କର ଅଗ ବସାଇଣ
ଛେଳର ସାହାଡ଼ା ଘରେ ।
ବାଲି ଚସମସ ବାଲିରେ ନ କର ଚାସ
ପରର ସ୍ତ୍ରୀକି ନ କର ଆଶ
ଯୁବାକାଳେ ଯିବ ନାଶ ।
ଶୁଖିଲା ଗଛରେ ବସିଲା କାଉ
ତମ ଲାଗି ଆମ ଜୀବନ ଯାଉ
ଏହା ପରପଞ୍ଚ ନୁହଁ ।
ପାଚିଲା ବାଙ୍ଗିଣ ଭୁରୁ ଭୁରୁଲି
ଅଣ୍ଟାରେ ବାନ୍ଧିଲା ତେଲି
ସମ୍ଭାର ହାଟର ବରପିଠା ଖାଇ
ଭୁଣ୍ଡରେ ଲାଗିଲା ତେଲି ।

Digitized by srujanika@gmail.com

ବଢ଼ିଲ କୋଳରୁ ଉଠିଲ ଭର
ଫୁଲ ଧରୁଥାଏ ଲବଙ୍ଗ କଢ଼ି
ଫଳ ଧରୁଥାଏ ଝଞ୍ଜ
ଉତ୍ତର କାଳରେ ପୁତ୍ରର ପାଇଲୁ
କୋଳେ ଧଇବାକୁ ଶୋଷ ।
ଆସ ଆସ ମୋର ଆସ ପଇନା
କଞ୍ଚା ଦୁଧ ଦେବ ଗୋଡ଼ ଧୁଆନା
ଶୁଇବାକୁ ଦେବ ଶେଯ
ଶୁଇଲ ଶେଯରେ ଅମୃତ ଦେବ
ନ ଖାଇ ପେଟ ପୂରିବ ।
ଆସ ଆସ ମୋର ସରଗଦୂତ
ଢନେ ଛଡ଼ା ଢନେ କଲ ପୀରତ
ଜୀବନ ନ ହେଲ ଶାନ୍ତ
ସତ ସପନରେ ପ୍ରୀତି କରିବାକୁ
ଆତୁର କଲଲ ମତ ।
ଓଡ଼ିଶା ଗଲୁ କ ଖେତରି ଗଲୁ
କସ ଆଣିଦେଲୁ ମତେ
ଧୃତ୍ତୁଷ ନ ଥାଉଣୁ ପୁଅ ପାଇଲି
କି ଦୋଷ କରିଲି ତୋତେ ।
ସୁନା ଦାନ୍ତି ଧନ ଲବଙ୍ଗ କଢ଼ି
ସୁନାରେ ଲଗିଛୁ ମୀନା
ଭୁଣ୍ଡରେ ଭୁଣ୍ଡରେ ଜଡ଼ି ନେଇଛ
ଘରେ ଡାକି ନେଲେ ପିନା ।
ମାଛ ମାରିଗଲୁ ଚେପ ଟା ବନ୍ଧେ
ଅଣ୍ଟାରେ ଲଗିଲ ଛନ
ବାଙ୍ଗିଣ ଶାଗକୁ ତେନ୍ତୁଳ ପାଣି
ଦଇବ ଭେଟାଇ ଦେଲ ।

Digitized by srujanika@gmail.com

କିଏ ସେ ମାରିବ କିଏ ସେ ଧରିବ
ବସିଥିବ କୋଳେ ଧରି
କଣ୍ଠ ଭିତରେ ପୂରାଇ ରଖିବ
ନାଗେଶ୍ୱର ଫୁଲ ପରି ।
ଆସ ଆସ ମୋର ଆମ୍ବ ପାକଲ
କ୍ଷଣେ ନ ଦେଖିଲେ ବାଇ ହତଲା
କା'ର ସଙ୍ଗେ ମାଭୁଥିବ
ତମେ ଘୁଡ଼ଗଲେ ନ ଗନ୍ଧ ନ ଖାଇ
ଝୁରି ଝୁରି ମରୁଥିବ ।
ପରର ଝିଅକୁ କି ବୋଲି ଡାକବ
ମର ଘରେ ହର ଆସ
ଘରକୁ ଆସିଲେ କରବ ହାର
କ୍ଷଣେ ନ କରବ ପର ।

— ୨ —

ଆମ ପାପଡ଼ାହାଣ୍ଡି କାନ୍ଥିର ଘର
କାନ୍ଥି ତଳେ ଚୁଆ ପାଣି
ଗୋଟାଗୋଟି କର କାଞ୍ଜି ଚୋଷ୍ଟା
କଏ ଦେବ ମନ ଜାଣି ?
କାର୍ତ୍ତିକରେ ବନ୍ଧୁ ଏତେ ବଡ଼ପଣ
ଖକୁଣ୍ଡା ବଣରେ ହେଲୁ ଜନମ
ରଜନଷ୍ଟ (ରଜୋବଷ୍ଟ) ହେଲୁ ପୂର୍ଣ୍ଣିମା ଦିନେ
ଯୋଗ କାଟି ଦେଖି ଯୋଗିମା ପୋଥି
ମିଶାଇବୁ ଗଣ୍ଡପାଣ୍ଡ
ଡଙ୍ଗରେ ବୁଣିଲୁ ସେମ୍ବି କୁମ୍ଭଣ୍ଡା
ଜଙ୍ଗରେ ବୁଣିଲୁ ଜନ
ତମେ ଏକା ଜାନ୍ତୁ ମୋ ଧନ ବେନ
ଆମେ ଏକା ରସପାନ ।

Digitized by srujanika@gmail.com

ଝତରତ ଝଙ୍ଗର ତପନ୍ତ ଘାଣ୍ଟି
ବଳକୋଳ ଦାନ୍ତ କାଠି
ଆଗେ ଦେଲ ବନ୍ଧୁ ମୁଣ୍ଡି ଭରସା
ଏବେ ଦେଲ ଶଙ୍ଖ କାଟି ।

ଖିସ୍ତ ଫରବତେ ପାରୁଆ ଖଣ୍ଡ
ଧୋବ ଲୁଗା ଦେଖି ଯାଉଛ ଭଣ୍ଡ
ତମେ ଜହ୍ନ ଆମେ ତରା
ତମେ ଆମେ କର ବାଠ ଭୁଲିଲେ
ମୁକୁତା ଗୁନ୍ଥିଲ ପରା
ତମେ ହୋଇଥିଲ ଲଲ ମନ୍ଦାର
କୋଳେ ନେଇ ମତେ ଧର ।

ଆଜ ରଇବାର ଘାଟଗୁଡ଼ିଆ
ମୁଢ଼ି ଲଡ଼ୁ ସଙ୍ଗେ ରସଗୁଡ଼ିଆ
ବାଙ୍ଗେଣ ମଣ୍ଡୁଆ ନେତ
ନ ଖାଇ ନ ପିଇ କେନ୍ଦ୍ର ଗମାତ
ଖାଇଲେ ଝୁରି ମରେତ ।

ବାରଖଣ୍ଡ ପାଲି ଚଉକେଲିଆ
ଡାବୁ ଗାଏଁ ବସେ ହାଟ
ଫୁଲ ସବୁ ଧରି ଜଗି ବସିଛୁ
ବନ୍ଧୁକୁ ନ ପାଇ ଭେଟ ।

ଏତେ ଦିନ ଥିଲ ବିମୂର ଭିତରେ
କଲନା ନଥିଲ ମତେ
ଆସି ପାଇ କର କଲନା କରିବ
ପୀରତି କରିବ ତତେ
ଟେଣ୍ଡା ଲାଠି ଝିପେ ଭୂମ ପଦର
ଖାଇବ ବଷ ମହୁର ।
ଯାଉଛ ବିଦେଶ ମୁଁ ହେବ ନରଣ
କସ ଖାଇ ମୁଇଁ ଥିବ ?

Digitized by srujanika@gmail.com

କଦଳୀ ଘଡ଼ାକୁ କମାନେ ନେଲେ
ଝୁରି ଝୁରି ମରିଯିବ ।
କୁଇଗୁଡ଼ା ଲାଗେ ଜଉକ ସର
ମାଛ ମାରିବାକୁ ଲାଗୁଛି ଡ଼ରେ
ତମେ କନ୍ୟା ଆମେ ବର ।
ଉସ ରସିଆ ପରମ ରସିଆ
ତାଠାରୁ ରସିଆ ନାହିଁ
କ୍ଷଣକେ ରସିବ ପଦରେ ରସିବ
ମନକୁ ତୋଷିବା ପାଇଁ ।
ଏଣେ ପରବତ ତେଣେ ପରବତ
ମଝି ପରବତେ ଗିରି
ପଞ୍ଚପ୍ରାଣ ମୋର କାନ୍ଦଯାଉଛି
ଧରବେ ଅଣ୍ଟାଳି କରି ।
ଅଲେଖ ପତରେ ବସେ ଭମର
ମଞ୍ଜପୁର ନାହିଁ ମାୟା ସଂସାର
ଯମର କାକୁଡ଼ି ବାଡ଼
ମରି ହଜିଗଲେ କସ ପାଇବ
ଏଇ ପିନା ଖେଳ ଘର ।
ଗୋସ୍ୱକ ଦେଖିଲେ ଲଜ ଭେଳକ
ଦୁଆର ବନ୍ଧ ସରଗି
ପାଚଲ୍ କମଳା ରେୁପା ପରି ହୋଇ
ଲାଗୁଛି ନାଭି ସରିକ ।
ଡମକ ଡମରେ ଖେଲ୍ ବାଇଁସି
ନନ ଦେଖି କରି ମତେ ହସୁଛି
ହସିଲେ କି ଲାଭ ଅଛି ?
ମୁହଁ ଦେଖିବ ବୋଇଲେ ପାନପଣ ପରି
ଦେହଟା ଝଡ଼ି ଯାଉଛି ।

Digitized by srujanika@gmail.com

ଅଠାଳେ ବୁଣିଲ ଓଟଙ୍କ ଜଡ଼ା
ଖମଣେ ଖେଦିଲ ଗଡ଼ା
ଭୂତ କୁଲ କର ଗାଉଁ ବୋଇଲେ
ତମର ଏକା ଚରଣ ବନ୍ଧା ।
ଶରଟି ଲଙ୍ଗଳ ବାଙ୍କଟି ଖୁଣ୍ଟି
କେମିତ ଗ୍ଳାଳ ଡକଗ ଖୁଣ୍ଟି
ଦଣ୍ଡି ଟପି ଆଚେ ଭେଦ
ତର ଠୁଇଁ ଛୁଡ଼ା କୁଳିଆ ଗୁଡ ନେଲ
ଚୂ-ଚୂଜୁଙ୍କରି ଖେଦ ।
ଆସିଲା ଖଳପ ତବଙ୍ଗ କାଟି
ଇନ୍ଦ୍ରାବସ୍ଥ ସଙ୍ଗ ଦ ଦେଲା ସାଠି
ଜୟପୁରେ ଫୁଲ ଲଠି
ତର କହିଲା କଥାକୁ ମନରେ ପାଞ୍ଚ
ହୃଦୟ ହେଜତ ସାଣ୍ଟି ।
ଜୟପୁର ନାହିଁ ଜୟନଗର
ଗୁଣିଆଡ଼େ ଭୁଠା ଦହି ସାଗର
ସାଗର ତଳଆ ଓଲ
ତର ବୁକୁରେ ବସି କମଳା ଖାଇବ
ଆମ ପଡ଼ାଗଡ଼ଆ ପିଲା ।
କାବେଶ ଗାଣ୍ଟକେ ପୁଠା ଲୁଡ଼ୁକା
ନ ଥିଲର ପ୍ରାଣୀ ଛୁଡା ଧଡ଼କା
ଥିବା ଭାଗ୍ୟବନ୍ତ ଅନ୍ତ
ତ ପଗ ସୁନ୍ଦରୀ ମ ଘରେ ଥିଲେ
ଦୁଇ ଗାଲେ ଚୁମା ଦ୍ୟନ୍ତ ।
ମହାଜନମାନେ କସ କରିବେ
ବାରତେର ହଳ ବେଢେ ପାଇବେ
ଛ'ସାନ୍ତ ଗଡ଼ଶା ଧାନ ପାଇବେ
ଜେଠର ବସି ଖାଇବେ

Digitized by srujanika@gmail.com

ଦୁଃଖୀ ସୁଖୀ ଲୋକେ ଗୁଞ୍ଜନ ଯେନ ଗଲେ
ନ ଲୁଟିଲାର କଷ୍ଟବେ
ପଟକାର ଲୋକ ତେଜମ ପକାଇ ଦେଲେ
କାଢବ୍ରୁକ ମାପିଦେବେ ।

—•—

ସୁନାକେ ଟାଙ୍ଗଣା ରୁପାକେ ଟାଙ୍ଗଣା
ସୁନାକେ ଜଞ୍ଜ
ସେପଟ ଫୀରନ୍ତ ଥାଞ୍ଜ ।
ଆମ ଝିପିମୁଣ୍ଡି ଧାର ବାଙ୍କଲ
ଲେଞ୍ଜଟି ତୋଲଲ ମଲ୍ଲୀ
ଛୁଡ଼ ଦେଲ ବୋଲି ନରାଶ ନ କର
ମରିଲେ ଫିନା ଗଲ ।
ବାରକୁଣର ତେଲ ପାଟିଆ
ଚଉଦ କୁଣର ପେଟ
ତମେ ଆମେ ଧନ ପାଖେ ବସିଥିଲ ପର,
ଗୁଲଫୀ ଗଡ଼ିଆ ଘର
ଅମକୁ ଚହୁଡ଼ ଭରି ଥାଇଚ
କଠର ଜୀବନ ଡର ।
ଦେଶିଆ ଲୁକକୁ ଗଣ୍ଡି ହଲଧି
ଗଡ଼ଆ ଲୁକକୁ ସାବ୍ରୁ
ଦେଶିଆ ଲୁକେ କଟି ଖାଇବେ
ଗଡ଼ଆ ଲୁକର ଡ଼ାବ୍ରୁ ।
ଚନ୍ଦନ ମାରଲା ବେଲଗଛକୁ
ଚମ୍ପାଗଛ ମର ମନ
ତମ ପର ବାବୁ ବଲେଇ ହେଉଥିଲେ
ମୁହଁ ଦେଖୁଥିଲେ ଗଲ

Digitized by srujanika@gmail.com

## ଶାଗ (ଚନ୍ଦ୍ରୀ, ଝାଡ଼ଗ୍ରାମ, ମେଦନୀପୁର)

ନଉଟିଆ ବଲେ ମୁଁ ତିନ ତିଆର
ଚଣି ବହୁଥିଲେ ଖୁଡ଼ୀ ଝିଆସ ।
**କଲମୀ** ବଲେ ମୁଁ ସବୁଠୁଁ ରଜା
ଆଣୁ ଏ ପାଣିରେ ମାରନ (ମାଗଲ) ମଜା ।
କାଠି ଛୁଁଇକରି ବାଁଟଇ ଚଡ଼ା
ତାକୁ ଖୋଜ ଥିଲ ରସୁଣ ଫଡ଼ା ।
**ସୁସନି** ବଲେ ମୁଁ ପୁଟି ଫୁଟିକା
ରାଁଧି ନ ଜାଣିଲେ ଜଳେ ଆଠିକା
ଶାଶୁ ରାଁଧେ ବହୁ ଟିକାଏ ମାଗେ
ଝଲଜ ଶାଗ ତ ସୁଆଦ ଲାଗେ ।
**ଛାଇଁଚୁ** ବଲେ ମୁଁ ଢଲର ରାଣୀ
ମତେ ଖୁଜୁଥିଲ ଘର **ଗିରାଣୀ**
ରାଁଧି ନ ଜାଣିଲେ ଲାଗଇ କଷା
ଶୁକା ମୁଁଡ ଦେଇ ଘୁଟରଇ ବସା ।
ପୁଇ ବଲେ ମୁଁ ଯେ ଜଲରେ ଥାଏ
ହାତ ଗୋଡ଼ ନାଇଁ ରୁଳକୁ ପାଏ
ରାଁଧି ନ ଜାଣିଲେ ଲାଗଇ ନାଲ
ବୁଢ଼ା ବୁଢ଼ୀଙ୍କର ପୂରିଲା କାଲ ।

## ବାଇଲ ପର୍ବ ଗୀତ (ମଞ୍ଜୁଷା)

ରୁଲେ ରୁଲେ ଗଲ୍ମ ମୃଷା ଲେ
ରୁଲେ ରୁଲେ ଗଲା ମୃଷା
ବଣ୍ଡର ମୂଷାର କେତେ ଭରସା, ମୋ ବାରମଣି
ଖୁସା ତଲେ କଲା ବସା, ମୋ ବାରମଣି ।୧।

---

ସୁସନ—ସୁନୁସୁନିଆ, କଲମୀ—କଲମ୍ବ, ଗିରାଣୀ—ଘରଣୀ
ଶୁକା—ଶୁଖୁଆ ।

Digitized by srujanika@gmail.com

ଦେଉଳ ଉପରେ ଇଟା ଲୋ
ଦେଉଳ ଉପରେ ଇଟା
ଧୀରି ଧୀରି କରି କବାଟ ଫିଟା, ମୋ ସାରମଣି
ଆଣିଛ ଆଉଷା ପିଠା, ମୋ ସାରମଣି । ୨ ।

ଦେଉଳ ଉପରେ ଘାସ ଲୋ
ଦେଉଳ ଉପରେ ଘାସ
ସୀତା ଠାକୁରାଣୀ ଯୁବା ବୟସ, ମୋ ସାରମଣି
ରାମ ଗଲେ ବନବାସ, ମୋ ସାରମଣି । ୩ ।

କାଉକୁ କ ବୋଲି କଳା ଲୋ
କାଉକୁ କ ବୋଲି କଳା
ସହି ନ ପାରିଲି ଘଇତା ଜାଳା, ମୋ ସାରମଣି
ଢଅରକୁ ଧରି ପଳା, ମୋ ସାରମଣି । ୪ ।

ଛାଟିଆରେ ଦେଲି ପାନ ଲୋ
ଛାଟିଆରେ ଦେଲି ପାନ
ଆମ ସାଆନ୍ତର କେଡ଼େ ଗୁମାନ, ମୋ ସାରମଣି
ଦାସୀ ଘରେ ଗଲା ଧନ, ମୋ ସାରମଣି । ୫ ।

ବାଟରେ ଶୋଇଛୁ ଗୁଇ ଲୋ
ବାଟରେ ଶୋଇଛୁ ଗୁଇ
କେତେ ଉଠାଇଲେ ଉଠିବ ନାହିଁ, ମୋ ସାରମଣି
ମରିବ ଗରଳ ଖାଇ । ୬ ।

ସାପ ଗଲା ଶୋଇବାକୁ ଲୋ
ସାପ ଗଲା ଶୋଇବାକୁ
ଈଶ୍ୱର ପାଞ୍ଚଣ ଗଲେ ବନକୁ, ମୋ ସାରମଣି
କନ୍ଦମୂଳ ଖାଇବାକୁ, ମୋ ସାରମଣି । ୭ ।

Digitized by srujanika@gmail.com

—୨—

ଛାଟିଆ ପାଖରେ ଗିନା ଦେ, ଟାଟିଆ ପାଖରେ ଗିନା
ଗିନା ଭାଙ୍ଗି ନୋ ଛୋଇ ଦେବ, ମୋ ବାରମଣି
ମୋ ବୋଲ ମାନଲେ ପିନା । ୮ ।

ବାଟେ ବାଟେ ଯାଉଥିଲ ଲୋ
ବାଟେ ବାଟେ ଯାଉଥିଲ
ପର ପୁରୁଷକୁ ବାଟେ ଭେଟିଲ, ମୋ ବାରମଣି
କଥା ଗୃଶପଦ ହେଲି ମୋ ବାରମଣି । ୯ ।

ସୀତା ଫଳ ଗଛେ ମଲା ଲୋ
ସୀତା ଫଳ ଗଛେ ମଲା
ସୀତାକୁ ରାବଣ ହେଇ ନେଲା, ମୋ ବାରମଣି
କେତେ କାଳ ଭୋଗ କଲା ମୋ ବାରମଣି । ୧୦ ।

—୩—

କଖାରୁ ଫୁଲ ମୋର ଅତି ହଳଦିଆ ଗୋ
କଖାରୁ ଫୁଲ ମୋର ଅତି ହଳଦିଆ
ନବଳ ଭାଇକ ନ ଦିଆ ଯେ
ନବଳ ଭାଇକ ନଦିଆ
ନବଳ ଭଇର ମୋର ନାଟି ଘୁଡ଼ା
ଠାକୁରଣୀ ଚଢ଼ିବା ପାଟଘୁଡ଼ା ଗୋ, ରଇଲ ଯେ । ୧ ।

ବାଘ ବଳଦ ମୁହିଁ ବାନ୍ଧିଲି ହଳେ
ବାଘ ବଳଦ ମୁହିଁ ବାନ୍ଧିଲି ହଳେ
ଚୃଷ କଲି ମନ୍ଦିରର ମାଳେ ଗୋ; ରୂଷଣୀ ଯେ
ଚୃଷ କଲି ମନ୍ଦିରର ମାଳେ
ମନ୍ଦିରର ମାଳରେ ମୋ କଣ ପାଳକ ?
ଡାଚଅଛୁ କାନାସୁାର ଧାନ

Digitized by srujanika@gmail.com

ଧାନକୁ ମୋ କଏ ସେ ଜଗୁଆ, ଗଇଲ ଯେ
ଧାନକୁ ମୋ କଏ ସେ ଜଗୁଆ ?
ସାଧବର ସାନ ପୋ ଜଗୁଆ
ଖାଇଗଲେ ରଣ ବାଲଗୁଆ, ଗଇଲ ଯେ

## ଭାରଯା ମଲା ବୋଲି (ବ୍ୟଙ୍ଗାତ୍ମକ ଗୀତ, ମଞ୍ଜୁଷା)

ଭାରଯା ମଲା ବୋଲି ଗୃହସ୍ଥ କାନ୍ଦେ
କେଶ ମୁକୁଳା ତାର ବାଳ ନ ବାନ୍ଧେ
ଲୋ ସୁନ୍ଦରୀ ନାରୀ
କେନ୍ଦୁ ଲୋ କାଠ ପ୍ରାୟେ ଦେହ ତୋହର ।

ଝାମର କେଶ ତୋର ମୂର୍ଦ୍ଧକୁ ଶୋଭା
ବାସି ଶିଉଳ ଫୁଲ ମାରଥାଉ ଗନ୍ଧ
ଲୋ ସୁନ୍ଦରୀ ନାରୀ
କେନ୍ଦୁ ଲୋ କାଠ ପ୍ରାୟୁ ଦେହ ତୋହର ।

ଢ ପଖା ଚୂଲି ନାସା ଉଲ୍ଲୁକ ଆଖି
ପୋଡା କାଠ କି ଲୁଟେ ନଚା ଗୋଡ଼ ଦେଖି
ଲୋ ସୁନ୍ଦରୀ ନାରୀ
କେନ୍ଦୁ ଲୋ କାଠ ପ୍ରାୟୁ ଦେହ ତୋହର ।

ଗୋହିର ଗୋଡ଼କୁ ଲୋ ପିତ୍ତଳ ଖଡୁ
ତାହା ତ ଦେଖି ମୋର ହୃଦୟ ପୋଡୁ
ଲୋ ସୁନ୍ଦରୀ ନାରୀ
କେନ୍ଦୁ ଲୋ କାଠ ପ୍ରାୟେ ଦେହ ତୋହର ।

ମଲୁ ନାହିଁ କି ସଖୀ କି ପାପ କଲୁ
ଭାତ ଖାଇ ଭୁ ପେଜ ଗଡ଼ାଇ ଥିଲୁ
ଲୋ ସୁନ୍ଦରୀ ନାରୀ
କେନ୍ଦୁ କାଠ ଲୋ ପ୍ରାୟେ ଦେହ ତୋହର ।

Digitized by srujanika@gmail.com

## ସେ ପାକ୍ଷୀ କାହିଁ (କାନ୍ଥି, ମେଦିନୀପୁର) ?

ଢେନ୍ମୁକ ଗଛେ ବସା
ବୋଦ୍ଧୁ ଭାଙ୍ଗିଲ କଂସା
ସେ ବୋଦ୍ଧୁ କାହିଁ ?
ଗୃଜଲ ଧୋଇତେ ଯାଇ ।
ସେ ଗୃଜଲ କାହିଁ ?
ସାପ ଦେଲା ଖାଇ ।
ସେ ସାପ କାହିଁ ?
ବଣର ଭିତରେ ଯାଇ ।
ସେ ବଣ କାହିଁ ?
ଧୋବା କାଟି ନେଇ ।
ସେ ଧୋବା କାହିଁ ?
କାପଡ଼ କାଚତେ ଯାଇ ।
ସେ କାପଡ଼ କାହିଁ ?
ରଜା ପିନ୍ଧି ଯାଇ ।
ସେ ରଜା କାହିଁ ?
ପାକ୍ଷୀ ମାରତେ ଯାଇ ।
ସେ ପାକ୍ଷୀ କାହିଁ ?
ଆକାଶେ ଉଡ଼ ଯାଇ ।

## ଚହ୍ନଠ କନଆଁ କାଇଁ (କାନ୍ଥି, ମେଦିନୀପୁର) ?

ଝୁଁରେ ଝୁଁରେ ଚୂଟିଆ ମୂଷା,
ନାର ବୁଢ଼ୀ କେ କପାଳ ପୁଷା
ଢେର ବୁଢ଼ୀ କେ ଅଟକାଇ
ଉତ୍ତର ସାଇ କେ ଯାଇତେ ନାଇଁ
ଉତ୍ତର ସାଇରେ କୁଁଚ କବାଟ
କାଳୀ ଗୁସ ଦୁହେଁ ଷୋଳଟି ବାଟ ।

Digitized by srujanika@gmail.com

ଗୃସ୍ମ ପିନ୍ଧୁଛି ଜୁଗଣି-ପାଟ
କାଳୀ ପିନ୍ଧୁଛି ସରୁ ଅଳନ୍ତା
ସଜପୁତ ଯେ ତଳ ପଡ଼ନ୍ତା
ଏ ପଟେ ଯାଉଛି ଦୁଇଟା ଲୋକ
ଓହଳ ଚକଳ ହୋଇ
ସେ ପଟେ ଯାଉଛି ଦୁଇଟା ଲୋକ
ଓହଳ ବକଳ ହୋଇ
        ମାଣିକ ଦୀପ ଦେଇ
କଳସ ବାଡ଼ରେ ଲଗିଲା ପୋକ
ଏ ପଟେ ଯାଉଛି ମହତ ଲୋକ
ଆରେ ମହତ, ଦଣ୍ଡେ ରହ ତ
ବଣି ଆଗର ଯାଇ କହତ
ବଣି ଶୁଣି ଆଇଲା ଧାଇଁ
        ଚହଟ କନିଆଁ କାଇଁ ?
                ପୁଅ କାଇଁ ?
                ନା ପେଟର
ନଳଜ ମାଇପ କଳ କରୁଛି ଦାମୋଦରପୁର ହାଟର ।

## ଯେ ଦେବ ଜୁଡ଼ାରେ ହାତ (ମେଦିନୀପୁର)

ଯୁଡ଼ାରେ ଇର ବର
ଯୁଡ଼ାରେ ଅଛି ଛ'ମାଣ ଧର
ଯୁଡ଼ାରେ ଅଶ (ଅଶ୍ୱ) ପଚଶେ, ଗଜ ପଚଶେ
ଯେତ କଜଡ଼ରୁ କାହାଣେ ପଚଶେ
ବଣି-ହଲଧାରୁ ବଚଶେ ପଚଶେ
ତେବେ ତ ଜୁଡ଼ା ଚହଟ ଦଶେ
ଯେ ଦେବ ଜୁଡ଼ାରେ ହାତ
ସେ ଦେବ ଛ' ମାସର ଭାତ ।

Digitized by srujanika@gmail.com

## ଯାହାର କୋଳେ ପତ ନାହିଁ (କାନ୍ଥି, ମେଦିନୀପୁର)

ବାଗାନକୁ ଶୋଭା ଦେଲେ
ଫୁଲ ଯେ ଫୁଟିଲେ ଗୋ
ଫୁଲକୁ ଯେ ଶୋଭାଦେଲେ
ଭ୍ରମର ଆଇଲେ ଗୋ
ପୋଖରୀ କ ଶୋଭାଦେଲେ ପଦ୍ମ ଯେ ଫୁଟିଲେ ଗୋ
ଦେଉଳକୁ ଶୋଭାଦେଲେ ଦେବତା ରହିଲେ ଗୋ
ଗାଁକୁ ଯେ ଶୋଭାଦେଲେ ଜୁଆର ଆଇଲେ ଗୋ
ପୃଥିବୀକୁ ଶୋଭାଦେଲେ ରଜା ଯେ ରହିଲେ ଗୋ
ନାରୀକୁ ଯେ ଶୋଭାଦେଲେ ଯୁବତୀ ହୋଇଲେ ଗୋ
ଯୁବତୀକୁ ଶୋଭାଦେଲେ ପତି ଯେ ରହିଲେ ଗୋ
ଆକାଶରେ ଚନ୍ଦ୍ରନାହିଁ କି କରିବେ ତାରା ଗୋ
ଯାହାର କୋଳେ ପତିନାହିଁ ଜୀଅନ୍ତା ସେ ମରା ଗୋ ।

## ବୋହୂମାନଙ୍କର ନାହିଁ ଦୋଷ (କାନ୍ଥି, ମେଦିନୀପୁର)

ଜାଲର କଥା ଜାଲଚ ଜଣେ ପଡ଼େ ମନରେ
ଆଗେ ଶାଶୁଡ଼ି ବୋହୂଡ଼ି ଝଗଡ଼ା କରେ ଡୁବି ମରିତେ ଯାୟୁ
ଡ଼ଙ୍ଗର ପୁଷ୍କର ଯାଇଯୁ ବୁଢ଼ୀ ସାଲୁକ୍ ଖୁଲେ ଖାୟୁ
ସାଲୁକ୍ ଖୁଲେ ଖାୟୁ ବୁଢ଼ୀ ତାର ଦାନ୍ତ ଲାଗେ କାଶ
ଘଇ ଦୁଆରକୁ ଯାଇ ବୁଢ଼ୀ କାନ୍ଦେ ରସ ରସ ।
ବୋହୂମାନଙ୍କର ସବୁ ଅନ୍ନ ବ୍ୟଞ୍ଜନ ସାର ସାର
ବୁଢ଼ୀର କନା ଭଙ୍ଗା ତଥୁଣ ପଖାଳ ଗୋଟା ଘର ।
ବହୂମାନଙ୍କର ଖଟପଲଙ୍କ ତିନଟା ବାଳିଶ ପଡ଼େ
ବୁଢ଼ୀର କନା ଛୁଣ୍ଡା ଖେନ୍ତୁଡ଼ି ଡିଙ୍କିଶାଳର ଗାଡ଼େ ।
ଏକ ପୁଅକେ ବେହେ କରିଲ ଯୁଜାମୁଠା (ଗ୍ରାମର ନାଁ)ର କନ୍ୟା
ଏକ ପୁଅକେ ବେହେ କରିଲ ଚଣ୍ଡୀ ଗଡ଼ର ଧାରେ
ହାଡ଼ବୋଲେ ଗୁଛଠା ହଲ ହଇ ପୁରେର ଘାଡ଼େ

Digitized by srujanika@gmail.com

ଏକ ପୁଅକେ ବେହେ କରିଲି ହାତେ ହଲମ ଜାନ୍ତୁ
ସେ ଗଣ୍ଡର ଝିକନା କବାଟପଣ
ଏକ ପୁଅକେ ବେହେ କରିଲି ଟହଲ ଦାସର ଝି
ହଳଦ ପାଣି ରଖିଦେଇଛି ଡାଲ୍ ରହିଛି ।
ଶିବରାମଦାସ କହେ ଶୁଣରେ ପୋଇଲା ହୁରୁ (ଜଣଙ୍କର ନାମ)
ବୋହୁମାନଙ୍କର ନାହିଁ ଦୋଗ୍ ବୁଡ଼ୀ ନାଚରଗୁରୁ ।

## ପଇସା କ୍ଷୁଦ୍ର ଧନ (କାନ୍ଥି, ମେଦିନୀପୁର)

ପଇସା କ୍ଷୁଦ୍ରଧନ, ହରଇ ସୁବର୍ଣ୍ଣମନ
ପଇସା କ୍ଷୁଦ୍ର ଜାତି, କିଣାଇ ଗଜହସ୍ତୀ
ପଇସା କ୍ଷୁଦ୍ରଧନ, ଦେଖାଏ ନବଦ୍ୱୀପ ବୃନ୍ଦାବନ
ପଇସା କ୍ଷୁଦ୍ରମତି, ବ୍ରହ୍ମାର ସୃଷ୍ଟିକରେ ଗତି ଆରମୁକ୍ତି ।

## କାନ୍ତକୁ କହିବୁ ବୁଝାଇରେ (କାନ୍ଥି, ମେଦିନୀପୁର)

କାନ୍ତକୁ କହିବୁ ବୁଝାଇରେ କୋଇଲି ।
କେଯିବ କାନ୍ତର ଦେଶ, ମୁଁ ଦେବି ତାକୁ ଉଦ୍ଦେଶ
ନୃପାଶକୁହେ ମାଗି ନେବ ଶୀତ ଋତୁମାସ
ମାଣ ମାପି ପୁଷ୍କରିଣୀରେ ବୁଣିଲି ଧନଆଁ
ଡାଳ ଭାଙ୍ଗି ପୁଷ୍ପଦେଲେ ଛଦେଶୀ ବଣିଆ
ରେ କୋଇଲି,
କାନ୍ତକୁ କହିବୁ ବୁଝାଇ ।
ଫୁଟିଅଛି ଧନ୍ଦାଜାଣ୍ଡ ଏ ଫୁଲ ମରୁଆ
କାହିଁ ଗୁଡ଼ ରହିଲି ମୋ ଲୋଟଣି ପାରଆ
ରେ କୋଇଲି,
କାନ୍ତକୁ କହିବୁ ବୁଝାଇ ।

---

ଖେନ୍ଦୁଡ଼ି—କନ୍ଥା, ଜାନ୍ତୁ—ଗୁଆକାଟି; ପଣା—ପଣ ।

Digitized by srujanika@gmail.com

ଉଡ଼ିଗଲା ଶଙ୍ଖଚିଲ ପଡ଼ିଗଲା ଛାଇ
ଏକା କାନ୍ତ ଲାଗି ମୁଁ ଛାଡ଼ିଲି ବାପ ଭାଇ
ରେ କୋଇଲି,
କାନ୍ତକୁ କହିବୁ ବୁଝାଇ ।
ଉଡ଼ିଗଲେ ସାରି ଶୁଆ ବସିଲେ ବାଉଁଶେ
ମୁଖପାଣି ମୁଖେ ମଲା ଏ ଯୁବା ବୟସେ
ରେ କୋଇଲି,
କାନ୍ତକୁ କହିବୁ ବୁଝାଇ ।
ଆମ୍ବ ଜାମୁ ବଉଳିଲା ପିଆଳ ପଣସ
ମୋ ଯଉବନ ବଉଳିଲା କାନ୍ତ ନାହିଁ ପ ଶ
ରେ କୋଇଲି,
କାନ୍ତକୁ କହିବୁ ବୁଝାଇ ।
ଉଠାଇଲା କଳାମେଘ ବରଷିଲା ପାଣି
ଏଛପଦ ବାନ୍ଧିଥିଲେ ରାଧା ଠାକୁରାଣୀ ।
ରେ କୋଇଲି
କାନ୍ତକୁ କହିବୁ ବୁଝାଇ ।

## ବନ୍ଧୁ ଚାଲି ନ ଜାଣଇ ଗୋ (ଘାଟାଲ୍, ମେଦିନୀପୁର)

ବନ୍ଧୁ ଚାଲି ନ ଜାଣଇ ଗୋ
ପାଦ ପଡ଼ୁଥାଇ ବଙ୍କା
ଯୋଉବନ ବନ୍ଧୁ ସଳଖି ଚାଲିବ
ଘରେ ପଡ଼ିଯିବ ଡ଼କା
ଯୋଉବନ ବନ୍ଧୁ ବାପ ଘର ଠାଉଁ
ଶଶୁର ଘର ଅଇଲା
ଆପଣାର ପତି ସଙ୍ଗେ ସଙ୍ଗ ନ କରିଣ
ପରକୁ ସେ ରସାଇଲା
ବନ୍ଧୁ ଗୋଟିଏ ମୁଁ କରି ଆଣି ଅଛୁ
**କାଉନ୍ଦା** ଘରର ଝିଅ

Digitized by srujanika@gmail.com

ନ ହୁଏ ଲମ୍ପଟୀ ବଞ୍ଚୀ କରପଟୀ
ଜନଆଡ଼େ ଜନପ୍ରିୟ
ବୋଦ୍ଧ ବାବୁଆଙ୍କ ଗଡ଼ ଧ୍ୱଜ-ଝଣ୍ଡୀ
ଘରଣି ନଣନ୍ଦ ଜାଲା ନ ସନ୍ତାଣ
ହେଉଛନ୍ତି ଯନ୍ତ୍ରଣା ଓଳ
ଦୂର ବନ୍ଧୁ ଯେଉଁଦିନ ଏକତ୍ର ହୋଇବେ
ଚତୁର୍ବର୍ଗ ଫଳ ପାଇ
ରଘୁ ଅରକ୍ଷିତ ଭରସା କରିଛନ୍ତି
ବୋଦ୍ଧୁକୁ ଭେଟିବା ପାଇଁ ।

## ମଣ୍ଡୁକୀ ମାଡ଼ୁଛି ସୁବର୍ଣ୍ଣ କଠାଉ (ବଡ଼ମ୍ବା)

ମଣ୍ଡୁକୀ ମାଡ଼ୁଛି ସୁବର୍ଣ୍ଣ କଠାଉ
ଶୃଗାଳ ହୋଇଛି ରଜା
କଲକଟସ୍ ଯେ କରଣ ହୋଇଛି
ହସ୍ତୀକ କଲେ ପରଜା ।
ଗଧ ଖାଉଅଛି ପାଚିଲା କଦଳୀ
କୁକ୍କୁର ଖାଉଛି ପାନ
ଭୂଆ ବଗଡ଼ ଯେ ବଇଷମ ହୋଇ
ସଭାରେ କହୁଛି ଜ୍ଞାନ ।
ଏଣ୍ଡୁଅ କାନରେ ସୁନା ମଲ୍ଲିକଡ଼ି
ନେଉଳ ନାକରେ ଗୁଣା
ମୂଷା ଶୋଇଅଛି ରତ୍ନ ପଲଙ୍କରେ
ମଞ୍ଜାର ଧରେ ବଞ୍ଚଣା ।
ପର୍ବତ ଶିଖରେ ସେଉଳ ଆଳାପ
ସମୁଦ୍ରେ ଚରଇ ଗାଈ
ବାର ବରଷର ଝିଅ ଗର୍ଭବାସ
ଗୁରସ୍ତ ତାହାର ନାହିଁ ।

Digitized by srujanika@gmail.com

ଭୂଠ ପଥରକୁ ଜର କରିଅଛି
ପାଣିକି କଲା ପିଆସ
ଅଗ୍ନି ଦେବତାକୁ ଶୀତ କରୁଅଛି
ବାବା କରେ ଶୁଣ ପଣ୍ଡୁସ୍ୱଜା ଶିଷ ।
ନବଦ୍ୱାରେ ନବ ଗଳଆ ପଡ଼ୁଛି
ତନ୍ତ୍ରିଁ ନ ରହିଲା ମାର
ସାଧୁଜନମାନେ ଧାନ ବୁଣିଗଲେ
ବାବାକରେ ବୁଡ଼ାଇ ଅଇଲେ ମୂଳ ।

## ବଗ ଧରିଥିଲା ଛତା (କଟଜ)

ଢିଙ୍କିକି କଲାଣି ଆମ୍ବଗଳା ଝାଡ଼ା
ଗୁଲୁଣିକି କଲା ଜର
ଚୋରେଇ କୁଣ୍ଡେଇ ବାପଘର ଗଲେ
ଘୁଷୁଣି ଜଗିଛି ଘର ।
ବେଙ୍ଗ ମାଡ଼ିଅଛି ଝୁମ୍ପୁକ କଠାଉ
ନେଉଳ ନାକରେ ଗୁଣା
ମୂଷା ଶୋଇଅଛି ରତ୍ନ ପଲଙ୍କରେ
ଝଟଲିଇ ଝଟେଞ୍ଜ ଝଞ୍ଜଣା ।
ପିମ୍ପୁଡ଼ି ପୁଅ' ର ବଞ୍ଚ ହୋଇଗଲା
ଗଗନେ ଉଡ଼ିଲା ଧୂଳି
ବିଲରେ କଙ୍କଡ଼ା ମୃଦଙ୍ଗ ଝିଟିଲେ
ବେଙ୍ଗ ଦେଲେ ହୁଳହୁଳି ।
ବଳଦ ବାଛୁଡ଼ା ଘର ଛୁଇଗଲେ
ଦୂବଘାସ ହେଲା ବଡ଼ା
ଦଣ୍ଡିକର ମାଛ ଟେଣ୍ଟି ଭଡ଼ିଥିଲା
ବଗ ଧରିଥିଲା ଛତା । (ମଜଦା)

Digitized by srujanika@gmail.com

# ଆପେ ରହିଲ ବନ୍ଧା (ଗଞ୍ଜାମ)

(ଚଇତ୍ର ମୂଳେଁ ଜୁଆଖେଳ ଗୀତ)

ସିଦ୍ଧ ସୁବନ୍ୟରେ ମଣ୍ଡପ
ଚହୁଁ ଚନ୍ଦନ କାଠରେ କୋଠି
ରାଧା ଦାମୋଦର ଯୁଗ ଖେଳନ୍ତି
ହାତେ କଉଡ଼ ମୁଠି
ଏକ ମୁଠି ଯୁଗ ଖେଳିଲେ
ରାଧା ହୋଇଲେ ଧନ୍ଦା
ହାରିଲ ହାରିଲ ରାଧା ହେ
ବେକହାର ରଖି ହେ ବନ୍ଧା ।
ସିଦ୍ଧ ସୁବନ୍ୟରେ ମଣ୍ଡପ
ଚହୁଁ ଚନ୍ଦନ କାଠରେ କୋଠି
ରାଧା ଦାମୋଦର ଯୁଗ ଖେଳନ୍ତି
ହାତେ କଉଡ଼ି ମୁଠି
ଦୁଇ ମୁଠି ଯୁଗ ଖେଳିଲେ
କୃଷ୍ଣ ହୋଇଲେ ଧନ୍ଦା
ହାରିଲ ହାରିଲ ରାଧା ହେ
ହାତ ମୁଦ୍ର ରଖି ହେ ବନ୍ଧା ।
ସିଦ୍ଧ ସୁବନ୍ୟରେ ମଣ୍ଡପ
ଚହୁଁ ଚନ୍ଦନ କାଠ କୋଠି
ରାଧା ଦାମୋଦର ଯୁଗ ଖେଳନ୍ତି
ହାତେ କଅଡ଼ ମୁଠି
ତିନ ମୁଠି ଯୁଗ ଖେଳିଲେ
କୃଷ୍ଣ ହୋଇଲେ ଧନ୍ଦା
ହାରିଲ ହାରିଲ ରାଧା ହେ
କଙ୍କଣ ରଖି ହେ ବନ୍ଧା ।

Digitized by srujanika@gmail.com

ସିଦ୍ଧ ସୁବର୍ଣ୍ଣରେ ମଣ୍ଡପ
ଚନ୍ଦ୍ର ଚନ୍ଦନ କାଠ କୋଠି
ରାଧା ଦାମୋଦର ଯୁଗ ଖେଳନ୍ତି
ହାତେ କଉଡ଼ି ମୁଠି
ଚାରି ମୁଠି ଯୁଗ ଖେଳ•ଲ
କୃଷ୍ଣ ହୋଇଲେ ଧନ୍ଦା
ହାରିଲ ହାରିଲ ରାଧା ହେ
କୁଣ୍ଡଳ ରଖ ହେ ବନ୍ଧା ।
ସିଦ୍ଧ ସୁବର୍ଣ୍ଣରେ ମଣ୍ଡପ
ଚନ୍ଦ୍ରି ଚନ୍ଦନ କାଠ କୋଠି
ରାଧା ଦାମୋଦର ଯୁଗ ଖେଳନ୍ତି
ହାତେ କଉଡ଼ି ମୁଠି
ପାଞ୍ଚ ମୁଠି ଯୁଗ ଖେଳଲେ
କୃଷ୍ଣ•ହୋଇଲେ ଧନ୍ଦା
ହାରିଲ ହାରିଲ ରାଧା ହେ
ପଗଡ଼ି ରଖ ମୋ ବନ୍ଧା ।
ସିଦ୍ଧ ସୁବର୍ଣ୍ଣରେ ମଣ୍ଡପ
ଚନ୍ଦ୍ରି ଚନ୍ଦନ କାଠର କୋଠି
ରାଧା ଦାମୋଦର ଯୁଗ ଖେଳନ୍ତି
ହାତେ କଉଡ଼ି ମୁଠି
ଛ' ମୁଠି ଯୁଗ ଖେଳଲେ
କୃଷ୍ଣ ହୋଇଲେ ଧନ୍ଦା
ହାରିଲ ହାରିଲ ରାଧା ହେ
ବଇଁଶୀ ରଖିଲ ବନ୍ଧା ।
ସିଦ୍ଧ ସୁବର୍ଣ୍ଣରେ ମଣ୍ଡପ
ଚନ୍ଦନ କାଠରେ କୋଠି
ରାଧା ଦାମୋଦର ଯୁଗ ଖେଳନ୍ତି
ହାତେ କଉଡ଼ି ମୁଠି

Digitized by srujanika@gmail.com

ହାତ ମୁଠି ଯୁଗ ଖେଳଲେ
କଷ୍ଟ ହୋଇଲେ ଧନ୍ଦା
ହାରିଲା ହାରିଲି ରାଧା ହେ
ଅପେ ରହିଲ ବନ୍ଧା ।

## ଚଉରାମୂଳେ ଗୁଆ ଉଠାଇବା ଗୀତ (ଗଞ୍ଜାମ)

ଶ୍ରୀକୃଷ୍ଣ ନନ୍ଦର କାଳରେ ଯଶୋଦା ଡାକନ୍ତି
ଜନକାପନ୍ତ ମୋ ଉଠ ହେ
ଖେଳୁଆର ବାବୁ ଖେଳ କରିଗଲେ
ରାଧା ଦାମୋଦର ଉଠ ହେ
ଖଞ୍ଜନନୟନ ଉଠ ହେ
ତିଳ ପୁଷ୍ପ ନାସା ଟେକ କନ୍ଧ ଭାଷା
ରାଧା ଦାମୋଦର ଉଠ ହେ
ବନ ବନମାଳୀ ମାରକରତ ଲି
ରାଧା ଦାମୋଦର ଉଠ ହେ
ଉଠ ଉଠ କାହ୍ନୁ କେଶବ ହରି
ଉଠ ଗୋପୀନାଥ ଗଜ ମୁରାରି
ଗୋଗୋଷ୍ଠକୁ ପରା ନେବ କ ଛୁରି
ବାଛୁରି ଚରେଇ ଅଥିର ହେଲେ
ଖୀର ନ ପାଇ ଗମ୍ଭୀର ଗଲେ
ପୁତ୍ରପାକ ସବୁ ଅନ୍ଧାର ପୁରି
ଶୂନ୍ୟ ମଣ୍ଡଳକୁ ଡାକନ୍ତି ହରି ।

## ବେଢ଼ାବୁଲା (ଗଞ୍ଜାମ)

ମାଗୋ ତୁଳସୀ ଦେବୀ
ଅଟୁ ତୁ ଶ୍ରୀକୃଷ୍ଣ ପ୍ରାଣବଲ୍ଲଭୀ
ହାତେ ନାଟ, ଖାନ୍ଦେ (କାନ୍ଧେ) ପାଟ
ଶିରିକୃଷ୍ଣ ବୁଲନ୍ତି ବାଟ

Digitized by srujanika@gmail.com

ଦୁର୍ଗା ଗୋ,
ଖୋଜ ଆଣି ଦଅ କୃଷ୍ଣଚନ୍ଦ୍ର ରାପ୍ପ
ସୁବର୍ଣ୍ଣ ଥାଳୀରେ ଆଳତି ବନ୍ଦାଅ
ପୂଜ ଏ ନଡ଼ୁ
ମହାପ୍ରଭୁଙ୍କର ପାହାଡ଼ା ପଡ଼ୁ
ପୂଜ ଏ ବାଟ
ମହାପ୍ରଭୁଙ୍କର ଫିଟୁ କବାଟ
ଧନ ଦଅ, ଜନ ଦଅ
ସରଗ ଦୁଆରକୁ ବାଟ କଢ଼ାଅ ।
ସୁରପାଳ ଅର୍ଘ୍ୟ କର
ପୂଅ ଘଇଚାରେ ଦନ ସାର ।

## ବନ୍ଦାପନା

ଧୂପ ଆଳତି
ଶ୍ରୀକୃଷ୍ଣଙ୍କୁ ବନ୍ଦାପନା କରନ୍ତି
ଧୂପ ଯେ ସଜାଇ ନୈବେଦ୍ୟ ନେଇ
ବାଇଶ ପାହାଚରେ କରିବା ଘର
ତୁଳସୀ ମାଗୋ ଦଅ ସୁମତି
ବୈକୁଣ୍ଠ କର ପ୍ରାପତି ।

## ବୁଢ଼ୀ ଖଲୁକାଣୀ (ଢେଙ୍କାନାଳ)

ହାଣ୍ଡି ଗୋଡ଼େ ମଞ୍ଜୁ ଆଣ୍ଡି
ରଜାଘର ପୁଅ ଭ୍ରମର ଜାତି
ବୁଢ଼ୀ ଖଲୁକାଣୀ, ଝିଅଟି ପାଇବ ସତି ।
ଗାଈକି ମାଇଲି ଗୁଟେ
ଗାଈ ପଳାଇଲା ରଗଡ଼ ବାଟେ
ବୁଢ଼ୀ ଖଲୁକାଣୀ, ମାମୁଁ ଘର କେଉଁ ବାଟେ ?

Digitized by srujanika@gmail.com

ନନ୍ଦପାଣି ଚୋଳଆଣି
କସ୍ତୀର ଆଇଲେ ସାତ ଭଉଣୀ
ବୁଢ଼ୀ ଘୁଲୁକାଣୀ, ବାହୁନେବ ପାଇକାଣୀ ।

ଙ୍ଖ ମ୍ପ କ କାହାଳୀ କେତେ
ମୁଣ୍ଡ ବଥେଇଲେ କହିବୁ ମତେ
ବୁଢ଼ୀ ଘୁଲୁକାଣୀ, ଓଷଦ ଲେପିବ ତୋତେ ।

ରୂପା ମୁଦ ଦାଣ୍ଡ ଦାଉ
ସେଇ ରୂପା ମୁଦ ବଣିଆଁ ନେଉ
ବୁଢ଼ୀ ଘୁଲୁକାଣୀ, କୋଠାଘର ତୋଳି ଦେଉ ।

## ଘୁଲୁକୁଣୀ ଓଷା (ଭେଡ଼ା, କଟକ)

ଛୁ ଘୁଲୁକୁଣୀ ଛୁଇ ଲେ
ଶୁଖୁଆ ଖାଇଲୁ କଇ ଲେ ।
ଘୁଲୁକୁଣୀ ପୁଅ ମଲ୍ଲରେ ସାଆଁଳ ମୁଠା ତଳେ
ସାଆଁଳ ମୁଠା ଭାଙ୍ଗି ପଇଲା ଘୁଲୁକୁଣୀ ଉପରେ !
କଏ କଇଲା ବାରଣ କାଲ୍, ଘଣ୍ଟରେ ସପନ ଦେଖିଲି ।
ଢଇ ଗୋଡ଼ ଦେଇ ଅଳତା, ରଙ୍ଗ ଧାନ କଳେଇ
ଆମ ଘୁଲୁକୁଣୀ ପୁଅ ବେଇଛୁ କଏ ନେବ ଖେଳେଇ ?
ବାଟରେ ଢପଗା ଚୁଲି
ଚୁଲି ଘୃଣପାଖ ଛ'ଟା ଗୁଲି, ଦେବତା ଅଇଲେ ଗଳି ।
ପାନ ମଚର
ଆମ ଘୁଲୁକୁଣୀ ଖେଳ ଖେଳନ୍ତୁ ନଶା ଘଣ୍ଟର ।
ଆମ ଘୁଲୁକୁଣୀ ହାତରେ ମୁଦ,
ତମ ଘୁଲୁକୁଣୀ ଅସଲ ବେଧୀ ।
ଆମ ଘୁଲୁକୁଣୀ ନାଇଛୁ ଚୂଡ଼ି
ତୁମ ଘୁଲୁକୁଣୀ ଖାଏ ମୁଢ଼ି ।

Digitized by srujanika@gmail.com

ଗୁଡ଼ିଆ ଘର ଚନ୍ଦ୍ର,
ଆମ ଭାଲୁକୁଣୀ ଚନ୍ଦନ ଝକ୍‌କଣ ତମ ଭାଲୁକୁଣୀ ଫାଟ ।
ଗଡ଼ ଗଡ଼ ନେମ୍ବ ବେଲ
ତୁମ ଭାଲୁକୁଣୀ ବଇଠାରେ ନାଇଁ ଖେଳ ।

## ଭାଲୁକୁଣୀ ଓଷା ଗୀତ

ଜଷ୍ଣୁନା ଧାନ ଗୋ ଫାଳ ...ଲା
ସଂଟେଇ ଦ'ଅ ଗୋ ଜଗ ମନ୍ଦୁ ।
କାଖରେ କଳସୀ ପେଟରେ ପୁଅ
ଧାଏ ଶିରବଣେ ବନ୍ଧୁଛି ଲୁହ ।
ଏଇ ବାପ ଭାଇ କି କରିଥିଲେ
ନିକୁଞ୍ଜ ବନରେ ନେଇ ଗୁଡ଼ିଲେ ।
ନିକୁଞ୍ଜ ବନରେ ଫନ୍ଦିଛି ମଞ୍ଚା
ହାତ ବଢ଼ାଇଲି ତୋଳିବ ବୋଲି ।
ଯାହାର ମଞ୍ଜୀ ସେ ତୋଳି ନେଲଣି
ଟଙ୍କାକିଆ ଶାଢ଼ୀ ଛିରି ଗଲଣି ।
ଟଙ୍କାକିଆ ଶାଢ଼ୀ ଟାକିଗ ମାରେ
କାଲି ଆସିବ ବୋ'ଇତ ଘରେ ।
ବୋଇତ ଭାଇକ ଉପରେ ମହୁ
ଧାପ ଖୁଣ୍ଟି ଦେଲେ ରଜାଙ୍କ ବହୂ ।
ଭାଇ ନ କଲେ କି ହାଇଁ ନ କଲେ
ମୁଣ୍ଡ ପିଟି ଦେଇ ସିହାନ କଲେ ।
ଏଠିଥିଲେ ଦୁର୍ଗାଦେବୀ କେତେଦୂର ଗଲେ
ମାଳୀ ଘର ଦ୍ୱାରେ ଦୁର୍ଗା ପ୍ରବେଶ ହୋଇଲେ ।
ମାଳୀଘର ଝିଅ ଲୋ ତୁ କନକ ସୁନ୍ଦରୀ
ଫୁଲମାଳେ ମୂଲ କହ ଗଣି ଷୋଳ ଘଡ଼ା ।
ସେ ଫୁଲକୁ ନ ନେଲେ ମୁଁ କସ ହୋଇଯିବ ?
ମାଣିକର ଘାଘାବଳୀ ବିହୁଡ଼ି ଜଳବ !

Digitized by srujanika@gmail.com

## ଭାଲୁକୁଣୀ ଗୀତ (ଭୁବନ, ଢେଙ୍କାନାଳ)

— ୧ —

ଲଙ୍କ ଲଟଗଛକୁ ମଧ୍ୟରେ ବସି ମଧ୍ୟରେ ବସି
ଫୁଲ ନ ଫୁଟୁଣୁ ଧଇଲା କସି ଧଇଲା କସି
ବାପ ପୁଅ ଗଲେ ବୋଇଲେ ବସି ବୋଇଲେ ବସି
ଦରଆ ପାଣିରେ ଧୋଇଲେ ଖୁସି ଧୋଇଲେ ଖୁସି ।
ବରଷେ ଗଲା କ ଛ ମାସ ଗଲା ଛ ମାସ ଗଲା
ମାରଣ୍ଡାଙ୍କ ଦ୍ୱାରେ ପ୍ରବେଶ ହେଲା ପ୍ରବେଶ ହେଲା
ମାରଣ୍ଡାଙ୍କ ଟୋକା ଚଡ଼ଚଟ ବୃଦ୍ଧ ଚଡ଼ଚଟ ବୃଦ୍ଧ
ଖୋସା ପାରଥିଲା କଦଳୀ ଭେଣ୍ଡି କଦଳୀ ଭେଣ୍ଡି ।
ଆଜ ଦିନେ ଖୋସା ପାରବୁ ନାହିଁ ପାରବୁ ନାହିଁ
ଭାଇଙ୍କ ଆଗରେ ଚାଲିବୁ ନାହିଁ ଚାଲିବୁ ନାହିଁ ।
ଭାଇ ତ ମାରବେ ଗୁଙ୍ଗୁଡ଼ ଫେଡ଼ା ଗୁଙ୍ଗୁଡ଼ ଫେଡ଼ା
ଭାଙ୍ଗିଯିବ ତୋର ମଲ୍ଲୀପାଖୁଡ଼ା ମଲ୍ଲୀ ପାଖୁଡ଼ା ।
ମଲ୍ଲୀ ପାଖୁଡ଼ାରେ କଅଣ ପଡ଼ଶେ କଅଣ ପଡ଼ଶେ ?
ଦର ଗୁଞ୍ଜଳ କ ଛ'ମାଣ ପଡ଼ଶେ ଛ'ମାଣ ପଡ଼ଶେ
ଲଙ୍ଗଳ ଦଣ୍ଡ ଦ ହାତ ପଡ଼ଶେ ଦହାତ ପଡ଼ଶେ
ତେବେ ଯାଇ ଖୋସା ସଳଖ ଦିଶେ ସଳଖ ଦିଶେ ।

## ଖରଖରେଇ ପର୍ବ ଗୀତ (ମଞ୍ଜୁଷା)

ଖରଖରେଇ ଲୋ ବରବରେଇ ଦଅ ବରଷାଇ ପାଣି
ନଛନାଳ ମାଡ଼ ଅଇଲା ଟଷ୍ଟ ନଛ କାଣି
କାଣୀ ମନେ ଭଲ ହୋଇ ଯା
ଗନ୍ତ ପାହ୍ୱଲେ ଯୋଡ଼ା ବୋଦା ଖା ।

---

ଭାଲୁକୁଣୀଙ୍କ ବିସର୍ଜନ ଆଗରୁ କୁମାରୀମାନେ କୋଠିଶାଳରେ ଏହିସବୁ ଗୀତ ଗାଇଥାନ୍ତି । ମୁଣ୍ଡ ମୁକୁଳା, ମଝେ ମଝେ କୁହାଟ ମାରନ୍ତି । ସେମାନଙ୍କ ଦେହରେ ଠାକୁରାଣୀ ବିଜେ ହୋଇ ଆଗତ ଭବିଷ୍ୟ କହନ୍ତି ବୋଲି ଲୋକ ବିଶ୍ୱାସ ପ୍ରଚଳିତ ।

ଖରଖରେଇ ଷାଟପଟର
ଦଣ୍ଡଆ ମାଆଙ୍କୁ ବାଶନ୍ଧା ନେଲା ବେଇକ ପତ୍ନର
ଖଡଗୁଣ୍ଡେ ଗୁଆଟେ
ମୋ ଭାଇ ଶୁଆଟେ
ଖଡଗୁଣ୍ଡେ ପଇଟେ
ମୋ ଭାଇ ପାଇଟେ
ଖନ୍ତଗୁଣ୍ଡେ ଗଜାଟେ
ମୋ ଭାଇ ରଜାଟେ
ଖରଖରେଇ ମା' ଲଗିଲା ଲୋ
ଛାଡ଼େଇ ଦେବ କେ ?
ସରୁ ଶଙ୍ଖା ବନ ଦଳଣି
ଖରଖରେଇକ ଦେ ।

## ଜହ୍ନିଓଷା ଗୀତ (ଗଞ୍ଜାମ)

ଜହ୍ନିଫୁଲ ଠୋ ଠା
ଯେ ନ ଦେବ ତା ପିଲାର
ନାକଟା ଖଣ୍ଡିଆଟା ।
ଦାଣ୍ଡଆଡ଼େ ବଗ
ବାଡ଼ଆଡ଼େ ବଗ
ଡୁଙ୍ଗେଇ ମୂଷା କହ୍ନପାଇଚ
ଗୁଜଳ ପୁଞ୍ଜେ ଦେବ ।
ଜହ୍ନିଫୁଲେ ଲୋ ପୂଜିଲି ତୋତେ
କି ବର ମାଗୁଛୁ ଦେବୁଟି ମୋତେ ?
କାକୁଡ଼ି ଫୁଲେ ଲୋ ପୂଜିଲି ତୋତେ
କି ବର ମାଗୁଛୁ ଦେବୁଟି ମୋତେ ?
କନ୍ୟାରି ଫୁଲେ ଲୋ ପୂଜିଲି ତୋତେ
କି ବର ମାଗୁଛୁ ଦେବୁଟି ମୋତେ ?
କଖାରୁ ଫୁଲେ ଲୋ ପୂଜିଲି ତୋତେ
କି ବର ମାଗୁଛୁ ଦେବୁଟି ମୋତେ ?

Digitized by srujanika@gmail.com

## ବାଆ ସୁଲୁସୁଲୁ କଲା ଲୋ (ମଞ୍ଜୁଷା)

ବାଆ ସୂଲୁସୂଲୁ କଲ ଲେ ମା
ଡାହାଣୀ ହାତରେ ବାଡ଼ି
ଢ ହାତକୁ ଦେଲେ ଲେ ମା'
ଦୁଇ ମୁଠି ଚୂଡ଼ି
ଖାଇବାକୁ ଦେଲେ ଲେ ମା'
ସରୁ ଧାନର ଭାତ
ପିନ୍ଧିବାକୁ ଦେଲେ ଲେ ମା'
ଚନ୍ଦ୍ରମୁଖୀ ପାଟ ।

## କଲାଧାନ କେଉ କେଉ ଗୋ (କୁଜଙ୍ଗ, କଟକ)

କଲା ଧାନ କେଉ କେଉ ଗୋ କଲା କାଇଁଚମାଳୀ
ବାପା ଦେଲେ ନାହିଁ ଘୋଡ଼ାକୁ ମୁହ ମୁଁ
କେବେ ଯିବନାହିଁ ଖେଳ ଗୋ
କଲା କାଇଞ୍ଚମାଳୀ ।
କଲା ଧାନ କେଉ ଗୋ କଲା କାଇଞ୍ଚମାଳୀ
ମାଆ ଦେଲେ ନାହିଁ ଟୋପି କୁଣ୍ଡଳ ମୁଁ
କେବେ ଯିବ ନାହିଁ ଖେଳ ଗୋ
କଲା କାଇଞ୍ଚମାଳୀ ।
କଲା ଧାନ କେଉ କେଉ ଗୋ କଲାକାଇଞ୍ଚମାଳୀ
ଭାଇ ଦେଲେ ନାହିଁ ଅଣ୍ଟାକୁ ବସ୍ତ୍ର ମୁଁ
କେବେ ଯିବନାହିଁ ଖେଳ ଗୋ
କଲା କାଇଞ୍ଚମାଳୀ ।

## ଗୃହ ଆଗୋ ଗୃରୁ ଲବଙ୍ଗଲତା (କୁଜଙ୍ଗ, କଟକ)

ପର୍ବତ ଶିଖରେ ମଣ୍ଡିଲ ଭାତ ମଣ୍ଡିଲ ଭାତ
କୃଷ୍ଣ ଧରିଛନ୍ତି ରାଧିକା ହାତ ରାଧିକ ହାତ ।

Digitized by srujanika@gmail.com

ଭୃହିଁ ଆଗୋ ଭୃରୁ ଲବଙ୍ଗଲତା    ଲବଙ୍ଗଲତା
କ ଅପମାନରେ ପୋଡୁଛ ମଥା    ପୋଡୁଛ ମଥା ।
ପର୍ବତ ଶିଖରେ ମଣ୍ଡିଲ ଚୂଡ଼ା    ମଣ୍ଡିଲ ଚୂଡ଼ା
କୃଷ୍ଣ ଧରଛନ୍ତି ରାଧିକା ଜୁଡ଼ା    ରାଧିକା ଜୁଡ଼ା ।
ଭୃହିଁ ଆଗୋ ଭୃରୁ ଲବଙ୍ଗଲତା    ଲବଙ୍ଗଲତା
କ ଅପମାନରେ ପୋଡୁଛ ମଥା    ପୋଡୁଛ ମଥା ।

## ରଙ୍ଗିଣି କୁକୁଡ଼ା (କୁଜଙ୍ଗ, କଟକ)

ଗଉଡ ସାହିକୁ ଯିବୁ ନାହିଁଟି ରଙ୍ଗଣି କୁକୁଡ଼ା
ଗଉଡ଼ ମାରିବ ଟେକାଟି    ,,
ପଳାଇ ଆସିବୁ ଏକା ତ    ,,
ଠାଟେରି ସାହିକୁ ଯିବୁନାହିଁଟି    ,,
ଠାଟେରି ମାରିବ ଟେକା ତ    ,,
ପଳାଇ ଆସିବୁ ଏକା ତ    ,,
କମାର ସାହିକୁ ଯିବୁନାହିଁଟି    ,,
କମାର ମାରିବ ଟେକା ତ    ,,
ପଳାଇ ଆସିବୁ ଏକା ତ    ,,

## ଫୁଲ ବଉଳବେଣୀ (କୁଜଙ୍ଗ, କଟକ)

ଏକ ପତରିଆ ନେଇ ଗୋ ଫୁଲ ବଉଳବେଣୀ
ଏକ ପରବତ ଡେଇଁ ଅଇଲି ମୁଁ
ଝୁଣ୍ଟିଆ ଶବଦ ଶୁଣି ଗୋ
ଫୁଲ ବଉଳବେଣୀ ।
ଝୁଣ୍ଟିଆ ଶବଦ ଶହେ କ ଷାଠିଏ
ବାଟା ଦେବେ ମୋତେ ଆଣି ଗୋ ଫୁଲ ବଉଳବେଣୀ ।
କଅଁଳା ବାଛୁରୀ କାନ ଗୋ ଫୁଲ ବଉଳବେଣୀ
ଅନାଇ ଦେଲି ମୁଁ ଜଳା କବାଟିକି
ବାଟେଙ୍ଗ ଖାଉଛି ପାନ ଗୋ ଫୁଲ ବଉଳବେଣୀ ।

Digitized by srujanika@gmail.com

## ତାଙ୍କୁ ଦେଖିବାକୁ ସାତ ସପନ (ଢେଙ୍କାନାଳ, କଟକ)

ପାଣି ଗଲ ନାଳେ ନାଳେ
ବଂଶୀ ବଜାଇ ଚଳେ
ବାପାଙ୍କୁ ଦେଖିଲେ କନ୍ଦିବ
ତାଙ୍କ ଦଳବୁଲାଠାରେ ରହିବ ।
ତାଙ୍କ ଦଳବୁଲା ଯେଉଁ ଲୋଚନ
ତାଙ୍କୁ ଦେଖିବାକୁ ସାତ ସପନ ।
ପାଣି ଗଲ ନାଳେ ନାଳେ ଗୋ
ବଂଶୀ ବଜାଇ ଚଳେ
ମାଆଙ୍କୁ ଦେଖିଲେ କନ୍ଦିବ
ତାଙ୍କ ରନ୍ଧାବଡ଼ାଠାରେ ରହିବ
ତାଙ୍କ ରନ୍ଧାବଡ଼ା ଯେଉଁ ଲୋଚନ
ତାଙ୍କୁ ଦେଖିବାକୁ ସାତ ସପନ ।
ପାଣି ଗଲ ନାଳେ ନାଳେ ଗୋ
ବଂଶୀ ବଜାଇ ଚଳେ
ଭଉଙ୍କୁ ଦେଖିଲେ କନ୍ଦିବ
ତାଙ୍କ ପାଠପଢ଼ାଠାରେ ରହିବ
ତାଙ୍କ ପାଠପଢ଼ା ଯେଉଁ ଲୋଚନ
ତାଙ୍କୁ ଦେଖିବାକୁ ସାତ ସପନ ।

## ଶ୍ରୀକୃଷ୍ଣ ମୁଖରେ ନାଇଁ (ଢେଙ୍କାନାଳ)

ଆତ ଗଛର ଗୁଇ ଗୋ ଫୁଲ ବଉଲବେଣୀ
ଆତ ଫଳଇ ଦୋଳି ଦୋଳି ହୋଇ
ଶ୍ରୀକୃଷ୍ଣ ମୁଖରେ ନାହିଁ ଗୋ ଫୁଲ ବଉଲବେଣୀ ।
ପିଜୁଳି ଗଛର ଗୁଇ ଗୋ ଫୁଲ ବଉଲବେଣୀ
ପିଜୁଳି ଫଳଇ ଦୋଳି ଦୋଳି ହୋଇ
ଶ୍ରୀକୃଷ୍ଣ ମୁଖରେ ନାହିଁ ଗୋ ଫୁଲ ବଉଲବେଣୀ ।

Digitized by srujanika@gmail.com

କମଳା ଗଛରେ ଗୁଇ ଗୋ ଫୁଲ ବଉଳବେଣୀ
କମଳା ଫଳଇ ଦୋଲ୍ ଦୋଲ୍ ହୋଇ
ଶ୍ରୀକୃଷ୍ଣ ମୁଖରେ ନାହିଁ ଗୋ ଫୁଲ ବଉଳବେଣୀ ।

## ବାହ୍ମଣଦେଇ ଆଉଥିଲେ

ବାହ୍ମଣ ଦେଈ ପଛଆଡ଼େ ପାକଲ ଡୁମିରି
ବାହ୍ମଣ ଦେଈ ଯାଉଥିଲେ ଘୁମୁରି ଘୁମୁରି
ବାହ୍ମଣ ଦେଈ ପଛଆଡ଼େ ଶୁଖିଲ ପତର
ବାହ୍ମଣ ଦେଈ ଆଉଥିଲେ ଖପର ଖପର ।

## କାଠରୁ ଛାଡ଼ିଲା କାଠବକଲା (ଢେଙ୍କାନାଳ)

କାଠରୁ ଛାଡ଼ିଲା କାଠ ବକଲାଛତରକଲା
ରବିବାର ଦିନ ଭୁମରି ଲୀଳା ଭୁମରି ଲୀଳା
ସୋମବାର ଦିନ କାଟିଲ ଗଳା କାଟିଲ ଗଳା
ବଣରେ କୋଇଲି ଛ ମାସ ରାବେ ଛମାସ ରାବେ
ତତେ ଆସିବାକୁ ବରଷେ ଲାଗେ, ବରଷେ ଲାଗେ,
ଯାଉଛ ଦରିଆ ପାହାଡ଼ ଡେଇଁ ପାହାଡ଼ ଡେଇଁ
କଳା ଶାଢ଼ୀଖଣ୍ଡି କାହାକୁ ଦେଇ କାହାକୁ ଦେଇ ?

## ଷାଠିଏ ହାତ ଦାଢ଼ି (ମଙ୍ଗଳପୁର, ବାଲେଶ୍ୱର)

ନାଲି ଝୁଁ ଝୁଁ ଚଢ଼େଇ ଦୁଇଟି
ପିଅଜ ପତର ଖାଇ
ବଡ଼ବୋଉକୁ ଡ଼ାକିଲେ ଗଲେ
ଝୁମୁରି ଗୀତ ଗାଇ
ବଡବୋଉ ଲୋ ବଡ଼ବୋଉ ଲୋ
କି କରମ କଲୁ ?
କନିଆଁରେ ସେ ବଡ ଝିଅକୁ
ବୁଢ଼ାବରରେ ଦେଲୁ ?

Digitized by srujanika@gmail.com

ହଜ ପଛେ ବୁଢ଼ାବର କଣିଦେବ ଶାଢ଼ୀ
ଗନ୍ତ ପାହ୍ୱଲେ ଦେଖେଇ ଦବ ଷାଠିଏ ହାତ ଦାଢ଼ି

## ଆମ କାନ୍ତ ଆସିବେ ବୋଲି (ମଙ୍ଗଳପୁର, ବାଲେଶ୍ୱର)

ବାଡ଼ଆଡ଼େ ଘଷି ଗୋ ବାଡ଼ଆଡ଼େ ଘଷି
ଆମ କାନ୍ତ ପରବାସୀ କାନ୍ଦୁଥିବେ ବସି
ବାଡ଼ଆଡ଼େ ଛାଳ ଗୋ ବାଡ଼ଆଡ଼େ ଛାଳ
ଆମ କାନ୍ତ ପରବାସୀ ବାନ୍ଧୁଥିବେ ଚଳ ।
ଦାଣ୍ଡେ ବୁଣିଲ ଖଇ ଗୋ ଦାଣ୍ଡେ ବୁଣିଲ ଖଇ
ଆମ କାନ୍ତ ଆସିବେ ବୋଲ କଣିଥିଲ ଦହି ।

## ଯାଉଛୁ ଲୋ ସଖୀ ପ୍ରବାସ କରି

ଯାଉଛୁ ଲୋ ସଖୀ ପ୍ରବାସ କରି
ଦଇବ ଲଖନେ ଆସିବ ଫେରି
ଦେଇ ପଠାଇବ ବାଙ୍କବୀ ଶାଢ଼ୀ
ପିନ୍ଧିବୁ ଲୋ ଗୋଛ ଧଡ଼ ସଜାଡ଼ି ।
ଠିକି ଶରଦେଲେ କରିବୁ ଜାଳ
ଗାମୁଛା ଦେଲେ ତୁ ପୋଛିବୁ ଝାଳ
ତେବେ ଯାଇ ପିବୁ ଗ୍ରୋଷେଇ ଶାଳ ।

## ଗୁଡଲସେରେ ଫୁଟାଇ ଦେବ କିଏ ?

ଚଢ଼େଇ ଦୁଇଟି ଧରି ଆଣିଥିଲ
ଗୋଡ଼ ଦୁଇଟି ରଙ୍ଗା
ବୁଢ଼ୀକି ପକାଇ ବୁଢ଼ା ମାରୁଥିଲ
ବାଉଁଶ ଫାଳିଆ ଠେଙ୍ଗା ।
ହାତ ଧରି କରି ନେ ରେ ବୁଢ଼ା
ଗୋଡ଼ ଧରି କରି ନେ
ଆଜ ବେଳକୁ ଗୁଡ଼ଲ ସେରେ
ଫୁଟାଇ ଦେବ କେ ?

Digitized by srujanika@gmail.com

## ବୋହୂ ଭାଜ କଲରା (ଢେଙ୍କା, କଟକ)

ଭଜ ଗୋ ବୋହୂ ଭଜ କଲରା
ଚେକ ଚେକି କରି ବନା ଗୋ
ବୋହୂ ଭଜ କଲରା
ଖଣ୍ଡ ଖଣ୍ଡ କରି ଭଜ ଗୋ
ବୋହୂ ଭଜ କଲରା
ଘିଅ ଢାଳି ଦେଇ ଭଜ ଗୋ
ବୋହୂ ଭଜ କଲରା
ଭିତର ଶିକାରେ ଥୁଅ ଗୋ
ବୋହୂ ଭଜ କଲରା
ବାପାଙ୍କ ପାଖରେ ଥୁଅ ଗୋ
ବୋହୂ ଭଜ କଲରା
ବାପା ତ କହିଲେ ପିତା ପିତା ପତା
ଏ କୋ'ଉଆଡ଼ ଭଜା ଗୋ ?
ବୋହୂ ଭଜ କଲରା ।

## ରାଜାର କୁମାରୀ

ନଏ ନଏ ନଳିତା ଗୋ ନଳିତାର ବାଡ଼
କାହୁଁ ଆଇଲ ମା ଗୋ ତୁମେ ରାଜାର କୁମାରୀ ?
ତୁମରି ଦେଶରେ ମା ଗୋ ବଣିଆ ନ ଥିଲେ
ଝୁଅକୁ ଯୋଉ ଗହଣ ଦେଇଥିଲ ଘଟଣ ନ ଦେଲ ।
ସାହୁଘର ପୁଅ ତୁମେ ଜନକର ନାତି
କୋଉ ବୁଧି ବୁଧାନକୁ କଲ ଏତେ ରାତି ।
ଧର ଧର ବଡ଼ ବୋହୂ ଦଣ୍ଡିର ଦଉଡ଼ି
କାଲି ନେଇ ଆଣିଦେବ ଗୋଡ଼ସଜ କଉଡ଼ି ।

Digitized by srujanika@gmail.com

## ଭାଉଜ ଗଳାରେ ଦେବ (ନିଆଳା, କଟକ)

ନଣ୍ଡ ତଳେ ତଳେ କେ କେ ଯାଉଛ ଲୋ
ପାଟ ଲୁଗା ଫର ଫର
ସେଇ ପାଟ ଲୁଗା ଖଣ୍ଡେ ଦେବ ବାପା
ଯିବି ମୁଁ ଧବଳେଶ୍ୱର ।
ଧବଳେଶ୍ୱରର ଖିରି ଖେଚୁଡ଼ି ଲୋ
କପିଳେଶ୍ୱରର ଲଡୁ
କ ମାଡ଼ି ମାଇଲୁ ସୁତରଞ୍ଜନରେ
ଭାଙ୍ଗି ଦେଲୁ କମ ଖଣ୍ଡୁ
ସେତା କମ ଖଣ୍ଡୁ ମୋ କମ ଖଣ୍ଡୁ
ପେଡ଼ିରେ ପକାଇ ଦେବା
ଭାଇ ଯୋଉଦିନ ବାହା ହୋଇଯିବେ
ଭାଉଜ ଗଳାରେ ଦେବା ।

## ଆଉ ମୁଁ ମାରିବି ନାହିଁ (ଭେଣ୍ଡା, କଟକ)

ଆମ୍ବ ଡ଼ାଳି ଖଣ୍ଡି ଝାଇଁ
କୃଷ୍ଣ ଜଗିଥିଲେ ମାରିବା ପାଇଁ ଲୋ
କାନ୍ଦୁ ଥିଲେ କଇଁ କଇଁ
କୃଷ୍ଣ ମାରି କରି ସଭାକୁ ଗଲେ ଲୋ
ସଭାରୁ ଆଇଲେ ଧାଇଁ
ଘର ତଳୁ ବୁଝି ମାତା ଙ୍କୁ ପଚାରି
ଆମ୍ଭର ଘରଣୀ କାହିଁ ?
ତୁମ୍ଭର ଘରଣୀ ରୁଷି ଶୋଇଛନ୍ତି
ଅମାରି ପଟାରେ ଯାଇଁ
ଉଠ ଚମ୍ପାଫୁଲ ଗାଧୋଇଯିବା ଗୋ
ଆମ୍ଭ ଘରେ ରୁଷା ନାହିଁ ।

Digitized by srujanika@gmail.com

ତୁମ୍ଭ ଘରେ ଲୁଷା ନ ଥିଲାଟି ଯେବେ
ମାରୁଥିଲ କାହିଁ ପାଇଁ ?
ଗାଟେଲା ଗାମୁଛା କାନ୍ଧରୁ ଦେଉଛି
ସମ୍ମାନ କରିବା ପାଇଁ
ଦେଉଳେ ଅନାଇଁ ନମସ୍କାର କରୁଛି
ଆଜ ମୁଁ ମାରିବ ନାଇଁ ।

## ଆଷାଢ଼ ମାସ ପଶନ୍ତେ (କୁଚିଣ୍ଡା, ସମ୍ବଲପୁର)

ଆଷାଢ଼ ମାସ ପଶନ୍ତେ ବରଷିଲା ପାନି
ହଳିଆମାନେ ହଲ୍‌କୁ ପାଧି ଧାନ୍‌କେ ନେଲେ ବୁନି
ଆସିଲା ପଧାନ
କାଇଁ କାଇଁ ଧାନ ବୁନି ବାବୁ ହଳିଆମାନେ ଶୁନ
ଝିଲ୍‌ପା କେରି
ମୁହିଁ କରିଥିବା ଚଲ୍‌କେ କରି
ବୁନ୍‌ବ ହୁଁଡ଼ା ଫଲ୍‌ବ ଡିଣା ଡିଣା
କୁଟିଦେଲେ ଖୁଦ୍‌କୁଁଡ଼ା
ପୁନିଆଁ ସଂକଲା ସୁଂକ୍‌ଲା
ଯା'ରେ ଶାଲି ନକ୍‌ଲା
ଲୁଙ୍ଗଲ ଚାମକର ପିଠା ସବୁ ଖାଇଲୁ ଚକୁଲି
ବାଜି ବରଗଡ଼ ଘଣ୍ଟା ମାଦଲ
କେବେ ନ ହେଲୁ କୁଆଲି
ଗାଁ ମାଇଝି ଯେତେ
ନାଁ କହିବ କେତେ
ଗେଲି, ଗୁରୁବାରି, ହୀରା
ମନ କରିଥା ଧୀରା
ଯା ପଛେ ହୋଇ ଯାଉ କାଲିଆ
ପଲେଇ ଯିବା ପରା ।

Digitized by srujanika@gmail.com

# ପରପୁରୁଷରେ ନାହିଁ ମନ (ଧାଙ୍ଗିର, ଯୁଙ୍ଗା)

ହଲଦୀ ବାଟ୍ଟୁକୁ ରାଜକୁମାରୀ ଲୋ
ଚହଲୁଟ ଯଜବନ
ଉହନ କର ମୁଁ ଗୋଗ ପଚୁରୁଚି
ତୋ ସ୍ୱାମୀ କେତେଡ଼ ଯତନ ?

ମୋ ସ୍ୱାମୀ ଯତନ ରଜାଙ୍କ ପତି
ବାର ବରଷକୁ ଜଲେ ସୁବର୍ଣ୍ଣ
ତେର ବରଷରେ ପୁଅ ଧରନ୍ତି
ସ୍ୱାମୀର ମୋହର ନାହିଁ ପୀରତି ।
ଠଙ୍କା ଗୋଠା କେତେ ନେଏ ଲୋ ସୁରତି
ମୋ ସଙ୍ଗେ କର ପୀରତି ।

ସ୍ୱା ନୋହିବ
ଲିମ୍ବ ଗଛେ ଯେବେ ଶିମ୍ବ ଫଳିବ
ଧାନଗଛେ ଯେବେ ପାନ ଫଳିବ
ବହୁତ ରାଇଜ କମ ହୋଇବ
କଲିକତା ଯାଏ ଲମ୍ବ ଯେ ଥିବ
ଭଁଉର ଯ ଏ ତଅଁର (ଦଶି) ଥିବ
ସେଇ ଲୁଗା ପିଏ ପିନ୍ଧି ଆସିବ
ତେଇଁକି ମୋ ଚିତ୍ତ ଢଳ ପଡ଼ିବ
କଣି କଇଥ ଭଲରେ ନାଠ
ମଅଠ ମଠାଇଲ
ସ୍ୱାମୀ ଗୋଡ଼ ତଳେ ହଲଦୀ କାଠ ଆ
ସ୍ୱାମୀ ଗୋଇଠା ଉଁଗୁଇଲ
ମାଠି କନା ଖଣ୍ଡ ଢାଜବନ
ଘର ଲିପୁଥିଲି ଚଜବନ
କୁଳ ପାପ ଧରି ନଅମ କରୁଛି
ପର ପୁରୁଷରେ ନାହିଁ ମନ ।

Digitized by srujanika@gmail.com

## କୋଉ ପରବତ କନକ ମଣ୍ଡପେ (ଘାଢ଼ିର, ପୁଷ୍ପ)

ଝାଡକୁ ଗଲି ମୁଁ ଝାଡ଼କୋଲି ଖାଇ
ଡାଳ ମୂଳ ଦେଲା କଣା
କୋଉ ପରବତ କନକ ମଣ୍ଡପେ
କୃଷ୍ଣ ଖେଳୁଥିବେ ପଶା
ବନକୁ ଗଲି ମୁଁ ସୁରଙ୍ଗ ଦେଖିଲି
ତାହା ମୋ ଚିତ୍ତେ ରହିଲା
କୂଳ ଛୁଡ଼ କର କୁଆରୁଣୀ ହେଲି
କୃଷ୍ଣ ଭେଟ ତ ନୋହିଲା ।

### ଶୋଇଲା ଶେଯରେ କଥା ନ କହିଲୁ

ଲେଉଟିଆ ଶାଗ ପଟାଳ ପଟାଳ
ଅଧେ ମାଡ଼ିଗଲା କାକର
ଦେଢ଼ ବରଷର ସୁବର୍ଣ୍ଣ କନିଆଁ
କଥା କହୁ ନାହୁଁ ନାଗର
ତୁ'ଥିଲୁ ଦିନ ପୁଅରେ ନାଗର
ମୁଁ ଥିଲି ଦିନ ଝିଅ
ଶୋଇଲା ଶେଯରେ କଥା ନ କହିଲୁ
ତୃଷ୍ଣା ତାନ ହୋଇ ଶୁଅ ।

### ସେଇ ଫୁଲ ଆଣି ମଣ୍ଡିବ

ନାସ୍ତ ନାକଚଣା ବଣଣି
ବଡ଼ ଦିନେ ବଡ କଷଣି
ଶାଶୂ ନଣନ୍ଦଙ୍କ ବଚନ
ବଜ ଧୁଙ୍ଗାସ ବାଣୀ ।
ଅଳପ ବୟସେ ଗୋସ୍ୱରେ
ତଟେ ଉସିଲି ମୁହିଁ
ମାଳୀ ଘର ଫୁଲ ରଖିଛୁ
ଚୋର ଜୁଡ଼ାକୁ ଲୁହିଁ

Digitized by srujanika@gmail.com

ସେଇ ଫୁଲ ଆଣି ମଣ୍ଡିବ
ମୋର ଜଙ୍ଘେ ବସାଇ ।

## କେମନ୍ତ ଧରିବ କୋଳେ ?

କଖାରୁ ଡଙ୍କର ଡଙ୍କ ନରମଳ
ଫୁଲ ଫୁଟିଗଲା ଚସ୍ୱଟ
ଜନ୍ଧା ପଖ ବୋଲ ବାଡ଼ାରେ ଶୋଇଲି
ସ୍ୱାମୀ କଳଦେଲେ କବାଟ
ଧକାଏ ମାଇଲି ଫିଟିଲା କବାଟ
ଛୁଷି ମୁଁ ଶୋଇଲି ତଳେ
ଗାଳି ଦେଇଥିଲି ମାଡ଼ ମାରିଥିଲି
କେମନ୍ତ ଧରିବ କୋଳେ ?

## ମୋର ପ୍ରାଣନାଥ ସେଇ

ହଳଦୀ ବାଟିଲି ଜଙ୍ଘା ମରଜିଲି
ପଇଡ଼ କାଟିଲି ଓରୁ
ଲକ୍ଷେ ଟଙ୍କା ଦେଇ ଦେଉଳେ ପଶିଲି
ତୁମ କୋଳେ ଦାନ ସରୁ
ଏ କୂଅ ଖୃଟିଲି ସେ କୂଅ ଖୃଟିଲି
ମଝି କୂଅ ପାଣି ପିଠା
ଗୃଳ କଣା କରି ଅନାଇ ଦେଲି ଲେ
ତିନ ଜଣ ଛନ୍ତ ଠେକା ।
ଆଗ ଜଣକ ତ ମାମୁଁ ମଉଳା ଲୋ
ପଛ ଜଣକ ତ ଭାଇ
ମଝି ଜଣକ ତ ଟୋପି ଚନ୍ଦନ ଲୋ
ମୋର ପ୍ରାଣନାଥ ସେଇ ।

## ଅଦ୍ୱନା ଗଛରେ ଫୁଲ ଫୁଟିଗଲା

ପାକଲା ଆମ୍ବଟି ଅତି ସୁରଙ୍ଗ ଲୋ
ପାଇଲି ବନ ଭିତରୁ

Digitized by srujanika@gmail.com

କଷ୍ଟ ଦେଇ କୃଷ୍ଣ ପାସୋର ଗଲେ ନେ
ନ ଗଲ ହୃଦ ମଧ୍ୟରୁ
ଆହା ବନବାସୀ ଟୋ· ସଙ୍ଗେ ପୀରତି
ତୁଟି ବନ୍ଧକଲୁ ମତେ
ଅଦନା ଗଛରେ ଫୁଲ ଫୁଟିଗଲା
ଛନ ଛନ ପରପନ୍ତେ ।

## ଫୁଲ ମଧୁମାଲତୀ (ଭୁଜଙ୍ଗ, କଟକ)

ଚେକା ଆମ୍ବ ଗଛ ଶିଅ ଗୋ
ଫୁଲ ମଧୁମାଲତୀ
ଆମର ନନାଙ୍କ ଯୁବତୀ ଝିଅ ସେ
ଟଙ୍କା ମୁଲ କରି ନିଅ ଗୋ
ଶହେ ଟଙ୍କା ଦେଲେ ଯିବ ନାହିଁ ବୋଉ
ଗୋଡ଼ ସଜ ମତେ ଦିଅ ଗୋ ।
ଚେକା ଆମ୍ବ ଗଛ ଶିଅ ଗୋ
ଫୁଲ ମଧୁମାଲତୀ
ଆମର ନନାଙ୍କ ଯୁବତୀ ଝିଅ ସେ
ଟଙ୍କା ମୁଲ କରି ନିଅ ଗୋ
ଶହେ ଟଙ୍କା ଦେଲେ ଯିବ ନାହିଁ ବୋଉ
ହାତ ସଜ ମତେ ଦିଅ ଗୋ ।
ଚେକା ଆମ୍ବଗଛ ଶିଅ ଗୋ
ଫୁଲ ମଧୁମାଲତୀ
ଆମର ନନାଙ୍କ ଯୁବତୀ ଝିଅ ସେ
ଟଙ୍କା ମୁଲ କରି ନିଅ ଗୋ
ଶହେ ଟଙ୍କା ଦେଲେ ଯିବ ନାହିଁ ବୋଉ
ବେକ ସଜ ମତେ ଦିଅ ଗୋ;
ଚେକା ଆମ୍ବଗଛ ଶିଅ ଗୋ
ଫୁଲ ମଧୁମାଲତୀ

Digitized by srujanika@gmail.com

ଆମର ନନାଙ୍କ ସୁବର୍ଣ୍ଣ ଝିଅ ସେ
ଟଙ୍କା ମୂଲ କରି ଆଣ ଗୋ
ନହେ ଟଙ୍କା ଦେଲେ ଯିବ ନାହିଁ ବୋଉ
ମୁଣ୍ଡ ସଜ ମତେ ଦିଅ ଗୋ

## ଘୁରୁ ଘୁରୁଳି ପାଣି (କେଉଁଝର)

ଘୁ ରୁ ଘୁରୁଳି ପାଣି, ଦିଅ ମାଗୋ ଘୁରୁଳି ପାଣି
ଆସି ପହଞ୍ଚିଲୁ ବାମି ଦୁଆରେ
ଝିଅ ଯାଉଛୁ ଜୁଆଁଇଁ ଘର
ଶାଶୁ ମାଉଡ଼ି ଶଙ୍କୁଳି (ଶଙ୍କୁଡ଼ି) ପଡ଼
ପଡ଼ିଥିବା ଚନ୍ଦନର ଛଟ ।

## ରଙ୍ଗ ରଙ୍ଗ ଡାଲାରେ (କେଉଁଝର)

ରଙ୍ଗ ରଙ୍ଗ ଡ଼ାଲାରେ
କି ଶାଗ ତୋଳିବେ ରସ ରସ
କାନ୍ଦଣାରେ କି ଘର କରିବେ ?
ମାଣେକ ଝିମାଲେ ବାଳୀ ପୋଷେକ ରଖିବେ
ପୋଷେକ ରଖିଲେ ବାଳୀ କୁଟୁମ୍ବ ପୋଷିବେ ।
ମୁଣ୍ଡ ବାନ୍ଧୁଡ଼ି ସାଇ ସାଇ ବୁଲିବେ
ତେବେ ସେ ବୋଲିବେ ବଡ଼ଘର ବୋହୂ
ବାହାର ଆପେ ଝରମର ହୋଇ
ତେବେ ସେ ବୋଲିବେ ବଡ଼ଘର ବୋହୂ ।

## ଗୁରିକଣେ ବେଦୀଶାଳେ (କେଉଁଝର)

ଗୁରିକଣେ ବେଦୀଶାଳେ ବଇଠା ଜଳୁଛି
ଆମର ପୁଅ ବେଦୀରେ ବସିଛି
ଦାଣ୍ଡ ଆଡେ ଗହଳ ଶୁଭୁଛି

Digitized by srujanika@gmail.com

ନୁଣ୍ଡା ତ ନୁଣ୍ଡା ଲିପିଲେଇ ଲଣ୍ଡା
ବାହ୍ମଣ ନନା ବେଦ ପଢୁଛି ଗଁଧୁ ମୁଣ୍ଡା ମୁଣ୍ଡା ।
ତୁମାଇଁ ତୁମାଇଁ ଯେ ମହୁଲ ଡୁମାଇଁ
ବାହ୍ମଣ ନନା ବେଦ ପଢୁଛି ଘୁମାଇଁ ଘୁମାଇଁ ।
ବେଲ ତ ବେଲ୍ ଠୁଳି ଠୁଳିଥା ବେଲ
ଅଣେ ସୁକେଇ ପାଇବ ବୋଲି
ଦେଖ ବାହ୍ମଣ ଗେଲ ।

## ଗୋଟି ଗୋଟି ହୋଇ ଝଡ଼େ ଘୁଙ୍ଗୁର (କୁଜଙ୍ଗ, କଟକ)

ଆସ ଗୋ ସଙ୍ଗାତେ ଯିବା
ବଉଳ ଫୁଲକୁ ତୋଳି ଆଣିବା
ଝୁଙ୍ଗଡାରେ ଭରିଦେବା, ସଙ୍ଗାତେ ଗୋ
ବଉଳ ଫୁଲଟି ସବୁଠୁ ସାର
ହାର ଗୁନ୍ଥି ଦେବା କୃଷ୍ଣ ଗଳାର
ସେ ଫୁଲ ଫୁଟଇ ବାସ ଚହଟଇ
ଗୋଟି ଗୋଟି ହୋଇ ଝଡେ ଘୁଙ୍ଗୁର
ସଙ୍ଗାତେ ଗୋ ।
ଆସ ଗୋ ସଙ୍ଗାତେ ଯିବା
ମାଚଞ୍ଚି ଫୁଲକୁ ତୋଳି ଆଣିବା
ମାଳଞ୍ଚି ଫୁଲଟି ସବୁଠୁ ସାର
ହାର ଗୁନ୍ଥି ଦେବା କୃଷ୍ଣ ଗଳାର
ସେ ଫୁଲ ଫୁଟଇ ବାସ ଚହଟଇ
ଗୋଟି ଗୋଟି ହୋଇ ଝଡ଼େ ଘୁଙ୍ଗୁର ।
ଆସ ଗୋ ସଙ୍ଗାତେ ଯିବା
ଗୋଲାପ ଫୁଲକୁ ତୋଳି ଆଣିବା
ଗୋଲାପ ଫୁଲଟି ସବୁଠୁଁ ସାର
ସେ ଫୁଲ ଫୁଟଇ ରାଜ ନଅର

Digitized by srujanika@gmail.com

ସେ ଫୁଲ ଫୁଟଇ ବାସ ଚହଟଇ
ଗୋଟି ଗୋଟି ହୋଇ ଝଡ଼େ ଘୁଙ୍ଗୁର ।

## ତୋର ନୟନ ମତେ ଭଗାଉ (କୁଜଙ୍ଗ, କଟକ)

ଆଗବାଳ ତୋର ଓଲଟ କମଳ
ପଛକୁ ପଡ଼ଇ ଲୁଇ
ସଜନୀ ଗୋଷ୍ଠ
ଆଜ ନାହିଁ କଲେ ଯିବ ଫେଶ,
ତୋର ନୟନ ମତେ ଭଗାଉ
ସଜନୀ ଗୋଷ୍ଠ ।
ତୋ ପାଦ ଦୁଇଟି ଓଲଟ ପାଲଟ
ପଛକୁ ପଡ଼ଇ ଲୁଇ
ଏମନ୍ତ ଝଲକ ତୋମୁଣ୍ଡ ପସର
ଝଲକ ପଡ଼ଇ ଦମ୍ଭ
ପ୍ରାଣ ସଜନୀ ଗୋଷ୍ଠ
ତୋର ନୟନ ମତେ ଭଗାଉ ।
ଜୁଡ଼ା ଝୁରିପାଖେ କୁସୁମ ପାଖୁଡ଼ା
ଦେଖନ୍ତେ ପଡ଼ଲ ଝଡ଼
ମେଘନାଦ ଶାଢ଼ୀ ପିନ୍ଧିଚୁ ସଜାଡ଼ି
ମରମେ ଗଲୁ ମୁଁ ମରି
ସଜନୀ ଗୋଷ୍ଠ
ତୋର ନୟନ ମତେ ଭଗାଉ ।

## ସଉଳ ମାଇଲ୍ ଦଣ୍ଡ (ରେଞ୍ଚଶାସନ, ପୁରୀ)

ସଉଳ ଆଣିଲୁ ଦଣ
ଛଇଁକୁ ଯୋଡ଼ଏ ଖସ୍
ବାଙ୍କ ରହିଲା ଆଠ
ଛଇଁକୁ ଯୋଡ଼ଏ କାଠ

Digitized by srujanika@gmail.com

ବାକି ରହିଲା ତିନି
ତିନିରୁ ଯୋଡ଼ିଏ ବଗ (ବଗ ନେଲା) ।
ତିନିରୁ ରହିଲା ଚୁର
ସେଥିରୁ ନେଲେ ଝିଅ ଝିଆସି
ବାକି ରହିଲା ଦୁଇ
ତିନିର ଗୋଟିଏ ପୋଇ (ପନ୍ଥ)
ବାକି ରହିଲା ଏକ
ମୋର ଲଞ୍ଜ, ତୋର ବେକ
କାଠିଖିଆ ଆଖି ମାଡି କରି ଦେଖ । ✳

## ନେନ୍ଥି ନେନ୍ଥି ବାଇଗଣ (ବଡ଼ମା)

ନେନ୍ଥି ନେନ୍ଥି ବାଇଗଣ ପେନ୍ଥି ପେନ୍ଥି କଣ୍ଟା
ସ୍ୱରବତୀ କନ୍ୟା ଲାଗି ଜଗଥିଲି ଚୋଟା
ବାଘ ପଛେ ଖାଉ ଲେ ମା'ଭାଲୁ ପଛେ ଖାଉ
ସ୍ୱରବତୀ କନ୍ୟା ଲାଗି ମୋ ଜୀବନ ଯାଉ ।

## କଅଁଳ ପତର ଛନଛନ (ବଡ଼ମା)

କଅଁଳ ପତର ଛନ ଛନ
କେଉଁ ଆସୁଥିଲା କଳା ଜହ୍ନ
କଳା ଜହ୍ନ ମୋତେ ଭାଳ ଦେଲା
ହାତରୁ ପଡ଼ ଗ ବାହୁ ନେଲା
ପାଣିକଡ଼ା ଠେଇଁ ହଁ କଲା
କଂସାମଜା ଠେଇଁ ନାହିଁ କଲା

---

✳ ସ୍ତ୍ରୀକି ପୁରୁଷ ଦଶୋଟି ସହଳମାଛ ଧରି ଆଣି ଦେଲା । ସ୍ତ୍ରୀ ସେତକ ଭକ୍ଷଣ କରି ଦୃଷ୍ଟୁ ଦୃଷ୍ଟୁ ପ୍ରାୟ ଶେଷ କରିଦେଲା । ପୁରୁଷ ଆସି ଏତେ ଅଳ୍ପମାଛ କାହିଁକି ରହିଲ ହୋଇଛ ପଚାରିବାରୁ ତାକୁ ଉକ୍ତ ପ୍ରକାରେ ହିସାବ ଦେଲା ।

Digitized by srujanika@gmail.com

ଏହ ଗ୍ରାଏଁ ଏହ ଗଭଶ୍ର ।
ବଡ଼ ଦେଉଳରେ ନଅମ କଲ୍
ମୋ ଭାଇ ନେଚା ଘଇଚା ।

## ନାଉ ଲଗାଇଲି (କଟକ)

ନାଉଁ ଲଗାଇଲି ମହାନରେ ବସି
ଫୁଲ ନ ଫୁଟୁଣୁ ଧଇଲା କଷି
ମୋ ଭାଇ ଯାଇଛନ୍ତି ବୋଇତେ ବସି
ଛ'ମାସେ ଗଲା କି ବରଷେ ଗଲା
ମାଳୁଣୀ ଦୁଆରେ ରହଣି କଲା
ମାଳୁଣୀ ଝିଅ ସେ ନହଟଚମ୍ପୀ
ଜୁଡ଼ା ପାଉଥିଲା କଜଳପାତି
ସେଇ ଜୁଡ଼ାବେଳେ ମୁଣ୍ଡଁ ଥାଆନ୍ତି
ଗୋଡ଼େକ ଦିଅନ୍ତି ମହାନଦୀକ
ଗୋଡ଼େକ ଦିଅନ୍ତି କଳା ଖଡ଼କ
ମହାନଦୀ ଛୁଆ ଛୁଆ ଗୋ
ଭାଉଜ ପଛକେ ମଚ୍ଛୁ ଗୋ
ଲୁହ ଠକ ଠକ ପଡ଼ୁ ଗୋ ।

## ଚୁଲ ଗୋ ନନୀ (ସମ୍ବଲପୁର)

ଚୁଲ ଗୋ ନନୀ ପଲାଇ ଯିମା ବାମଡ଼ା ଭିତର
ଭାତ ବୋଇଲେ ଭାତ ଦେବ ପଟୁକା ଧାନର
ଭଜନ ବୋଇଲେ ଭଜନ ଦେବ ଯୋଡ଼ା ସମ୍ବର
ଝୁମ ହେଲେ ଶୁଆଇଦେବ କୋଲର ଭିତର
ମିତ, ମାର ଜଙ୍ଗରେ ।

---

Digitized by srujanika@gmail.com

## ଶଗଡ ବାଟରେ କୃଷ୍ଣ (ପୁଷି)

ଶଗଡ ବାଟରେ କୃଷ୍ଣ ଖେଳୁଥିଲେ ନାଟ
ଶୋଇଲା, ଗଣ୍ଡିର ତାଳ ଷୋଳଟି କବାଟ ।
ଷୋଳଟିଙ୍କ ବାଟ ତାଙ୍କ ଷୋଳଟିଙ୍କ ଯୋଡ଼ା
କନଥାଁ ମାଇପ ତାଙ୍କ ସରଗର ତରା ।
ଧଆଡ଼ ମାଇପ ତାଙ୍କ ଗନ୍ଧୁଣି ବାନ୍ଧୁଣି
ବଳା ପଟିକ ହଜରଲା ଗୋଡକୁ ଛନ୍ଦଣି ।
ଛନ୍ଦଣି ଲୋ ମନ୍ଦଣି ଲୋ ନ କରବୁ ଚନ୍ତା
ଫାଟିଫୁଟି ଯାଉଥିବେ ସାନ ଭଉଣୀ ସୀତା ।
ଅଣ ଅଣ ସୀତାଙ୍କୁ ସେ ରଥରେ ବସାଇ
ପାନଗୁଆ ହଙ୍ଗି ଦେବା ଜଙ୍ଘରେ ବସାଇ ।
ଆସନ୍ତା ପଞ୍ଚମୀଦିନ ମାଡ଼ ଅଇଲା ରଥ
( ଇ ରଥେ ବଜେ କଲେ ପ୍ରଭୁ ଜଗନ୍ନାଥ ।
ଆଉ ରଥ ଯାଇଛନ୍ତୁ ଶରଧା ବାଲକ
କୋଟି କୋଟି ନମସ୍କାର ଗହମ ବୁଲକ ।
ଗହମ ଟଳେଇ ଦେଲ ଫକେଇ ଦେଲ ଗୋଡ଼
କୁ ରଇଜରୁ ଉଡ଼ ଆଇଲେ ପାର ଯୋଡ଼ ଯୋଡ ।
ଆସ ଆସ ପାରମାନେ ମୋ ପିଣ୍ଡାରେ ବସ
ଖାଇବାକୁ ଦେବ ତୁମକୁ ନଡ଼ଆର ରସ ।
ପିଇବାକୁ ଦେବ ତୁମକୁ ମହାନଦୀ ପାଣି
ଶୋଇବାକୁ ଦେବ ତୁମକୁ ପରୁଡ଼ ମଶୁଣି ।

## ପାଣି ଛଡ଼େଇ ଖୋଅ (ପୁଷି)

ହାଣ୍ଡିକ ପହର ବାବୁ ଘୋଡାକୁ ପହର
ଭଲ ଭଲ ଲୋକମାନେ ପାଇଲେ ସୁନା ବଳା ।
ସେଇ ସୁନା ବଳା ଧର ମାଣିକ ଖୋଜି ଆ
ମାଣିକ ଛେଳି ଘୁମେଇଁ ଘୁମେଇ ସିଂହ ଦୁଆରେ ଠିଆ ।
ସିଂହ ଦୁଆର ବାଲିପାକ ଗୋଟି ଗୋଟି ଗୁମ
କାନ୍ଦିଗଲେ ଜଗନ୍ନାଥିଆ ପାଟିଆ ଚନ୍ଦନ ।

Digitized by srujanika@gmail.com

ଆଗ ଜଗନ୍ନାଥ ପଛେ ଜଗନ୍ନାଥ
ମାଣିକର ଦୁଇହାତ
ସୁନାର ପଇତା ରୁପାର ପାଣ୍ଡଆ
ଝୁଲିଗଲେ ଦୁଇହାତ ।
କ ଘର ପ୍ରେଉଁଛୁ ବାବୁ ବାଉଁଶ ପାଣ୍ଡଆ
ମା'ଝିଅଙ୍କ ଘରେ ଅଛୁ ରତନ ଝୁଣ୍ଟିଆ
ରତନ ଝୁଣ୍ଟିଆ ବାବୁ ବେଣ୍ଟ ପୋଖରୀ
ଶୁଆସାରୀ ଉଡ଼ିଗଲେ ଯୋଡ଼ ମନ୍ଦୁରୀ ।
ଶୁଆ କହିଲା ସାରୀ ଲୋ କେଉଁବାଟେ ଯିବା ?
ନାଁ ଏଇବାଟେ ଯିବା
ଯାଉଁ ଯାଉଁ କଣ ନା ପାଇଲେ ଗୋବର ନଣ୍ଡେ
ସବୁ କଳା କଳା
ମନ୍ଦିରରେ ବିଜେକଲେ ସର୍ବମଙ୍ଗଳା
ସର୍ବମଙ୍ଗଳା ମା'ଗୋ ସର୍ବ ସୁଖେ ଥାଅ
ଘିଅ ପାଇଲେ ମା'ଗୋ ପାଣି ଛାଡ଼ିଲ ଖାଅ ।

## ବାଲୁକା ଲିଙ୍ଗକୁ ପୂଜା କରଇ (ପୁଷ)

ଅର୍ଘ୍ୟ ଥାଳ ମଞ୍ଜି ପୋତଇ ଜଟା
ଫୁଲ ଫୁଟିଅଛୁ ନାଗେଶ୍ୱରୀ ଗୋଟା ।
ଫୁଲ ଫୁଟିଅଛୁ କାମିନୀ ବନ
ସେ ଯାଇ ପଶିବେ ମଧୁବନ ବନ ।
ମଧୁବନ ବନରେ ବାସ ଚଢ଼ାଇ
ବାଲୁକା ଲିଙ୍ଗକୁ ପୂଜା କରଇ ।
ପୂଜିବ ଗଉରୀ ପାଇବ ବର
ଗୋପୀମାନେ ହେବେ ଗୋପାଳଙ୍କର ।
ମହାପାତକ ଭୂମି ପାତକ
ବ୍ରାହ୍ମଣଙ୍କୁ ଦେବ ଦ୍ରବ୍ୟ ଭୋଜନ ।

Digitized by srujanika@gmail.com

ଝିରଝିର ନଦୀ ତଟରେ ମିଳ
ଝିରଝିର ଯାଉ ଦରଷ ଗାଳ
ନଡ଼ିଆ କାକୁଡ଼ି ଖେଗ କଦଳୀ ।

## ପୂଜିଲେ ପାଇବ ଗଉରୀ ବର

ଅରଖ ଦୂଦୁବ ବେଲ ପତର ପୂଜଇ ହର
ପୂଜିଲେ ପାଇବ ଗଉରୀ ବର ।
ନୁହେଁ ସେ ଗଉରୀ ନୁହେଁ ସେ ଧାନ
ବାପ ମାଆ ଘରେ ଅଢ଼େଇ ଦିନ ।
ବାପ ମାଆ ଘରେ ସମସ୍ତେ ପର
ଦୁଃଖେ ସୁଖେ ଯିବା ସ୍ୱାମୀର ଘର ।
ସୁନା ଶାମୁକାରେ କାଟଇ ନାହ୍ୱ
ରୁପା ଶାମୁକାରେ ଅରଖ ଦେଇ ।

## ବାଟରେ ବାଟ

ବାଟରେ ବାଟ ପୂଜଇ ଘାଟ
ଲକ୍ଷ୍ମୀ ନାରାୟଣ ହୁଅନ୍ତୁ ଭେଟ ।
ଶୁଆରେ ଶୁଆ, ଦାନ୍ତରେ ଘଙ୍ଗିବୁ ଖଣ୍ଡିଗୁଆ
ଆଣିକ ଦେବୁ କ ଘାଇକ ଦେନୁ
ଆଜ ଘରଖଣ୍ଡ ଫୋପାଡ଼ି ଦେବୁ ।
ଖଡ କୁଣ୍ଡେ ଉଠିଲା ଗଜା
ବାଣପୁରଠି ଟମକ ବାଜା
ତୋ ଘଇ ମୋ ଘଇ ରଜା ।

## ହାମାର ସୁରେନ୍ଦ୍ର ସାଏ (ସମ୍ବଲପୁର)

ଆଏଲାରେ ଆଏଲାରେ
ହାମାର ସୁରେନ୍ଦ୍ର ସାଏ
କୁଦୋ ପାଲିର ମଝା ଖୁଲି
ଡ଼ୁଙ୍ଗର ଉପରେ ଘୋଡ଼ା ନାରଦଉ ଥାଏ ।

Digitized by srujanika@gmail.com

ଇଟା ସେ ସୁନ୍ଦରସାଏର ମାଟି
ଚଲୁ ଡେଗାଇ ଛବଲ ସାଏ ଚଢ଼ୁଥିଲା ହାଣ୍ଡି
କୁଦୋପାଲ ଗୁଲ ବାଜଯାଇ ଫାଟିଗଲା ଗୁଣ୍ଡି ।

## ଢଗ ନାଟକ (ଖୋର୍ଦ୍ଧା)

ବୋହୂ— କପୂରକାନ୍ତି
ମାଲେ, ତୁମ ପୁଅ କାହାନ୍ତି ?
ତୁମ ପୁଅ ବଡ଼ ଛଇଳା
ମାଲପା ଲଗାଇ ମୋଡ଼ମାଡ଼ ଦେଲା
ବଳଦ ଲେଖାଁ ଶୋଇଲା ।

ଶାଶୂ— ଆଣ୍ଟୁକୁଡ଼ା ଘର ଝିଅ ଲୋ
ମୋର ବାରବରଷର ପୁଅ ଲୋ
ପଡ଼ଶା ଘରକୁ କୁଣିଆଁ ଆସିଛୁ
ଥିରିଆରି ହୋଇ ଶୁଅ ଲୋ ।

ବୋହୂ— ଆଚ୍ଛା କଥାଟିଏ କହିଲ ହେ ମାଆ
ଭଲ କଥାଟିଏ କହିଲ
ବାର ବରଷର ଯୁବତୀ କନିଆଁ
ଠାଆ ଠାଆ କରି ଶୁଆଇଲ ।

ଶାଶୂ— ମଞ୍ଜନରେ ଥାଇ **ମନୋହର** ଖାଇ
ଟଙ୍କାକର ଖାଏ ତାମ୍ବୁଳ
ଥିରି ଥିରି କରି ବଚନ କହଇ
କିଛି ଜାଣେ ନାହିଁ ଚତୁରୀ ।

ବୋହୂ— କରମ କଷଣ କହିବ କାହାକୁ
ବପା ବନ୍ଧ କଲେ ଚେପାମୁହାଁକୁ ।

ଶାଶୂ— ଚେପ୍ଟିନାକୀର ଘର ଦୁଆର
ନାକଥିଲା ଲୋକ ବାର ଦୁଆର
ଫଗୁଣ ମାସର ଫଗୁ

---

ମନୋହର—ଲୁଆଗୁଣ୍ଡ ଓ ଗୁଡ଼ରେ ପ୍ରସ୍ତୁତ ମୁଆଁ ।

Digitized by srujanika@gmail.com

ଯେବେ ହୋଇଥିବୁ କୁଳର ପିଲା
କୁଳକୁ ଅନାଇଥିବୁ ।

ବୋଝୁ —
ଝଙ୍କଟା ମଚେ ଉସଇ ନାହିଁ
ମୋ ମୁଣ୍ଡେ ପାନଆ ପଶଇ ନାହିଁ ।

## ସିନ୍ଦୁର ଘିଞ୍ଚିଲା ମୁଦ୍ଦିକ ଗୁହିଁ (ଧାନ୍ଦର, ପୁଷ୍ପ)

ବନ୍ଧୁ ମୋ ଯାଇଛନ୍ତି ଦ୍ରବ୍ୟ ଗଢ଼ାଇ
କୋଳେ ବସାଇ ତାକୁ ଦେଲେ ପିନ୍ଧାଇ ।
ବନ୍ଧୁ ମୋ ଯାଇଛନ୍ତି ପାଟନେତ ପାଇଁ
କୋଳେ ବସାଇ ତାକୁ ଦେଲେ ପିନ୍ଧାଇ ।
ବନ୍ଧୁ ମୋ ଯାଇଛନ୍ତି ମୁଦ୍ଦ ଗଢ଼ାଇ
ସେଇ ମୁଦ୍ଦରେ ବୁଝି ଦର୍ପଣ ଦେଇ
ଦର୍ପଣ ଦେଖି ସିନ୍ଦୁର ଘିଞ୍ଚଇ ।
ତାଡ଼ ତ ଆଣିଥିଲ ନଡ଼ା ଗଣ୍ଠିରେ
ସେ ତାଡ଼ ପିନ୍ଧିଲି ମୁଁ ବାହା ଚାଟିରେ ।
ଦର୍ପଣ ପେଡ଼ ମୋର ଫିଟଇ ନାହିଁ
ସିନ୍ଦୁର ଘିଞ୍ଚିଲି ମୁଁ ମୁଦ୍ଦିକ ଗୁହିଁ ।

## ପୁଚି ଖେଳ ଗୀତ

ପୁଚି ଲୋ ଘୁଞ୍ଚି ଯା
ଗମ୍ଭାର ଡାଳରେ ଲୁଚି ଯା
ଗମ୍ଭାର ଡାଳରେ ମଇଁଷି
ଧାନ ମଚ ମଚ ଖାଉଛି
ଅଡ଼େଇ ଦେ ରେ ଭାଇ ଗଉଡ଼
ବଜେଇ ଦେରେ ବଇଁଶୀ
ମଇଁଷିଆ ଭାଇ କଏ ରେ
ପାନ ବୋଉଡ଼କେ ଗୁଆ ବୋଉଡ଼କେ
ଭାଇଙ୍କି ସଙ୍ଗତେ ନେ ରେ

Digitized by srujanika@gmail.com

ଭାଇ ବସିଛନ୍ତି ଡଙ୍ଗ ପିଣ୍ଡାରେ
ଭଗାରି ବସିଛି ତଳେ
ପାନ ଖାଇ ପିଙ୍କ ପକାଇ ଦେଲେ
ପଇଲା ଭଗାରି ଶିରେ ।
ଭଗାରି ପଛକେ ମରୁ
ଭଗାରି ମୁଣ୍ଡରେ ଘିପଲଛା
ହୁ ହୁ ହୋଇ ଜନ୍ତୁ ।
ଗୋବର ଗାଡ଼ିଆ ପୋକ
ଆମେ ତ ଭଉଣୀ ପୁଚ ଖେଳୁଥିଲୁ
ଝୁରି ମରୁଥିଲେ ଲୋକ ।
ବାରଆଡ଼େ ଧାନ କଆରି
ଲମ୍ବ ଲମ୍ବ ଶିଷ
ଆମେ ତ ଭଉଣୀ ପୁଚ ଖେଳୁଥିଲୁ
ଗଡ଼ ହୋଇଗଲା ନଶା ।
ପୁଚ ଲୋ ପୁଚ ଯା
ଗଞ୍ଜର ବଲକୁ ଲୁଚ ଯା
କଳାକାଠ ବଦନ
ଝୁଲୁମାର ଗଇ
ପାକା ପାନ ଖାଇ
ଛା ପଛକୁ ଛା ପଛକୁ
ଗୋଡ଼େଇ ଗଲ ତାଳ ଗଛକୁ
ତାଳଗଛ ମୂଳେ ଢାମଣା
କଉଡ଼ି ନାହିଁ କ ପଚର ନାହିଁ
ଆମେ ତ ଭଉଣୀ ପୁଚ ଖେଳୁଥିଲୁ ମାଗଣା ।
କଳା ବାଇଗଣ
ଧଳାବାଇଗଣ
କାଟି ଦେଲା ଲହୁଣୀ

Digitized by srujanika@gmail.com

ମୋ ସାଙ୍ଗରେ ଯେ ଲଗିବ
ମାରଦେବ ଢ କହୁଣୀ ।

## ପୁଚଖେଲ ଗୀତ (ଚକ୍ରଧର ପୁର, ସିଂହଭୂମ)

ସେହ୍ନ ସାହ୍ନ ଯାଇଥିଲି,
ପିଠାଫାଳେ ପାଇଥିଲି
ଫାଳେ ହେଲା କଞ୍ଚା
ଫାଳେ ହେଲା ପିଙ୍ଘା
ମୁଁ ହେଲି ରାଣୀ,
ଝଣ୍ଡ ଗଛର ପ ଣି ।
ଅମ୍ବୁଲ ମାଠିଆ ନାରେ,
ଆମ୍ବୁଲ ମାଠିଆ,
ମୋର ଭାଇର ବୋହୂ ଆଇଲେ
ଦେବ ସୁନାର ଗଣ୍ଡିଆ ।
ଶିଳର ପିଠାଉ ନାରେ,
ଶିଳର ପିଠାଉ
ମୋର ଭାଇର ବୋହୂ ଅସିଲେ,
ସେନ ଦେବ ସୁନାର କଠାଉ ।
ବାଂଶ ପତର ଠଅ ରହିଲା,
ମୋର ସଜଭୁଣୀ ନହାଇ ରହିଲା
ପଠେଇ ଥିବୁ ଲୋ ସଜଭୁଣୀ
ଖଡୁ ବାଜିବ ଟି ।
ମାଥା ନେଉଛି ସିନ୍ଦୂର ଟିକା,
ଝଣ୍ଡା ପଡ଼ିବ ଟି ।
ଝୁଣ୍ଟୁ ନୂ କୁରଣ୍ଟୁ ବାଜିର
ବଳେଇ ମାଉସୀ ଝିଅ
ଅଢ଼େଇଦନିଆ କେଳା କଦମ୍ବ
ବାଇଦ ବଜେଇ ଆ ।

Digitized by srujanika@gmail.com

## ଜହ୍ନରେ ଜହ୍ନ (କୁଜଙ୍ଗ, କଟକ)

ଜହ୍ନ ରେ ଜହ୍ନ ଭୁ ନିର୍ମଳ ଜହ୍ନ     ନିର୍ମଳ ଜହ୍ନ
ସଙ୍ଗେ ଖେଳିବାକୁ ବହୁତ ମନ     ବହୁତ ମନ ।
କେତେ ଖେଳୁଛୁ ଭୁ ଘାଟିଆ ଭାଇ     ଘାଟିଆ ଭାଇ
ଘାଟ ପାରି କର ଗଉଡ ସାହି     ଗଉଡ଼ ସାହି ।
ଗଉଡ଼ ସାହିରୁ କସ ଆଣିବ     କସ ଆଣିବ ?
ଭଲ ଭଲ ଦହି ବାଛି ଆଣିବ     ବାଛି ଆଣିବ ।
ଜହ୍ନ ରେ ଜହ୍ନ ଭୁ ନିର୍ମଳ ଜହ୍ନ     ନିର୍ମଳ ଜହ୍ନ
ସଙ୍ଗେ ଖେଳିବାକୁ ବହୁତ ମନ     ବହୁତ ମନ ।
କେତେ ଖେଳୁଛୁରେ ଘାଟିଆ ଭାଇ     ଘାଟିଆ ଭାଇ
ଘାଟ ପାରିକର କେଉଟ ସାହି     କେଉଟ ସାହି ।
କେଉଟ ସାହିରୁ କସ ଆଣିବ     କସ ଆଣିବ
ଭଲ ଭଲ ଚୂଡ଼ା ବାଛି ଆଣିବ     ବାଛି ଆଣିବ ।
ଜହ୍ନରେ ଜହ୍ନ ଭୁ ନିର୍ମଳ ଜହ୍ନ     ନିର୍ମଳ ଜହ୍ନ
ସଙ୍ଗେ ଖେଳିବାକୁ ବହୁତ ମନ     ବହୁତ ମନ
କେତେ ଖେଳୁଛୁରେ ଘାଟିଆ ଭାଇ     ଘାଟିଆ ଭାଇ
ଘାଟ ପାରିକର ଗୁଡ଼ିଆ ସାହି     ଗୁଡ଼ିଆ ସାହି ।
ଗୁଡ଼ିଆ ସାହିରୁ କସ ଆଣିବେ     କସ ଆଣିବେ ?
ଭଲ ଭଲ ଗୁଡ଼ ବାଛି ଆଣିବେ     ବାଛି ଆଣିବେ ।

## ବାରମାସୀ (ବଲଙ୍ଗା, ପୁରୀ)

ରଙ୍ଗ ରଙ୍ଗ ଧନ ଆସୁଛି ମାଡ଼ି
ମାଘ ନଅ ମାସରେ ବସନ୍ତ ପଞ୍ଚମୀ
ପ୍ରଥମେ ସେ ଯାତ୍ରା ଲାଗିଛି ଧାଡ଼ି
ଫଗୁଣ ମାସରେ ହୁଅଇ ଜାଗର
ହରିହର ଭେଟ ଧୂପ ଖେଳୁଛି ।
ଚଇତରେ ରାଧାକୃଷ୍ଣ ଯେ ମେଳଣ
ଅନେକ ପ୍ରକାରେ ଭୋଗ ସଜାଡ଼ି ।

Digitized by srujanika@gmail.com

ବୈଶାଖ ମାସରେ ଚନ୍ଦନ ଯେ ଯାତ୍ରା
ମାଳାଦ୍ର, ନଜଣ୍ଟୁ ଭଡନ ଘଡ଼
ଜ୍ୟେଷ୍ଠ ମାସରେ ସାବିତ୍ରୀ ଅମାସ୍ୟା
ବୋହୂ ସଙ୍ଗେ ଯାଏ ଦକ୍ଷିଣୀ ଶାଢ଼ୀ ।
ଆଷାଢ଼ ମାସରେ ହୁଏ ଶ୍ରୀଗୁଣ୍ଡିଚା
ଜଗନ୍ନାଥ ଗଲେ ରଥରେ ଚଢ଼ି ।
ଶ୍ରାବଣ ମାସରେ ଶତଭଜ ଯେ ଲାଗି
ଗଡ଼ଆରେ ସବୁ ଦେଲେ ଫୋପାଡ଼ ।
ଭାଦ୍ରବ ମାସରେ ଶ୍ରୀକୃଷ୍ଣ ଜନମ
ରାଣି କୋରା ସଙ୍ଗେ କଣି କାକୁଡ଼ି
ଆଶ୍ୱିନ ମାସରେ ହୁଏ ଦେବୀ ଯାତ୍ରା
ଦଶହରା ଦିନ ପାଣିରେ ପଡ଼ି
କାର୍ତ୍ତିକ ମାସରେ ହବିଷ୍ୟ କରନ୍ତି
ରାଇ ଦାମୋଦର ପୂଜଲେ ବୁଢ଼ୀ
ମଗୁଶୀର ମାସରେ ଓଡ଼ଣ ଯେ ଷଠୀ
ମଙ୍ଗଳା ତ ଘୋଡ଼ ଦୋଇଲେ ଘୋଡ଼
ପୁଷ ଯେ ମାସରେ ପୁଷ୍ୟ ଅଭିଷେକ
ଦରଶନେ ଗଲେ
ଧାଡ଼ କି ଧାଡ଼ ।

## ଡାଲି ସଂକ୍ରାନ୍ତିରେ ବୋଲାହେଉଥିବା ଗୀତ (ଉତ୍ତର ବାଲେଶ୍ୱର)

ହୁଲେ ଉ଼ଲେ ଧାନ ଫୁଲେ
ଖଣ୍ଡା ଦଣ୍ଡା ସମ ଭୁଲେ,
ଅଣସୋରିଷା ବଜରମୂଳ
ଧାନ ଫଳିବ ଖେଜୁର କୋଳ ।
ଏଣ୍ଟିଁର ଅଛି କାକୁଡ଼ି ନାଡ଼ି
ଯା'ରେ ପୋକ ଧାନରୁ ଗୁଡ଼

Digitized by srujanika@gmail.com

ଏଣ୍ଟିଁର ଅଛୁ ପୃଣ୍ଡୀ ସୂକ୍ତା
ଧାନ ଫଳବ ଗଜ ମୁକୁଟା ।
ଏଣ୍ଟିଁର ଅଛୁ ଜଟା
ଧାନ ଫଳବ ଲଟାପଟା ।
ଏଣ୍ଟିଁର ଅଛୁ ବଢ଼
ମରେଇ କରେ କଡ଼ମଡ଼ ।
ଚଣ୍ଟିଁର ଅଛୁ ଓଲ
ମହାଦେବଙ୍କର ହଣ୍ଟବାଲ ।

## ସାଧବ ବୋଇତ ମୋ (ପାରଲାଖେମିଡ଼)

ଦୋଳ ଦୋଳାଇଲ ନାଆଁ ଦେଲା ଲେ ହାସ
ବାରମାସୀ ଧାନ ପାଚଇ ସବୁ କଳାଜାର
ସବୁ କଳାଜାର୍ ଜା କା ମୁଣ୍ଡରେ ଗଣ
ବଢ଼ ମୁଣ୍ଡେ ପାଞ୍ଚ ଖଣ୍ଡୁଆ ନନା ମୁଣ୍ଡେ ସଣି ।
ମୋର ବାଡ ଅଗ୍ନିଶା ତୋର ବାଡ଼ ଲେ ଝଟା (ଶିମ୍ବ)
ସକଟା ଖେଳବୁଲେ ବାବୁ ମଧୁବନ ତୋଟା ।
ମଧୁବନ ତୋଟା ଗୃହଆଡେ ମା ବାଟ
ଗୃହ ଆଡେ ଗୃହ ଆଲଟ ମର୍ଦ୍ଦ ଦାସ ନାଚ
କ ଦାସ କ ଦାସ କୁରୁମୁଚିଆ ଦାସ
ସେ ଦାସ ନାଚେ ଚନ୍ଦ୍ରସେନା ଆଖି ଠାର ଠାର ।
ଆଖି ଠାର ଠାର ଆଖି ହେଲା ପାଖିଆ
ସବୁ ଗୁଣେ ପୁଅ ପାଇଲୁ ଜାତି ପାନଖିଆ ।
ଜାତି ପାନଖିଆ ଓଠେ ନାଇଁ ମା ରଙ୍ଗ
ଡ଼ ଆଇଚ ପାନଖିଆ ବୋଇତର ମଙ୍ଗ
ବୋଇତର ମଙ୍ଗ, କଏ ଧକଇ ଖଜା ?
ସାଧବ ବୋଇତ ମୋ ବାବୁ, କଳଙ୍ଗର ରଜା ।
କଳଙ୍ଗର ରଜା କଳଙ୍ଗର ମା ନାତି
ତୋହର ବାଟେ ଚଳଇବ ଯୋଡା ପାଟହାଣ୍ଡି

Digitized by srujanika@gmail.com

ଯୋଡ଼ା ପାଟଦାଣ୍ଡି କିଏ ଭଙ୍ଗଇ ଡାଳ ?
ଅତି ସୁକୁମାର ମୋ ବାବୁ ଗଲେ ଫୁଲମାଳ ।

## ପଦ୍ମତୋଳା (ପଟିଆ, କଟକ)

ବଂଶର ଘରଣୀ ପଦ୍ମାବତୀ ରାଣୀ
ସେ କରେ ଧନନ୍ତର ଓଷା
ଲକ୍ଷେ ଘର ପଡ଼ୁ ଦେବୁ କି କହାଇ
ନ ଥିବ ପାଖୁଡ଼ା ମିଶା କି ଗୋବନ୍ଦ ହରେ ।
ନେଟେଇ ଧୋବଣୀ
ସୁକୁଟୀ ଚମାରୁଣୀ
ବାଙ୍କି କେଉଟୁଣୀ
ପଦ୍ମ ସଉରୁଣୀ
ବୃଣ ଗୁଣ୍ଡୁ ଧର୍ପ ଫେଲୋଜାଣ ତୋଟେ
କି ଗୋବନ୍ଦ ହରେ ।
ମାତା ଗୋ ଯଶୋବନ୍ତୀ କାନ୍ଦ କହୁଛନ୍ତି
ପ୍ରୀତ ଦେ କି ବର୍ଣ୍ଣି ବନିତା ?
ଆମର ଶତ୍ରୁ ଆସି ଗୋପରେ ଜାତ ହେଲେ
ଶତ୍ରୁକୁ କେମନ୍ତେ ମାରିବା କି ଗୋବନ୍ଦହରେ ।
ମଞ୍ଚାରୁ ପଡ଼ ମାମୁଁ ମଲ
ମୋତେ ତ ଦଇବ ରଖିଲ
ମାମୁଁର ଲାଗି ମାଇଁ କାନ୍ଦୁଚୁ କାହିଁ ପାଇଁ
ମାମୁଁର ବଦଳ ମୁହିଁ କି ଗୋବନ୍ଦ ହରେ ।
ରନ୍ନ କଠାଉ ମାଡ଼ି ଭଉନ୍ନ ବଂଶୀଧାରୀ
ରାଧିକା ସଙ୍ଗେ କଲେ ରଙ୍ଗ
ପିତା ଯେ ବୋଲକର ରାଜାରେ ବାସୁଦେବ
ନଗ୍ରରୁ ହୋଇଲେ ବାହାର
ବାଟେ ବା ଯାଇ ଭେଟିଲେ ଉଗ୍ରସେନ
ଅମୃତ କଟଲେ ବଷଣର କି ଗୋବନ୍ଦ ହରେ ।

Digitized by srujanika@gmail.com

ଷୋଳଶ ଉମ୍ବତ୍ସରେ ବଧମାନ କ ବରଷିଲ
ଅଷ୍ଟବ କପାଳକୁ ଭେଦିଲ
ଷଷର ଜାଳାରେ ମେଦମା କମ୍ପିଲ
ବରୁଣ କାଳନ୍ଦୀରେ ଯାଇ କ ଗୋବନ୍ଦ ହରେ ।
ନ ଯା ଲୁ ପୁଷ୍ପ ତୋଳ
ବାପରେ ବନମାଳୀ
କାଳନ୍ଦୀ ଅଛୁ କାଳୀ
ମୋ ବାପ କି କାଳଆ ସୁନା
କାଳନ୍ଦୀ ହ୍ରଦକୁ ତୁ ନ ଯା କ ଗୋବନ୍ଦ ହରେ ।
ହ୍ରଦକୂଳେ ବୃକ୍ଷ ପେଟେ
ପଥ ବନ୍ଧୁନେ ସମସ୍ତେ
ନବ ସ୍ୱପ୍ନ ଯାଏ ଝାଉଁଳ
ଶିଖର ପଡିଲେ ଯାଏ ଜଳ କ ଗୋବନ୍ଦ ହରେ ।
ପଦ୍ମରେ ନ ଲଗିବ ଧୂଳ ,, ,,
ଧଣ୍ଡ କ ଜାଣନ୍ତି ଖେଳ
ନାଗ ଜାଣନ୍ତି ଶ୍ରୀ ଶଙ୍କର ବାଣୀ
ଗୋବର ଗଡ଼ଆରେ କର୍ପୂର ଦେଲେ ଗୋଳ
ସେ ହେବ ଗଙ୍ଗାଜଳ ପାଣି କ ? ଗୋବନ୍ଦ ହରେ ।

× × ×

ଭାଦ୍ରବ ମାସରେ ମହାପ୍ରଭୁଙ୍କ ଜନମ
ପାପେ ଶଙ୍କା କଲେ ଦୂର
ଦେଖିଣ ମଲ୍ଲ କଂସ ନ ଦେଖି ଦଶରଥ
ନ ଦେଇ ମଲ୍ଲ ସ୍ୱବଣ
ପୂତନା ପ୍ରାଣେ କଲେ ହତ
କ ଗୋବନ୍ଦ ହରେ ।
ଅଶ୍ୱିଣ ମାସରେ କୁଆଁରଆ ଜହ୍ନ
ଜହ୍ନ ଖେଳବେ ରାଧାଙ୍କର ମନ

Digitized by srujanika@gmail.com

କଅଁଳା ଝୁଅ ସଙ୍ଗେ
ଜୁଅ ଖେଳିବେ ରଙ୍ଗେ
ଅନ୍ଧକୁ ଦେଲେ ଚକ୍ଷୁଦାନ କି ଗୋବର୍ଦ୍ଧନ ଧାରୀ ।

## ଚଇତ୍ର ଶୁକଳ ଦ୍ୱିତୀୟାଦିନ (ମଞ୍ଜୁଷା)

ଚଇତ୍ର ଶୁକଳ ଦ୍ୱିତୀୟା ଦିନ
ସେ ଦିନ ଚନ୍ଦ୍ରର ନିର୍ମଳ ଜହ୍ନ
ନନ୍ଦର ବାଟୁଳି ବୃକ୍ଷର ଛାଇ
ଜହ୍ନ ପଡ଼ିଅଛି ନିର୍ମଳ ହୋଇ
ଅଗଣା ମଝିରେ ନନ୍ଦ ଯୁବତୀ
ପୁଅ କାଖ କରି ଘରେ ବୁଲନ୍ତି ।
ଆସ ଗୋ କମଳା ବସ ଗୋ ଯାଇ
ବଚନ କହିଲେ ପାଶେ ବସାଇ ।
ତମର ଦୁଃଖକୁ ଆମର ଦୁଃଖ
ବାଲିକୁଦାଟାକୁ ଲଗିଛି ରଥ ।

## ତୋ ସଙ୍ଗେ ଖେଳିବ ମୋ କାହ୍ନୁ ପୁଅ (କୁଜଙ୍ଗ, କଟକ)

ତୁ ନନ୍ଦ ଗୋବିନ୍ଦ ଏତେ ଅଝଟ
କାଲି ଗଢ଼ିଦେବି ସୁବର୍ଣ୍ଣ ଚାନ୍ଦ
ସୁବର୍ଣ୍ଣ ଚାନ୍ଦରେ ମୋ କାର୍ଯ୍ୟ ନାହିଁ
ସ୍ୱର୍ଗଚାନ୍ଦ ଦେଲେ ଖେଳିବ ମୁହିଁ
ଭାତ ଦେଲେ ଭାତ ଖାଇବ ନାହିଁ
ଦୁଧ ଦେଲେ ଦୁଧ ପିଇବ ନାହିଁ
ସ୍ୱର୍ଗ ଚାନ୍ଦ ଦେଲେ ଖେଳିବ ମୁହିଁ ।
ଆ ଆ ଜହ୍ନମାମୁଁ ଶରଦ ଶଶୀ
ମୋ କାହ୍ନୁ କୋଳରେ ପଡ଼ ଖସି
ସରଗରୁ ଆସି ମଞ୍ଚରେ ବଅ
ତୋ ସଙ୍ଗେ ଖେଳିବ ମୋ କାହ୍ନୁ ପୁଅ ।

Digitized by srujanika@gmail.com

## ସବୁ ଦୁଃଖ ଦେଇଗଲୁ (ଭେଡ଼ା, କଟକ)

ମାଛଟିଏ ପୋଡ଼ିଥିଲି ଛିଣ୍ଡିଗଲା ସୂତ
ରାମ ବେଏସ ମରିଗଲା ନଣ୍ଡଆଡ଼ରେ ପୋତ
ତା ମାଇପ କାନ୍ଦୁଅଛି ଗୋଟସେଇଁ ଗୋଟସେଇଁ
ସବୁ ଦୁଃଖ ଦେଇଗଲୁ ପିଣ୍ଡାରେ ବସାଇ ।

## ଆମ୍ବ ବଉଳିଲା (ଭେଡ଼ା, କଟକ)

ଆମ୍ବ ବଉଳିଲା ଜାମୁ ବଉଳିଲା କରଞ୍ଜ ବଉଳ ହେଲା
ଲୋ ରଙ୍ଗ ଟୁବୁ ଟୁବୁ
ଘାଇ ଚଣ୍ଡାଳଆ ବ୍ରହ୍ମ ଚଣ୍ଡାଳଆ ନଣ୍ଡକୁ ଗାଧୋଇ ନେଲା
ଲୋ ରଙ୍ଗ ଟୁବୁ ଟୁବୁ ।

## ଫଟା ଢୋଲଘଡ଼ି (ଭେଡ଼ା, କଟକ)

ଫଟା ଢୋଲଘଡ଼ି ବାଜେ ଗିଡ଼ିଗିଡ଼ି, ମଦନା ଯାଇଛି ବାଗୁଡ଼ି ଖେଳ ।
ବାଗୁଡ଼ି ଖେଳରୁ ଆସିଲା ଧାଇଁ, ପାନଚୂନ ଦେଲି ଖାଇଲା ନାହିଁ ।
ଉଠ ମଦନା ଖୋଲ ଛତା, ଆମେ ଗୁଲପିବା କଲିକତା
କଲିକତାରେ ନୂଆ ଦୁକୁଟା, ନୂଆବୋହୁ ମୋତେ କାଦଣା ଶିଖା ।

ଶୁଣିଲେ ସଖି ! ବଉଳମୂଳକୁ
ଚାଲ ପଡ଼ୁଥ ଇ କଙ୍କାଳ ମୂଳକୁ ।
ନେପଛନ୍ତୁ ଛୁଇଁ ଲୁ ନୃପତି ଅଙ୍ଗ
ଫୁଲ ବାଜି କ ବଧେଇ ଦବ ।

## ଅଉଗଛ ମୂଳେ

ଅଉଗଛ ମୂଳେ ବଜ ମ ଛେଳା
ଫାକଲା ଗାମୁଛା ତଳେ ପଇଲା
ଗୁହାଳ ଘରେ ଗାଈ ବେଇଲା
କେଉଁଠା ଅଣ୍ଡି ସ କେଉଁଠା ମାଈ
କହି ଦେବୁଟିରେ ଗୋପାଳ ଭାଇ ।

Digitized by srujanika@gmail.com

## ଗୋଡ଼ ଲମ୍ବାଲମ୍ବି (ଭେଡ଼ା, କଟକ)

ଗୋଡ଼ ଲମ୍ବାଲମ୍ବି କଜଳପାତି
ଝିଅ ଲୋ ମାଉସୀ ଭଙ୍କ ଝିଉଟି
କଦଳୀ ବାଡ଼କୁ ଯିବୁ ନାହିଁଟି ।
କଳା କୁମ୍ଭଟିଆ ବସିଥିବଟି
କାନ୍ଧରେ ବସେଇ ନେଇ ଯିବଟି ।

## ରଜାଙ୍କ ବୋହୂ, କେଡ଼େ ବାନ୍ଧାଣି (ପୁରୀ)

କଳ ଲୋ କଳା ନାକରେ କଳ
କାଲି ଆଣିଦେବି ସରୁ ଚକୁଳି
ସରୁ ଚକୁଳିର ଉପରେ ମହୁ
ମୋତେ କୋଲୁଥିବେ ବଡ଼ଘର ବୋହୂ
ଘାସ କାଟୁ କାଟୁ ରଜାଙ୍କ ବୋହୂ ।
ରଜାଙ୍କ ବୋହୂ କେଡ଼େ ବାନ୍ଧାଣି
ଟେକ ଧରିଥିବ ସପଚଣୀ ।
ଘାସ ଖୋଜ ଖୋଜୁ ପାଇଲ ଗାତ
ଗୃର ନେଇଗଲା କଜ୍ଜଳପାତି
ଅଲଣା କଳନା ବୋଲଣା କଲ
ମୁଣ୍ଡ ପୋତି ପୋତି ସ୍ନାହାନ କଲ ।

## କାଆଲି ନେବ କି ପମ (କଟକ)

କୁଆଁର ପୁନେଇ ଜହ୍ନ ଗୋ ସଙ୍ଗାତେ
ଲିଆ ଖାଇବାକୁ ମନ କି ସଙ୍ଗାତେ
ସମସ୍ତେ ପିନ୍ଧିଲେ ପାଟପଟଣୀ ମତେ କଲେ ହ୍ଲାନମାନ କି
ସଙ୍ଗାତେ ।
ହଳଦି କାଠୁଆ କମ କି ସଙ୍ଗାତେ
ହଳଦି କାଠୁଆ କମ

Digitized by srujanika@gmail.com

ଆଜ ଲଗାଇବ କଜ୍ଜଳ ସିନ୍ଦୂର
କାଆଳକ ନେବ ଯମ କ ଏଙ୍ଗାଚେ ।

## ଉଠ ଉଠ କାହ୍ନୁ କେଶବ (କଟକ)

ଉଠ ଉଠ କାହ୍ନୁ କେଶବ ହରି
ଗୋ ଗୋଷ୍ଠକୁ ଯିବ ବାଛୁରି ଧରି
ବାଛୁରିଯାକ ଯେ ଅଥିର ହେଲେ
କ୍ଷୀର ନ ପାଇଣ ଗମ୍ଭୂର ଗଲେ
ବୃଅଯାକ ସବୁ ଅଗଣା ପୂରି
ଶୂନ୍ୟ ମଣ୍ଡଳକୁ ଡାକନ୍ତି ହରି ।

## ଘରେ ନାହିଁ ଭାତ (ବରପଦା, କଟକ)

ରୁକ୍ମିଣୀ ଚଳାଇ ରାଧା ପକାଇ ଦେଲି ଗୋଡ଼ି
କି ସୁନ୍ଦର ପାରା ଯୋଡ଼ିକ ଯାଉଛନ୍ତି ଉଡ଼ି
ଆସ ଆସ ପାରା ଯୋଡ଼ିକ ମୋ ପିଣ୍ଡାରେ ବସ
ଖାଇବାକୁ ଦେବି ତୁମକୁ ନଡ଼ିଆର ରସ
ପିଇବାକୁ ଦେବି ତୁମକୁ ନେଣ୍ଟେ ପୋଖରୀ ପାଣି
ଶୋଇବାକୁ ଦେବି ତୁମକୁ ମାଳୀଘର ଖଟଣି ।
ମାଳୀ ଘର ଖଟଣିରେ ବାଆଁଶ ପାଟିଆ
ମାଆ ଗୋଡ଼ ଝିଅ ଗୋଡ଼ ରତନ ଝୁଣ୍ଟିଆ ।
ସାଙ୍ଗ ପରୁଚେଲ ଶୁଆ କୋଉ ଦାଣ୍ଡରେ ଯିବା ?
ଶୁଆ କହିଲା ସାଙ୍ଗ ଗୋ ସରଗ ଦାଣ୍ଡେ ଯିବା ।
ସରଗ ଦାଣ୍ଡେ ଯାଉଁ ଯାଉଁ ପାଇଲୁ ରୁପାବଳା
ସେଇ ରୁପା ବଳା ପାଇ ଟଳା ଛେଳି ପାଇଁ
ସବୁ ଛେଳି ଚରୁଛନ୍ତି ମାଣିକ ଛେଳି ନାହିଁ ।
ମାଣିକ ଛେଳି ଯାଇଅଛି ଡୁବୁଡୁବା ବଣରେ
ରଜାପୁଅ କାନ୍ଦୁଅଛି ବନସ୍ତ ଭିତରେ
ଏକାଦିନେ ଏକାଦଶୀ କରେ ଶ୍ରୋଳନାଥ
ଗୋବିନ୍ଦଚନ୍ଦ୍ର କାନ୍ଦୁଅଛି ଘରେ ନାହିଁ ଭାତ ।

Digitized by srujanika@gmail.com

## ଅନେକ ମାଡ଼ ମରାଇଲେ (ବରପଦା, କଟକ)

ଅଭୁଲ ଜନ ଜନ କେରା
ଶଶୁର ଗାଆଁରେ ବେଢେରା
ଶାଶୂ ଯେ କୋଠା ନାହାକାଣୀ
ନଣନ୍ଦ ପରଘର ଖଟଣି
ଦିଅର ପାଟ ଲଙ୍ଗଳିଆ
ଗେରସ୍ତ ଚଢ଼େଇ ଝିନୋଦିଆ ।
ସେ ଆଣିଥିଲା ଶଙ୍ଖଚଳ
କଲି ମୁଁ ପିତା କ ବେଶର ।
ତାକୁ ଦେଖିଥିଲା ନଣନ୍ଦ ରାଣ୍ଡ
କହିଲା ବାପାଙ୍କ ଆଗର
ବାପା ଡିନ୍ଦୁଳି ଗୁଣ୍ଟ କଟାଇଲେ
ଅନେକ ମାଡ ମରାଇଲେ ।

## ଲୁହ ଯେ ଦେବେ ଛଳ ଛଳେ (ବରପଦା, କଟକ)

ରେ କାକପୋଇ,
ମୋ ଭାଷା ନେଇ
ବାପାଙ୍କ ସେବା କଲାବେଳେ
ମାତାଙ୍କ ଧାନ ଘଣ୍ଟା ବେଳେ
ଭାଇଙ୍କ ହଳ ଫିଟା ବେଳେ
ପକାଇ ଦେବୁ ପାଦ ତଳେ
ଲୁହ ଯେ ଦେବେ ଛଳ ଢ଼ଳେ ।

## ବୋଉକୁ ବୋଧ କର (ବରପଦା, କଟକ )

ମଧୁବନ ତୋଟା ଗଲା ପତ୍ର ଖର ଖର
ତେଣୁ ଆସେ ବରଘର ଦେହ ଥର ଥର ।
ବାପ ବୋଲେ ଝିଅ ମୋର ବାର ବରଷର
ମାଆ ବୋଲେ ଝିଅ ମୋର କୋଠାକୁ ସୁନ୍ଦର ।

Digitized by srujanika@gmail.com

ଭାଇ ବୋଲେ ଭଉଣୀ ମୋ କଣ୍ଠପାଖେ ଥାଅ
ଭାଉଜ ବୋଲେ ନଣନ୍ଦ ଚଣ୍ଡୀ ଦୂର ଦେଶେ ଯାଅ ।
ଦୂର ଦେଶେ ଗଲେ ଚଣ୍ଡୀ କିଛୁ ଯେ ନ ପାଅ
କଣ୍ଠ ପାଖେ ରହିଲେ ଚଣ୍ଡୀ ସବୁ ବୋଝ ଖାଅ ।
ଆଗରେ ଯାଉଛି ହାମ୍ ସୁଆସ
ପଛରେ ଯାଉଛି ଢୋଲ
ବାପା, କାହିଁକି କାନ୍ଦୁଛ ?
ବୋଉକୁ ବୋଧ କର ।

## ଚମ୍ପାଫୁଲଟିଏ ପାଇଲି (ବଉପଦା, କଟକ)

ଚମ୍ପାଫୁଲଟିଏ ପାଇଲି ସେତ ହଳଦମସ୍ତେ
ଶିବ ଦେଉଳରେ ରହିବ କାନ୍ତ ଆସିବାଯାଏ ।
କାନ୍ତ ଆସି ଅଧବାଟରେ ମୁଁ ତ ଜାଣଇ ନାହିଁ
ତୁମେ ତ ଯାଉଛ ବଗଳା ମତେ କାହାକୁ ଦେଇ ?
ସବା ସାନ ଭାଇ ଗୋବନ୍ଦ ଧନ ନେବ ବଞ୍ଚାଇ ।
ଫୁଲରୁ ପଇଲ କସ ଗୋ ସେତ ଚେନ୍ଲି ବସ୍ତ୍ର
ଧନମଣି ଘରେ ନାହାନ୍ତି ଖଟ ପଡ଼ିଛି ଛୁଞ୍ଛା ।
ବାହା ହେଇଥିଲି ପବା ହେ ହାଡ଼ ଭସାଇ ଦେଲି
ଉବାଟ ଜାଳାରେ ଛାଡ଼ି କି କାନ୍ତ ବଦେଶ ଗଲି ?

## ରତ୍ନ ପଲଙ୍କରେ ବସି (କଟକ)

ପୋଖରୀ ଖୋଳାଇ ସ୍ୱାମୀ ଗୃହପାଖେ ଘାସ
ଡାଳିମ୍ବ ଲଗାଇ ସ୍ୱାମୀ ଗଲେ ପର ଦେଶ ।
ଡାଳିମ୍ବ ପାଚଲ ସ୍ୱାମୀ ମୃରତ ଦଶିଲ
ଏ ଯୁବା ବୟସେ ସ୍ୱାମୀ ଉଦାସ ହସିଲ ।
ଅମ୍ଭ ସେ ପଣସ କଅ ମାଡ଼ିଗଲା ଛାଇ
ନାରୀ ଅବଳା ମୁଁ କେତେ ସହିବ ଗୋ ରହି ।

Digitized by srujanika@gmail.com

ଛେଳିବାଳ କଳା ଧଳା ମେଣ୍ଢାବାଳ କଳା
ଏଠେ ବଡ଼ ବନ ଡଳନ୍ଧ ଝଛଣାରେ ଗଲା ।
ପୁଷ୍ପଗଲା ଫାଟି ଫୁଟି ଫଳ ଗଲା ନାଶ
ଜାଣିଲି ମୁଁ ସ୍ୱାମୀ ମୋର ନଦୟା ପୁରୁଷ ।
ଏ ଛାର ପୁରୁଷକୁ ନାହିଁ ମୋର ଆଶ ।
ଆଣ ସ୍ୱାମୀ ଦୁଲ୍ଲ ଗଉଡ଼ ପିଷ ବାପ ଘର
ବାପଘର ଯାଇ ରାଣୀ କି ସୁଖ ପାଇବୁ ?
ରତ୍ନ ପଲଙ୍କରେ ବସି ମୋତେ ଭାଳୁଥିବୁ ।

## କାଞ୍ଜିଗୀତ (କୋରାପୁଟ)

ରାମ କାଞ୍ଜିକ ଭଜ କାଞ୍ଜି
ଆଳୁ ବାଇଗଣ ଝୁଂଠା ମଞ୍ଜି
ଚହୁଁ କାଞ୍ଜି ଗଲା ଚରେ
ଯାଇ ପଶିଲା ଭଣ୍ଡାରୀ ଘରେ
ଭଣ୍ଡାରୀ ଘରେ ଖୁର ମୁଠି
କାଞ୍ଜି ପଳାଇଲା ସଜାଡୁ ଝଠି
ଚହୁ କାଞ୍ଜି ଗଲା ଚରେ
ଯାଇ ପଶିଲା କୁମୁଟି ଘରେ
ଏଣେ କୁମୁଟି ତେଣେ କୁମୁଟି
କାଞ୍ଜିର ପିଲ୍ଲକୁ ଦେଲେ ଚିମୁଟି
ଚହୁଁ କାଞ୍ଜି ଗଲା ଚରେ
ଯାଇ ପଶିଲା ବଢେଇ ଘରେ
ଏଣେ ବଢେଇ ତେଣେ ବଢେଇ
କାଞ୍ଜିକ ଦେଲେ କାଠ ମଡ଼ାଇ
ଚହୁଁ କାଞ୍ଜି ଗଲା ଚରେ
ଯାଇ ପଶିଲା କେଉଟ ଘରେ
ଏଣେ କେଉଟ ତେଣେ କେଉଟ
ଜାଲ ଦେଖି କାଞ୍ଜି ଛଟପଟ

Digitized by srujanika@gmail.com

ଚନ୍ଦୁଁ କାଞ୍ଜି ଗଲାତରେ
ଯାଇ ପଶିଲା ମାଳୀ ଘରେ
ଏଣେ ମାଳୀ ତେଣେ ମାଳୀ
କାଞ୍ଜିକୁ ଦେଖି ଦେଲେ ଗାଳି
ଚନ୍ଦୁଁ କାଞ୍ଜି ଗଲା ତରେ
ଯାଇ ପଶିଲା ଓଡ଼ିଆ ଘରେ
ଏଣେ ଓଡ଼ିଆ ତେଣେ ଓଡ଼ିଆ
କାଞ୍ଜିକୁ ଦେଖିଲେ ଧକଡ଼ିଆ
ଚନ୍ଦୁଁ କାଞ୍ଜି ଗଲା ତରେ
ଯାଇ ପଶିଲା ସାରୁଆ ଘରେ
ସାରୁଆ ଘରେ ସାରୁଗାଛ
କାଞ୍ଜି ପିଠିରେ ମାଇଲେ ହାତ
ଚନ୍ଦୁଁ କାଞ୍ଜି ଗଲା ତରେ
କାଢ଼ କନ୍ଦିଲା ରଜା ଘରେ
ରଜା ଘରେ ବଡ଼ ମଜା
କାଞ୍ଜିକୁ କଲେ ଭିଆ ପରଜା
ଚନ୍ଦୁଁ କାଞ୍ଜି ଗଲା ତରେ
ଯାଇ ପଶିଲା ବ୍ରାହ୍ମଣ ଘରେ
ବ୍ରାହ୍ମଣ ଘରେ ଛତା ପଇତା
କାଞ୍ଜିକୁ କଲେ ଘର ଘଇତା ।

## କହୁଥିଲେ ଆଣି ଥାଆନ୍ତ (କଟକ)

ନଣ୍ଡ ତଳେ ଅଟେଇ ନା ନଣ୍ଡତଳେ ଅଟେଇ
କନ୍ଧ ବୁଢ଼ା ମରିଯାଇଛି କଙ୍କାଳ ଫଟାଇ
ଗଚ୍ଛେଇ ଗଛର ଗୁଇ ନା ଗଚ୍ଛେଇ ଗଛର ଗୁଇ
ତୋ ଦୁଆରକୁ ମୋ ଦୁଆର ଆଖିଠାର କଲା ବାଇ
ଯାଇଥିଲି ଝିଲ ନା ଯାଇଥିଲି ଝିଲ
କହିଥିଲେ ଆଣିଥାନ୍ତି ବାସୁଧାନଫୁଲ

Digitized by srujanika@gmail.com

ଯାଇଥିଲି ଗାଆଁ     ପାଇଥିଲି ଟାଆଁ
କହିଥିଲେ ଆଣିଥାଆନ୍ତି ଚକା ଚକା ମୁଆଁ
ଯାଇଥିଲି ଚୋଟା ନା ଯାଇଥିଲି  ଚୋଟା
କହିଥିଲେ ଆଣିଥାଆନ୍ତି କଇଁଫଳ ମେଣ୍ଟା ।

## ପିଞ୍ଜରୀ ପିଞ୍ଜା (କୋରାପୁଟ)

କନ୍ଧ ପୁଅ ନାଁ ଜଙ୍ଗା ନା କନ୍ଧପୁଅ ନାଁ ଜଙ୍ଗା
କଟୁରି ନାହିଁକି ଟାଙ୍ଗିଆ ନାହିଁ ଖୋଳି ପକାଉଛି ଟଙ୍ଗା
ନା ପିଞ୍ଜରୀ ପିଞ୍ଜା
ପିଲ  ନଷ୍ଟ ମଲ୍ଲୀଫୁଲ ଖଞ୍ଜାନା
ପିଞ୍ଜରୀ ପିଞ୍ଜା
ବାର ବେଗୁନିଆ ଝାଟି ନା ବାରବେଗୁନିଆ ଝାଟି
ଧାନକୁଟା ପାଣିଅଣା ବଷମ ପାଇଟି ନା
ହେଲେ ହେଲି
ପିଲଟିକି ଯାଙ୍କ ଦେଉ ମଲି
ନା ପିଞ୍ଜରୀ ପିଞ୍ଜା
ବାରପୋକଶୁଙ୍ଘା ମଲି ନା ବାର ପୋକଶୁଙ୍ଘା ମଲି
ଟୋପୋକମୁହାଁ ପଚ୍ଛୁରୁଥିଲି ସରୁମୁହାଁ କେଣେ ଗଲି
ନା ପିଞ୍ଜରୀ  ପିଞ୍ଜା
ପିଲନଷ୍ଟ ମଲ୍ଲୀଫୁଲ  ଖଞ୍ଜା
ନା ପିଞ୍ଜରୀ ପିଞ୍ଜା ।

## ରାମ ରାମ

ରାମ ରାମ, ମକାକୁ ନାହିଁ କଡ଼ାକର ନାମ ।
ହରେ ହରେ, ପିଚାଶୁଖୁଆ ଘରେ ଘରେ
ପନକ ପଟା, ବାବାଜୀ ଆସିଲେ ଦୁଆର ଫିଟା
ବାଇଗଣ ଭୁଣ୍ଡି, ବାବାଜୀ ଆସିଲେ ଦୁଆର ଉଣ୍ଡି
କଖାରୁ ଫେପି, ବେଳ ଜାଣିକରି ଗଡ଼ିଲେ ଗୋପୀ ।

Digitized by srujanika@gmail.com

ବାଡ଼ି, ଢୋଲଖାଏ ମାଡ଼ ହାଡ଼ଖାଏ କଜନ୍ତ ।
ନଶ, ବ୍ରାହ୍ମଣ କରନ୍ତ କୁଶ ।

## ଅଲସୀ (ମେଦିନୀପୁର)

ମୁଁ ତ ଏଡ଼େ ଅଲସୀ
ଅଳ୍ପ କଥାରେ ଯାଉଛୁ ରୁଷେ ରୁଷ
ଛଡ଼ା ଢଟେ (ଘଣ୍ଟିପାର) କହିଲ ଶାଶୁ
ପାର ତ କର ଲିଅ
ମୋର ବାପର ଘରେ ଛଡ଼ାଢଆ ନାଇଁ
ଗୃକଗଣୀ ରବାର ଘର ଝିଅ
ଥାଳା ମାଜତେ କହିଲ ଶାଶୁ
ପାର ତ କର ଲିଅ
ମୋର ବାପର ଘରେ ଥାଳା ମାଜା ନାଇଁ
ପତରଖିଆ ଘର ଝିଅ ।
ଘଟି ମାଜତେ କହିଲ ଶାଶୁ
ପାର ତ କର ଲିଅ
ମୋର ବାପର ଘରେ ଘଟି ମାଜା ନାଇଁ
ଠେକରେ ଜଳଖିଆ ଘର ଝିଅ ।
ଛଞ୍ଚ ଦିତେ କହିଲ ଶାଶୁ
ପାର ତ କର ଲିଅ
ମୋର ବାପର ଘରେ ଛୁଞ୍ଚ ଦିଆ ନାଇଁ
ପାକା (ପକା) ଘରଆ ଝିଅ ।
ଗାଣ୍ଡି ଦୁହିଁତେ କହିଲ ଶାଶୁ
ପାର ତ କର ଲିଅ
ମୋର ବାପର ଘରେ ଗାଣ୍ଡିଦୁହାଁ ନାଇଁ
ନଗୋରୁଆ ଘର ଝିଅ ।
କାପଡ଼ କାଚତେ କହିଲ ଶାଶୁ
ପାରତ କର ଲିଅ

Digitized by srujanika@gmail.com

ମୋର ବାପର ଘରେ କାପଡ଼କନ୍ଥ ନାଇଁ
ଧୋବା ଧରୁ ଘର ଝିଅ ।

## କାର୍ତ୍ତିକ ସ୍ନାନର ଗୀତ

(ପୋଖରୀ ତୁଠରେ ସ୍ତ୍ରୀ ଲୋକମାନେ ବାଲୁକାର ବରଗଛ ଗଢ଼ି ଏହାକୁ ପୂଜା କରିବା ସମୟରେ ଏହି ଗୀତ ବୋଲନ୍ତି )

### କି ଫୁଲ ତୁଳୁ ତୁ (କାନ୍ଥି, ମେଦିନୀପୁର)

କି ଫୁଲ ତୁଳୁ ଲୋ ଶିଳ୍ପ ମାଳପୁଣୀ
ସେ ଫୁଲଟି ନାମ କଇଁ
ସେ ଫୁଲ ଘେନ ମୁଁ ନିରଞ୍ଜନକୁ ଯିମି
ଅମର ହଜ ଝିଅ ଜୁଇଁ ।
କି ଫୁଲ ତୁଳୁ ଲୋ ଶିଳ୍ପ ମାଳପୁଣୀ
ସେ ଫୁଲଟି ନାମ ଧ୍ୱଜା
ସେ ଫୁଲ ଘେନ'ମୁଁ ନିରଞ୍ଜନକୁ ଯିମି
ଅମର ହଜ ରାଜ୍ୟର ରଜା ।
କି ଫୁଲ ତୁଳୁ ଲୋ ଶିଳ୍ପ ମାଳପୁଣୀ
ସେ ଫୁଲଟି ନାମ କଳା
ସେ ଫୁଲ ଘେନ ମୁଁ ନିରଞ୍ଜନକୁ ଯିମି
ଅମର ହଜ ମୋ ବଳା
କି ଫୁଲ ତୁଳୁ ଲୋ ଶିଳ୍ପ ମାଳପୁଣୀ
ସେ ଫୁଲଟି ନାମ ବଣ
ସେ ଫୁଲ ଘେନ ମୁଁ ନିରଞ୍ଜନକୁ ଯିମି
ଅମର ହଜ ମୋ ପଣ ।
କି ଫୁଲ ତୁଳୁ ଲୋ ଶିଳ୍ପ ମାଳପୁଣୀ
ସେ ଫୁଲଟି ନାମ ଚରୁ
ସେ ଫୁଲ ଘେନ ମୁଁ ନିରଞ୍ଜନକୁ ଯିମି
ଅମର ହଜ ମୋ ଗୁରୁ ।

Digitized by srujanika@gmail.com

## ମହାପ୍ରଭୁ ଆସିବେ ବୋଲି (କାନ୍ଥି, ମେଦିନୀପୁର)

ମହାପ୍ରଭୁ ଆସିବେ ବୋଲି ଦେଇଅଛୁ ଝୁଣ୍ଟି
ମହାପ୍ରଭୁ ଆସୁଛନ୍ତି ଋଷଭଗ ଘୋଟି
ମହାପ୍ରଭୁ ଆସିବେ ବୋଲି ଦେଇଅଛୁଁ ଅର୍ଘ୍ୟ
ସବେ କ ମହାପ୍ରଭୁ ଯିବ ମୂର୍ତ୍ତି ସ୍ୱର୍ଗ ।
ମହାପ୍ରଭୁ ଆସିବେ ବୋଲି ଦେଇଅଛୁ ଛଡ଼ା
ମହାପ୍ରଭୁ ଆସୁଛନ୍ ଯୁଡ଼ି କରି ଘୋଡ଼ା ।

## ନାମଦେବେ ଅଇବନ ବାଲା (କେଉଁଝର, ଭୂୟାଁ ମାନଙ୍କର)

ଢୂରୁଢୁରୁଣି ପାଣି, ମାଯ୍ଁା ଢୁରୁଢୁରୁଣି ପାଣି
କେଠେ ଗୋ ମାୟା ନଦ ପାଉଛ
ଆସି ପଡ଼ିଲୁ
ବାସି ଦୁଆରେ ପଡ଼ିଥିଲ ଚନ୍ଦନର ଛସ
କେରେ ଗୋ ମାୟା ନଦ ପାଉଛ ?
ଆଗିଲ ଆଡ଼େ ଗାଈ ଗୁହାଳ

ପଛିଲ ଆଡ଼େ ଧାନ ମଡାର
ମଝିରେ ଘୂରନ୍ତି ହଂସ ଫରଆ

ଆମର ବାଳା ଚନ୍ଦନ ସାରବେ
ଚନ୍ଦନ ସାରି ଗଇଜ କରବେ
ଗଇଜ କରି ପୁଅ ଧରବେ
ପୁଅ ଧରି ଭଲ ରହିବେ
ନାମ ଦେବେ ଅଇବନ ବାଳା
ନାମ ଦେବେ ଦୁପଟ୍ଟି ବାଳୀ ।

## ଖୋସାଟି ଭିତରେ ଖୋଷିରଖିବି ମୁଁ

ସଅତ କହିଲୁ ନାଗର ବର ତୋ ବାଆଁ ହାତ ରୂପାବଳା
ଦଅନ୍ତେ ରହନ୍ତୁ ପାଆଣି ଖାଆନ୍ତୁ ପୋଖରୀ ହୋଇତ ଗୋଳା ।

Digitized by srujanika@gmail.com

କ ଦଣ୍ଡେ ରହିବ କ ପାଣି ଖାଇବ ନୁହଁକ ଆପଣା ଦେଶ
ରେତର ଖଣ୍ଡ ପରି ହାତେ ପକାଇବ କଟାଇବ ଘୋଡ଼ା ଘାସରେ ।
କେ ଚୋର ଅଇଚ କେ ଚୋର ବଇଶ କିଏ କାଟିବ ତୋ ଶିର
ଖୋପ ଟି ଭଳରେ ଖୋସି ରଖିଛ ବୋଲଇ ମୁ ମଲ୍ଲୀ ଫୁଲରେ ।
ତୁ ସିନା କଇଲୁ ଖୋସାରେ ରଖିଚୁ ଭଗାରି ଅଛନ୍ତି ଚୋର
ଭଗାରିକୁ ପଦ ଦୂର କରିଦେବୁ ମୁଁ, ସିନା ହେବ ଚୋର ।

## କେଣିକି ଯାଉଛ ଗୋପଗୋବିନ୍ଦ (ଭେଡ଼ା, କଟକ)

କେଣିକି ଯାଉଛ ଗୋପଗୋବିନ୍ଦ ପାଟରେ ନକର ବାଟ
ତୁମ ଲାଗ ମୋର ନାହିଁ ଗଞ୍ଜଣା ମୋ ପିଠିରେ ବସୁଛି ଗୁଣ୍ଟ
ଚୋର ମାଡ଼ ବେଳେ ଥିବରେ ସୁନ୍ଦରୀ ବଣିଆ ଦୁଆରେ ବସି
ବାଆଁଶର ଚଳେ ମୁନ୍ଦ ପୋଡ଼ିକ ମୋ ହାତରୁ ପଡ଼ିବ ଖସି ।

## ଫୁଲ ଭରାଟ (କଟକ)

ଫୁଲ ଭରାଟ ଫୁଲ ଭରାଟ
ଆଜି ଫୁଲ ନ ଯାଇପାରେ କଳ କବାଟ ।
ଫୁଲ ଅରୁଆ ଫୁଲ ଅରୁଆ
ଆଜି ଫୁଲ ନଯାଇ ପାରେ ଦେହ ଜରୁଆ ।
ଫୁଲ ମନ୍ଦାର ଫୁଲ ମନ୍ଦାର
ଆଜି ଫୁଲ ନ ଯାଇ ପାରେ ମେଘ ଅନ୍ଧାର ।
ଫୁଲ କେତକୀ ଫୁଲ କେତକୀ
ଆଜି ଫୁଲ ନ ଯାଇ ପାରେ ତୁମ କଟକ ।

## କୁଟୁଣୀ ଗୀତ (କୋରାପୁଟ)

ହାଣ୍ଡି ଢୁଡ଼ୁ ଢୁଡ଼ା ଗୈନ୍ଦ ମାରେ ମୂଷା
ସ୍ତ୍ରୀ ନଇଲାର ପୁରୁଷ କେତେ ଲୋକ ହସା
କାଳିଆ କୁକୁଡ଼ା ମାଣ୍ଡି ଏତେ ଘାଉଁ
ସ୍ତ୍ରୀ ନଇଲାର ପୁରୁଷ ବୁଲେ ଗାଉଁ ଗାଉଁ ।

Digitized by srujanika@gmail.com

ପାଣି ଆଣି ଆଣି ଫୁଲାଇଲ ଗୁଣା
ଝିଅ ପାଇ କରି ବନ୍ଧୁକୁ ଦେଲେ ଘର ହେଲା ସୁନା ।
ଗାଡ଼ କାଣ୍ଡି କାଣ୍ଡି କଇପାର ଗୁଡ଼ା
ଆଙ୍ଗସି ଲଗାଇ ଝିଙ୍କିଛ ତୋର ଫୁଲ ଜୁଡ଼ା ।

ଆସ ବନମାଳୀ ବନକୁ ଯିବା
ମୃଗ ମାରି ଆଣି ଭଜା କରିବା
ସେବଣ୍ଠ ଫୁଲର ବଣେ
କନକ ବେଦୀରେ ଝଣ୍ଡ କରିଲେ
ତତେ ମତେ ଯିବା ମାନେ ।
ଝୁମ୍ପା କୁଞ୍ଜକାଠି କେରଳ ଧାଡ଼
ବାନିଆ ଗଲେ କୋଟପାଡ଼
ତେଦ୍ଦଲ ମାଉଁସ ଫାଟେଲ ଗଲଗଲ
ତମକୁ ହେଡାଇ କରି ।

## ଧାନରୁଆଳି ଗୀତ (ପାରଳାଖେମିଡ଼ି, ଗଞ୍ଜାମ)

ତଳ ଭାଙ୍ଗି ଗଲା ଏକା
ତଳ ଭାଙ୍ଗି ତଳ କରୁଡ଼ ପକା
ଜୁଡ଼ା ଭାଙ୍ଗି ଫୁଲ ଦେଖା । ୧ ।
ମହୁଲ ଭାଙ୍ଗିଲା କୁଞ୍ଜ
ଝୁଲିଆ ମୟୂର ଝାଲ ବଞ୍ଚୁଛି
ଝରଣିଆ ପାଣି ଦେଖି । ୨ ।
ଶରଳ ଚେରୁଆ କାଠ
ଶୀତ କଲେ ବନ୍ଧୁ ପାଖକୁ ଆସ
ପାଖକୁ ଆସ ହେ, ଘୋଡ଼ାଇବା ଯୋଡ଼ା ମାଠ । ୩ ।
କବାଟ କଣେ ବାଶସି
ମୁଖକୁ ଦେଖିଲେ ଲାଜ ଲାଗୁଛି
ଲାଜ ଲାଗୁଛି ଯେ ବନ୍ଧାଇବା ଆମ୍ଭ କଣ୍ଠି । ୪ ।

Digitized by srujanika@gmail.com

କଞ୍ଚା ମରିଚର ଗଛ
ଯୋଉଦିନୁ ଗଲେ ସାଙ୍ଗର ଘଛ
ଦେହ ଯାଉଥିଲା ଝଡ଼ ।୫।
କାକୁଡ଼ିକ ଦେଲ ରଞ୍ଜା
ବୁଲୁ ପଣତରେ ବୁଜିଲ ଭଜା
ହାତରେ ଡ଼ାଳମ୍ବ ଖଜା ।୬।
ଘିପ ସୀସା ତଳେ ଜଳା
ଚୋଠୁ ବଳ ନାହିଁ ଅମୁଲ ତରା
ଝିଲକ ନ ପଡ଼େ ଧରା ।
ଆଠଗଡ଼ ବୋଇଲଣୀ
ଶୁଖିଲା ପଚର ପଇଡ ପାଣି
ବୁଢ଼ୀକାଳେ ଭୂଆସୁଣୀ ।

## ଶୁଆସାରୀ ପାଠ

କୃଷ୍ଣ କଳ୍ପତରୁ
କୃଷ୍ଣ ଜଗଦ୍‌ଗୁରୁ ।
କୃଷ୍ଣ ଗୋପରେ ରଜା
କୃଷ୍ଣ ମୁରଲୀ ବଜା
କହ କୃଷ୍ଣ, ପଢ଼ କୃଷ୍ଣ
ଭଜ କୃଷ୍ଣ, ଗୁରୁ କୃଷ୍ଣ
କୃଷ୍ଣ କୃଷ୍ଣ, ରାମ ରାମ
ପଢ଼ ବାବା ଆତ୍ମାରାମ ।
କୃଷ୍ଣ ଖଣ୍ଡ ଖଜା, କୃଷ୍ଣ ସରଭଜା
କୃଷ୍ଣ ଗୋପରେ ରଜା
କୃଷ୍ଣ ମୁରଲୀ ବଜା ।
କୃଷ୍ଣ ଚକ୍ରଧର
ପକ୍ଷୀ ଜନ୍ମରୁ ପାର କର ।

Digitized by srujanika@gmail.com

କୃଷ୍ଣରାଧା, କୃଷ୍ଣ ରାଧା
କୃଷ୍ଣ କୃଷ୍ଣ ରାମ୍ ରାମ୍
ପଢ଼ ବାବା ଗଙ୍ଗା ରାମ ।

## ଅଇଲ ବନ୍ଧୁ ଭଅଲ କଲ (ଅନ୍ୟପ୍ରକାର, ଗଞ୍ଜାମ)

ଅଁଇଲ ବନ୍ଧୁ ଭଅଲ କଲ ବସିବାକୁ ନାହିଁ ଠାଅ
ଯୋଉ ବାଟେ ଅଇଲ ବନ୍ଧୁ ସେଇ ବାଟେ ବାଟେ ଯାଅ
ପାଣି ମୁନ୍ଦଏ ଦଅନ୍ତ ବନ୍ଧୁ, ଦଦରା ମାଠିଆ
ନ ବସି ବେଗେ ଯାଅ ମୋ ବନ୍ଧୁ, କେତେ ହେବ ଠିଆ
ପାଣି ମୁନ୍ଦଏ ଦଅନ୍ତ ବନ୍ଧୁ, ଘରେ ନାହିଁ ନୋଟା
ଫଡ଼ଶା ଘରୁ ଆଣନ୍ତ ବନ୍ଧୁ, ଗୋଡ଼ ଅଟେ ଖ୍ଲେଟା ।
ତଇଲ କଟୁ ଦଅନ୍ତ ବନ୍ଧୁ, ଅଙ୍ଗେ ହୁଅନ୍ତ ମାଖି
ରାଗ ଗୁଣ୍ଡା ପଡ଼ଚ ବନ୍ଧୁ, ଜଳ ଉଠିବ ଆଖି
କଥା ହୁଅନ୍ତ ଦୁଃଖ ସୁଖ ବନ୍ଧୁ, ହେଉଚ ଜର
ରୋଗୀ ପାଶେ ନ ବସି ବନ୍ଧୁ, ବେଗେ ଯାଅ ଘର ।

## ସେଇ ବାଟେ ବାଟେ ଯାଅ (ଅନୁଗୁଳ)

ଆସିଲ ବନ୍ଧୁ ଭଅଲ କଲ ବସିବାକୁ ନାହିଁ ଠାଅ
ପିଢ଼ା ଖଣ୍ଡେ ଦଅନ୍ତ ବନ୍ଧୁ ବଢ଼େଇ ଘରେ ବାନ୍ଧା
ପାଣି ଢାଳେ ଦଅନ୍ତ ବନ୍ଧୁ ଦଦରା ମାଠିଆ
ଛୋଲୁଣି ମନ୍ଦେ ଦଅନ୍ତ ବନ୍ଧୁ ବାପ ଘରେ ମାଆ ।
ଚୂଡ଼ା ଗଣ୍ଡେ ଦଅନ୍ତ ବନ୍ଧୁ କେଉଟୁଣୀକ ଜର
ପଇଡ଼ ପୁଞ୍ଜେ ଦଅନ୍ତ ବନ୍ଧୁ ବାଉର ଖ ଇଚ୍ଛୁ ମାଡ଼
ତେଲ ଟିକଏ ଦଅନ୍ତ ବନ୍ଧୁ ମୁଣ୍ଡରେ ନାହିଁ ବାଳ
ଘଷାଘଷି କର ଦଅନ୍ତ ବନ୍ଧୁ ବହୁ ଯାଉଚ୍ଛି ଝାଳ ।
ବାଟେଇ ନେଇ ଯାଆନ୍ତ ବନ୍ଧୁ ଗୋଡରେ ହୋଇଛୁ ଘାଆ
ଯୋଉ ବାଟେ ବାଟେ ଅଇଲ ବନ୍ଧୁ ସେଇ ବାଟେ ବାଟେ ଯାଅ ।

Digitized by srujanika@gmail.com

## କାଳୀ ଗାଈଟିଏ (ଭେଡ଼ା, କଟକ)

କାଳୀ ଗାଈଟିଏ ନସର ପସର ଦୁହିଁବାକୁ କେହ୍ବ ନାହିଁ
ଦୁଇ କଟରେ ନାବ ଗଜଡ଼ ଦୁହିଁଣୀ ପୃବଇ ।
ଆଉଟିବୁ ଲେ ସାଆନ୍ତ ମା ମରଚ ପକାଇ
ପିଇବୁ ଲେ ଜେମା ଦେଈ ଚାଟିଆ ପୂରାଇ ।
ବାପ ଦେଇଥିଲେ କାଳୀଗାଈ ମା ଦେଲେ ଝୁଣ୍ଟିଆ
ଆହ୍ଲର ଜେମା ଅଳ କରୁଚ ଦୁଧ ପିଆଣ ଟିଆ ।

## ଅରୁଆ ଚାଉଳ (ଭେଡ଼ା, କଟକ)

ଅରୁଆ ଚାଉଳ ବସ୍ତ ପିଠଉ
ମଦନ ଗୋଡ଼କୁ ଯୋଡ଼ କଠଉ
ମଦନ ଯାଇଚି ପଳାଏ କରି
ଆଣିବ ତୋ ପାଇଁ ଖଦୋଳ ଶାଢ଼ୀ
ଉଠ ଲେ କନିଆ ପିନ୍ଧ ସଜାଡ଼ ।
କନିଆ ଶୋଇଚି ମାତାଙ୍କ କୋଳେ
ଲୁହ ବହିଯାଏ ଚକିଆ ଚଳେ ।

———

Digitized by srujanika@gmail.com